





1804M1143C0015

**MALHOTRA BOOK DEPOT**
an imprint of MBD Group
An ISO 9001:2015 Certified Company



ISBN 9789384127176
Price: ₹ 72.00



MBD M.I.L. (ODIA) Class VI

NEW EDITION

**MBD**
SKDS

# ସାହିତ୍ୟ

## ଷଷ୍ଠ ଶ୍ରେଣୀ



# MBD
SKDS
# ସାହିତ୍ୟ
## M.I.L. (ODIA)
## (Class – VI)
## (ଷଷ୍ଠ ଶ୍ରେଣୀ)

*Written by :*
A Team of Eminent Teachers



*Published by :*
P. K. MISHRA
*(Zonal Head)*
MALHOTRA BOOK DEPOT
Badambadi, Link Road,
Cuttack-753012

*Typesetting & Laser Printing at :*
HOLY FAITH PUBLICATION PVT. LTD.
Khannagar
Cuttack-12

*Printed at :*
HOLY FAITH INTERNATIONAL (P) LTD.
44-45, Siltara, Industrial Estate, Raipur (CG)







## ସୂଚୀପତ୍ର

## ପାଠ୍ୟ ଖସଡ଼ା

| ମାସର ନାମ | ଅଧ୍ୟାୟ | ପ୍ରସଙ୍ଗ |
|---|---|---|
| ଏପ୍ରିଲ | ପାଠ - ୧ | ବର୍ଷା (ପଦ୍ୟ) |
| ଜୁନ୍ | ପାଠ - ୭ | ବନବାଣୀ (ଗଦ୍ୟ) |
| | | ବୃକ୍ଷରୋପଣ (ରଚନା) |
| ପ୍ରଥମ ଏକକ ପରୀକ୍ଷଣ (ଶେଷ ସପ୍ତାହ) | | |
| ଜୁଲାଇ | ପାଠ - ୮ | ମୋ ଜୀବନର ଅଭୁଲା କଥା |
| | ପାଠ - ୨ | ପ୍ରଭାତ ଅବକାଶ (ପତ୍ରଲିଖନ) |
| ଅଗଷ୍ଟ | ପାଠ - ୯ | କ'ଣ ଶିଖିବା |
| | ପାଠ - ୧୦ | ଦେଶ ପ୍ରେମୀ କଏଦୀ, ରଚନା |
| ଦ୍ୱିତୀୟ ଏକକ ପରୀକ୍ଷଣ (ଶେଷ ସପ୍ତାହ) | | |
| ସେପ୍ଟେମ୍ବର | ପାଠ - ୩ | ଜନ୍ମଭୂମି |
| | ପାଠ - ୧୧ | କିଏ ଭାସେ କିଏ ବୁଡ଼େ |
| | | ଦରଖାସ୍ତ ଲିଖନ |
| ଅକ୍ଟୋବର | ପାଠ - ୧୬ | ନ୍ୟାୟ ବିଚାର (ଗଳ୍ପ) |
| | | ରଚନା ଓ ପତ୍ରଲିଖନ |
| ଷାଣ୍ମାସିକ ପରୀକ୍ଷା (ଶେଷ ସପ୍ତାହ) | | |
| ନଭେମ୍ବର | ପାଠ - ୪ | ଶରତ ନଈ କୂଳେ |
| | ପାଠ - ୧୨ | ବିଶ୍ୱବିଜୟୀ ବିବେକାନନ୍ଦ, ରଚନା ଲିଖନ - ଆଦର୍ଶ ଛାତ୍ର |
| ତୃତୀୟ ଏକକ ପରୀକ୍ଷଣ (ପ୍ରଥମ ସପ୍ତାହ) | | |
| ଡିସେମ୍ବର | ପାଠ - ୧୩ | ବୃକ୍ଷଲତା ଆମର ବନ୍ଧୁ, ରଚନା - ବୃକ୍ଷଲତାର ଉପକାରିତା |
| | | ପତ୍ର - ବଣଭୋଜି ପାଇଁ ପତ୍ର |
| ଜାନୁଆରୀ | ପାଠ - ୫ | ଧୂଳି, ଅଲମ୍ପିକ୍ କ୍ରୀଡ଼ା, ରଚନା - ବାର୍ଷିକ ଉତ୍ସବ ପାଳନ |
| ଚତୁର୍ଥ ଏକକ ପରୀକ୍ଷଣ (ଶେଷ ସପ୍ତାହ) | | |
| ଫେବୃୟାରୀ | ପାଠ - ୧୭ | ଓଡ଼ିଶାର ସଂସ୍କୃତି |
| | ପାଠ - ୧୫ | ରାଜୋଚିତ ବ୍ୟବହାର (ଏକାଙ୍କିକା) |
| ମାର୍ଚ୍ଚ | ପୁନରାଲୋଚନା | |
| ବାର୍ଷିକ ପରୀକ୍ଷା (ଦ୍ୱିତୀୟ ସପ୍ତାହ) | | |

# ପଦ୍ୟ ବିଭାଗ

## ବର୍ଷା

• *ଜଗନ୍ନାଥ ଦାସ*

*ଜନ୍ମ : ଖ୍ରୀ. ୧୪୯୦ ଭାଦ୍ରବ ଶୁକ୍ଳ ଅଷ୍ଟମୀ (ରାଧାଷ୍ଟମୀ)*

*ମୃତ୍ୟୁ : ୧୫୪୭ ମାଘ ଶୁକ୍ଳ ସପ୍ତମୀ*

### କବି ପରିଚୟ

ଓଡ଼ିଆ ସାହିତ୍ୟର ପଞ୍ଚସଖା ଯୁଗର ଅନ୍ୟତମ ଯଶସ୍ୱୀ କବିଭାବେ ଜଗନ୍ନାଥ ଦାସ ଘରେ ଘରେ ସୁପରିଚିତ । ସେ ଭାଗବତକାର ଭାବେ ମଧ୍ୟ ସୁପ୍ରସିଦ୍ଧ । ସେ ଅତିବଡ଼ି ଉପାଧିରେ ବିଭୂଷିତ । ତାଙ୍କ ଜନ୍ମକାଳ ପଞ୍ଚଦଶ ଶତାବ୍ଦୀ । ସେ ପୁରୀ ଜିଲ୍ଲାର କପିଳେଶ୍ୱରପୁରରେ ଜନ୍ମଗ୍ରହଣ କରିଥିଲେ । ସେ ଓଡ଼ିଆ ସାହିତ୍ୟରେ ପ୍ରଥମେ ମାନକ ଭାଷାର ପ୍ରୟୋଗ କରି ଚିରସ୍ମରଣୀୟ ହୋଇ ପାରିଛନ୍ତି ।

ରଚନାବଳୀ– *ଓଡ଼ିଆ ଭାଗବତ, ଅର୍ଥ କୋଇଲି, ଉଦ୍ଧବ ଜଣାଣ, କାଳୀୟ ଦଳନ, ଗୁପତ ଗୀତା, ହରିଣୀ ସ୍ତୁତି, ଭୁଲାମନ ଭୁଲୁ କାହିଁକି, ପାହାନ୍ତି ଅବକାଶ* ଓ *ହାତୀ ଝୁଲଇରେ* ଆଦି କେତେକ କାବ୍ୟ, ଭଜନ ଓ କ୍ଷୁଦ୍ର କବିତା ।

### କବିତାର ଆଦର୍ଶ

'*ବର୍ଷା*' ପଦ୍ୟଟି '*ଭାଗବତ*' ର ଦଶମ ସ୍କନ୍ଦର ଏକବିଂଶ ଅଧ୍ୟାୟରୁ ଆନୀତ । ଏଥିରେ ବର୍ଷାଋତୁର ଆଗମନରେ ପୃଥିବୀର ସୌନ୍ଦର୍ଯ୍ୟ ଏବଂ ବର୍ଷାଋତୁର ମହତ୍ତ୍ୱ କଥା ସୁନ୍ଦରଭାବେ ବର୍ଣ୍ଣନା କରାଯାଇଛି ।

### ସାରକଥା

ଗ୍ରୀଷ୍ମକାଳ ପରେ ବର୍ଷାଋତୁ ଆସେ । ଏହି ଋତୁ ସକଳ ଋତୁଙ୍କ ମଧ୍ୟରେ ଶ୍ରେଷ୍ଠ । କାରଣ ଏହି ସମୟରେ ପୃଥିବୀ ଶସ୍ୟ-ସମ୍ପଦରେ ପରିପୂର୍ଣ୍ଣ ଥାଏ । ଆକାଶମଣ୍ଡଳରେ ବିଜୁଳି ଓ ଘଡ଼ଘଡ଼ି ଶବ୍ଦ କରି ମେଘଗୁଡ଼ିକ ଏକତ୍ର ହୁଅନ୍ତି । ପୃଥିବୀର ଦୁଃଖ ଦେଖି ସନ୍ତୋଷ ଚିତ୍ତରେ ଜଳଦାନ କରନ୍ତି । ଭୀଷଣ ଶବ୍ଦମାନ କରି ମେଘମାନେ ଗର୍ଜନ୍ତି ଓ ଜଳ ବର୍ଷା କରନ୍ତି । ପ୍ରାଣୀର ଜୀବନ ହେଉଛି ଜଳ–ଜଳ ବିନା କେହି ବଞ୍ଚିପାରିବେ ନାହିଁ; ତେଣୁ ବର୍ଷା କରୁଣ ହୃଦୟରେ ଜଳଦାନ କରିଥାଏ । ପୃଥିବୀପୃଷ୍ଠ ଆଠମାସ ଧରି ସୂର୍ଯ୍ୟକିରଣରେ ଉତ୍ତପ୍ତ ଥାଏ । ଜଳଲାଭ କରି ସମସ୍ତେ ସନ୍ତୋଷ ହୁଅନ୍ତି । ତପସ୍ୱୀ ଯେପରି ତପସ୍ୟା କରି ଫଳଲାଭ କରେ, ସେହିପରି ଧରଣୀବାସୀ ଆଠମାସ ସୂର୍ଯ୍ୟକିରଣରେ କଷ୍ଟ ପାଇଲା ପରେ ଜଳ ପାଇ ଖୁସି ହୁଅନ୍ତି ।

ବର୍ଷାଦିନ ହେବାରୁ ରାତି ଆସିବାମାତ୍ରେ ଜୁଳୁଜୁଳିଆ ପୋକମାନେ ପୃଥିବୀକୁ ବେଢ଼ିଯା'ନ୍ତି । ମେଘର ଶବ୍ଦ ଶୁଣି ବେଙ୍ଗମାନେ ପାଣିକୁ ଘେରି ଗର୍ଜନ କରନ୍ତି । ବର୍ଷାଜଳରେ ନଦୀମାନେ ପୂର୍ଣ୍ଣ ହୁଅନ୍ତି । ବିଭିନ୍ନ ରକମର ଫସଲରେ ପୃଥିବୀର ଚତୁର୍ଦ୍ଦିଗ ପୂରିଉଠେ । ଛତାଭଳି ଛତୁସବୁ ଫୁଟେ ଓ ପୃଥିବୀ ରାଜାଭଳି ଦିଶେ । ମେଘକୁ ଦେଖି ପର୍ବତ ଶିଖରରେ ମୟୂରମାନେ ନାଚ କରନ୍ତି । ଭକ୍ତଜନମାନେ ଅତିଥି ଦେଖି ଖୁସି ହେଲାପରି ଏମାନେ ଆନନ୍ଦିତ ହୁଅନ୍ତି ।

## କଠିନ ଶବ୍ଦାର୍ଥ

ଏମନ୍ତେ– ଏହିପରି । କାଳ – ସମୟ, ମୃତ୍ୟୁ । ପ୍ରକାଶିଲା– ପ୍ରକାଶ ଲାଭ କଲା, ଦେଖାଗଲା । ସାର– ଶ୍ରେଷ୍ଠ । ସମ୍ପଦ୍– ଧନ, ବିଭବ, ସମ୍ପତ୍ତି, ଐଶ୍ୱର୍ଯ୍ୟ । ମର୍ତ୍ତ୍ୟପୁର– ମର୍ତ୍ତ୍ୟମଣ୍ଡଳ । ତୋଷ– ସନ୍ତୁଷ୍ଟ । ରାଶି– ସମୂହ, ସବୁ । କରୁଣା ଚିତ୍ତ– ଦୟାଳୁ ହୃଦୟ । ରବି ତେଜ– ସୂର୍ଯ୍ୟକିରଣ । ତପସ୍ୱୀ– ସନ୍ନ୍ୟାସୀ । ଭୁଞ୍ଜନ୍ତି– ଭୋଗ କରନ୍ତି । ଯେହ୍ନେ– ଯେପରି । ଖଦ୍ୟୋତ– ଜୁଳୁଜୁଳିଆ ପୋକ । କୀଟ– ପୋକ । ନିଶା– ରାତି । ନିଶାମୁଖ– ସନ୍ଧ୍ୟା । ମଣ୍ଡୂକ– ବେଙ୍ଗ, ଭେକ । ଛତ୍ର– ଛତା । ମହୀ– ପୃଥିବୀ । ଗିରି– ପର୍ବତ । ଶିଖ– ଶିଖର । ହ୍ୱନ୍ତି– ହୁଅନ୍ତି ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର କୁହ ।

**(କ) ବର୍ଷରେ କେତୋଟି ଋତୁ ଆସେ ?**

ଉ – ବର୍ଷରେ ଛଅଟି ଋତୁ ଆସେ ।

**(ଖ) ଗ୍ରୀଷ୍ମଋତୁ ପରେ କେଉଁ ଋତୁ ଆସେ ?**

ଉ – ଗ୍ରୀଷ୍ମଋତୁ ପରେ ବର୍ଷାଋତୁ ଆସେ ।

**(ଗ) ମେଘମାନେ କେଉଁଠି ମିଳିତ ହୁଅନ୍ତି ?**

ଉ – ମେଘମାନେ ଶୂନ୍ୟପଥରେ ବା ଆକାଶରେ ମିଳିତ ହୁଅନ୍ତି ।

**(ଘ) ପୃଥିବୀ ସୂର୍ଯ୍ୟଙ୍କ ଉତ୍ତାପରେ କେତେ ମାସ ଉତ୍ତପ୍ତ ଥିଲା ?**

ଉ – ପୃଥିବୀ ସୂର୍ଯ୍ୟଙ୍କ ଉତ୍ତାପରେ ଆଠମାସ ଉତ୍ତପ୍ତ ଥିଲା ।

**(ଙ) ଖଦ୍ୟୋତ କେତେବେଳେ ଉଡ଼ିବୁଲେ ?**

ଉ – ଖଦ୍ୟୋତ ସନ୍ଧ୍ୟା ସମୟରେ ଉଡ଼ିବୁଲେ ।

୨ । ଉତ୍ତର ଲେଖ ।

**(କ) ମେଘମାଳ କିପରି ଭାବରେ ଜଳ ବର୍ଷା କଲେ ?**

ଉ – ମହାଶୂନ୍ୟରେ ମେଘମାନେ ବିଜୁଳି ଓ ଘଡ଼ଘଡ଼ି ଶବ୍ଦସହ ମିଳିତ ହେଲେ । ପରେ ପରେ ଭୀଷଣ ଶବ୍ଦକରି ମେଘମାଳ ଜଳ ବର୍ଷା କଲେ ।

**(ଖ) 'ଗର୍ଜନ୍ତି ଆବୋରିଣ ପାଣି'– ଏଠାରେ କିଏ ଗର୍ଜିବା କଥା କୁହାଯାଇଛି ?**

ଉ – *'ଗର୍ଜନ୍ତି ଆବୋରିଣ ପାଣି'*– ଏଠାରେ ବେଙ୍ଗ ଗର୍ଜିବା କଥା କବି କହିଛନ୍ତି । ବର୍ଷାର ଗର୍ଜନ ଶୁଣି ବେଙ୍ଗମାନେ ଜଳାଶୟର ଚତୁଃପାର୍ଶ୍ୱରେ ରହି ଗର୍ଜନ ବା ରାବ କରନ୍ତି ।

**(ଗ) ଏହି କବିତାରେ କାହାକୁ ରାଜା ବୋଲି କୁହାଯାଇଛି ?**

ଉ – ଏହି କବିତାରେ ପୃଥିବୀ (ମହୀ)କୁ ରାଜା ବୋଲି କୁହାଯାଇଛି ।

**(ଘ) ବର୍ଷାଋତୁକୁ ସକଳ ଋତୁଙ୍କର ସାର ବୋଲି କବି କାହିଁକି କହିଛନ୍ତି ?**

ଉ – ବର୍ଷାଋତୁରେ ପୃଥିବୀ ଶସ୍ୟ-ସମ୍ପଦରେ ଭରପୂର ହୋଇଯାଏ । ବର୍ଷାଋତୁର ଜଳଦାନ ଫଳରେ ବିଭିନ୍ନ ପ୍ରକାର ଖାଦ୍ୟଶସ୍ୟ ଉତ୍ପନ୍ନ ହୁଏ । ପ୍ରାଣୀ ଓ ଉଦ୍ଭିଦ ଜଗତର ଜଳକଷ୍ଟ, ଖାଦ୍ୟାଭାବ ଦୂର ହୁଏ । ତେଣୁ କବି ବର୍ଷାଋତୁକୁ ସମସ୍ତ ଋତୁଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି କହିଛନ୍ତି ।

**(ଙ) ମୟୂର କାହାକୁ ଚାହିଁ ନୃତ୍ୟ କରେ ?**

ଉ – ମୟୂର ଗିରି ଶିଖରରେ ଥିବା ମେଘକୁ ଚାହିଁ ନୃତ୍ୟ କରେ ।



୩ । ସରଳ ଭାଷାରେ ବୁଝାଇ ଲେଖ ।

(କ) ମହୀ ମଣ୍ଡଳ ଦୁଃଖ ଚାହିଁ
ଜଳ ଛାଡ଼ିଲା ତୋଷ ହୋଇ ।।

ଉ – *ମହୀ ମଣ୍ଡଳ ......................... ତୋଷ ହୋଇ ।।*

ଉଦ୍ଧୃତାଂଶଟି କବି ଜଗନ୍ନାଥ ଦାସଙ୍କ ରଚିତ *'ବର୍ଷା'* କବିତାରୁ ଆନୀତ । ପୃଥିବୀର ଦୁଃଖ ଦେଖି ମେଘ କିପରି ଜଳଦାନ କରେ, ତାହା ଏଠାରେ ବର୍ଣ୍ଣିତ ।

ପ୍ରଚଣ୍ଡ ସୂର୍ଯ୍ୟତାପରେ ପୃଥିବୀ ଆଠମାସ ଧରି ସନ୍ତାପିତ ହେଉଥାଏ । ଗ୍ରୀଷ୍ମଋତୁ ପରେ ବର୍ଷାଋତୁ ଆସେ । ଏହି ଋତୁ ଜଳଦାନ କରି ପୃଥିବୀକୁ ଶସ୍ୟଶ୍ୟାମଳା କରେ; ତେଣୁ ଜୀବଜଗତ ଛ'ଋତୁ ମଧ୍ୟରେ ବର୍ଷାଋତୁକୁ ଶ୍ରେଷ୍ଠ ବୋଲି କହିଥା'ନ୍ତି । ଶୂନ୍ୟ ଆକାଶ ବ୍ୟାପି ମେଘମାଳ ଚାରିଆଡ଼େ ଘୋଟିଯାଏ । ସୂର୍ଯ୍ୟତାପ ଫଳରେ ଧରଣୀପୃଷ୍ଠରୁ ଆଠମାସ ଧରି ଜଳ ବାଷ୍ପ ହୋଇ ଶେଷ ହୋଇଯାଇଥାଏ । ବର୍ଷାକାଳ ଆସିବାକ୍ଷଣି ସୂର୍ଯ୍ୟତାପର କଷ୍ଟ ନଷ୍ଟ ହୁଏ । ମେଘରେ ସୂର୍ଯ୍ୟର ପ୍ରଚଣ୍ଡତା ଲୋପପାଏ । ପୃଥିବୀର ଦୁଃଖ ଦେଖି ମେଘ ଜଳଦାନ କରେ । ଘୋର ଗର୍ଜନ କରି ମେଘମାଳା ଜଳ ବର୍ଷିଥା'ନ୍ତି । କବି ମଧୁସୂଦନ ଲେଖିଛନ୍ତି –

*''ବାନ୍ଧବ ଅଟେ ତରୁଲତା ଜୀବର ।*
*ପ୍ରକାଶଇ କରୁଣା ସେ ନିରନ୍ତର ।।''*

(ଖ) ଅଳପ ନଦୀଏ ପୂରିଲେ
ଲହରି ମତେ ଉଛୁଳିଲେ ।।

ଉ – *ଅଳପ ନଦୀଏ ......................... ଉଛୁଳିଲେ ।।*

ଉଦ୍ଧୃତାଂଶଟି କବି ଜଗନ୍ନାଥ ଦାସଙ୍କ ଲିଖିତ *'ବର୍ଷା'* କବିତାରୁ ଉଦ୍ଧୃତ । ଏଠାରେ କବି ବର୍ଷାକାଳରେ କ୍ଷୁଦ୍ର କ୍ଷୁଦ୍ର ନଦୀର ଅବସ୍ଥା ସମ୍ପର୍କରେ ଆଲୋକପାତ କରିଛନ୍ତି ।

ବର୍ଷାଋତୁ ଆସିବାମାତ୍ରେ ଚାରିଆଡ଼େ ଅନବରତ ବର୍ଷା ହୋଇଥାଏ । ବର୍ଷାଜଳ ଲାଭକରି ପ୍ରାଣୀଜଗତ ଆନନ୍ଦିତ ହୋଇଥା'ନ୍ତି । ଜୁଳୁଜୁଳିଆ ପୋକମାନେ ସନ୍ଧ୍ୟାବେଳେ ଉଡ଼ିବୁଲନ୍ତି । ମେଘର ଗୁରୁଗମ୍ଭୀର ଗର୍ଜନ ଶୁଣି ବେଙ୍ଗମାନେ ଜଳାଶୟ ଚାରିପାଖରେ ଥାଇ ଗର୍ଜନ କରନ୍ତି । ଛୋଟ ଛୋଟ ନଦୀ ଜଳରେ ପୂର୍ଣ୍ଣ ହୋଇଉଠନ୍ତି । ସେସବୁ ନଦୀରେ ହଠାତ୍ ବନ୍ୟା ଦେଖାଦିଏ । ଲହରି ସହିତ ଛୋଟ ଛୋଟ ନଦୀଗୁଡ଼ିକ ଉଛୁଳି ଉଠି ଦୁଇକୂଳକୁ ଛୁଇଁଥା'ନ୍ତି ।

(ଗ) ଛତୁ ଯେ ଛତ୍ର ପ୍ରାୟ ହୋଇ
ରାଜାର ପ୍ରାୟ ଦିଶେ ମହୀ ।।

ଉ – *ଛତୁ ଯେ ......................... ଦିଶେ ମହୀ ।।*

ଶଂସିତ ପଦ୍ୟାଂଶଟି କବି ଜଗନ୍ନାଥ ଦାସଙ୍କ ଲିଖିତ *'ବର୍ଷା'* କବିତାରୁ ଉଦ୍ଧୃତ । ଏଠାରେ କବି ପୃଥିବୀକୁ ରାଜା ସହିତ କିପରି ତୁଳନା କରିଛନ୍ତି, ତାହା ବର୍ଣ୍ଣିତ ହୋଇଛି ।

ବର୍ଷାଋତୁର ଆଗମନରେ ପୃଥିବୀ ଶସ୍ୟଶ୍ୟାମଳା ହୋଇଉଠେ । ପୃଥିବୀ ପୃଷ୍ଠରେ ବିଭିନ୍ନ ଶସ୍ୟରାଶି ଭରପୂର ହୋଇଯାଏ । ଶସ୍ୟରେ ଭରପୂର କ୍ଷେତକୁ ଦେଖି ମଣିଷ ଚିତ୍ତରେ ଆନନ୍ଦ ସଞ୍ଚାର ହୁଏ । ଏହି ଋତୁରେ ଚାରିଆଡ଼େ ଛତୁଗୁଡ଼ିକ ଛତା ପରି ଫୁଟିଥାଏ । ରାଜାଙ୍କର ମସ୍ତକରେ ପାଟଛତା ଶୋଭା ପାଇଲା ପରି ପୃଥିବୀ ରାଜାଙ୍କର ମସ୍ତକରେ ଛତୁଗୁଡ଼ିକ ପାଟଛତା ପରି ଶୋଭା ପାଇଥାଏ । ଏସବୁ ଦୃଶ୍ୟ ଦେଖି ସମସ୍ତେ ଆନନ୍ଦରେ ଆତ୍ମହରା ହୋଇ ଉଠନ୍ତି । ବାସ୍ତବରେ କବିଙ୍କର ଏହି ତୁଳନାତ୍ମକ ବର୍ଣ୍ଣନାଟି ଖୁବ୍ ହୃଦୟସ୍ପର୍ଶୀ ହୋଇପାରିଛି ।

୪ । **ନିମ୍ନଲିଖିତ ପଦ୍ୟାଂଶରେ ଖାଲିଥିବା ସ୍ଥାନକୁ ବହି ଦେଖି ପୂରଣ କର ।**

(କ) ପ୍ରାଣୀ ଜୀବନ .........
......... ଚିତ୍ତରେ ବରଷି ॥

ଉ – ପ୍ରାଣୀ ଜୀବନ ଜଳରାଶି
କରୁଣା ଚିତ୍ତରେ ବରଷି ॥

(ଖ) .............. ଶସ୍ୟରାଶି
ଏଣେ ........ ମହୀ...... ॥

ଉ – ନାନା ପ୍ରକାରେ ଶସ୍ୟରାଶି
ଏଣେ ପୂରିତ ମହୀ ଦିଶି ॥

୫ । **ଏହି କବିତାରେ 'ସୂର୍ଯ୍ୟ' ଓ 'ପୃଥିବୀ' ଶବ୍ଦ ପାଇଁ ଅନ୍ୟ ଯେଉଁ ଶବ୍ଦଗୁଡ଼ିକ ବ୍ୟବହାର କରାଯାଇଛି, ତାହାକୁ ଲେଖ ।**

ଉ – ସୂର୍ଯ୍ୟ – ରବି
ପୃଥିବୀ – ମଞ୍ଚପୁର, ମହୀ

୬ । **'ବରଷା' ଶବ୍ଦର ଗଦ୍ୟରୂପ 'ବର୍ଷା', ସେହିପରି ନିମ୍ନଲିଖିତ ଶବ୍ଦଗୁଡ଼ିକର ଗଦ୍ୟରୂପ ଲେଖ ।**

ଶବଦ, ଗରଜି, ବରଷି, ଗ୍ରୀଷମ, ତପତ, ଅଳପ

ଉ –

| ପଦ୍ୟରୂପ | ଗଦ୍ୟରୂପ | ପଦ୍ୟରୂପ | ଗଦ୍ୟରୂପ |
|---|---|---|---|
| ଶବଦ | ଶବ୍ଦ | ଗ୍ରୀଷମ | ଗ୍ରୀଷ୍ମ |
| ଗରଜି | ଗର୍ଜି | ତପତ | ତପ୍ତ |
| ବରଷି | ବର୍ଷି | ଅଳପ | ଅଳ୍ପ |

୭ । **ତଳେ ଦିଆଯାଇଥିବା ଶବ୍ଦଗୁଡ଼ିକର ଅର୍ଥ ସୂଚାଉଥିବା ଶବ୍ଦକୁ ବନ୍ଧନୀ ମଧ୍ୟରୁ ବାଛି ଲେଖ ।**

ମଞ୍ଚପୁର (ସ୍ୱର୍ଗପୁର, ପାତାଳପୁର, ମର୍ତ୍ତ୍ୟପୁର)
ଭୁଞ୍ଜନ୍ତି (ଭୋଜନ କରନ୍ତି, ଭୋଗ କରନ୍ତି, ଭରଣ କରନ୍ତି)
ମଣ୍ଡୂକ (ସାପ, ବେଙ୍ଗ, ମୟୂର)
ନିଶାମୁଖ (ସକାଳ, ସନ୍ଧ୍ୟାବେଳ, ରାତି)

ଉ – ମଞ୍ଚପୁର – ମର୍ତ୍ତ୍ୟପୁର
ଭୁଞ୍ଜନ୍ତି – ଭୋଜନ କରନ୍ତି
ମଣ୍ଡୂକ – ବେଙ୍ଗ
ନିଶାମୁଖ – ସନ୍ଧ୍ୟାବେଳ

୮ । **'ଆଠ'କୁ ଯେପରି 'ଅଷ୍ଟ' କୁହାଯାଏ, ସେହିପରି ନିମ୍ନଲିଖିତ ଶବ୍ଦଗୁଡ଼ିକୁ କ'ଣ କୁହାଯିବ ଲେଖ ।**

ନଅ, ସାତ, ଛଅ, ଏଗାର

ଉ – ନଅ – ନବ   ସାତ – ସପ୍ତ   ଛଅ – ଷଷ୍ଠ   ଏଗାର – ଏକାଦଶ

୯ । **ପ୍ରତ୍ୟେକ ଧାଡ଼ିରେ ତିନୋଟି ଏକ ଜାତୀୟ ଶବ୍ଦ ସହିତ ଗୋଟିଏ ଭିନ୍ନ ଜାତୀୟ ଶବ୍ଦ ମିଶି ରହିଛି । ଭିନ୍ନ ଜାତୀୟ ଶବ୍ଦଟିକୁ ଚିହ୍ନଟ କରି ଲେଖ ।**

(କ) ବର୍ଷା, ବିଜୁଳି, ଗିରିଶିଖ, ପବନ
(ଖ) ମଣ୍ଡୂକ, ମୟୂର, ଛତୁ, ଖଦ୍ୟୋତ

ଉ – (କ) ଗିରିଶିଖ, (ଖ) ଛତୁ ।



### ତୁମ ପାଇଁ କାମ

୧ । ବର୍ଷା ଉପରେ ଲେଖାଯାଇଥିବା ଅନ୍ୟ କବିଙ୍କର କବିତାଗୁଡ଼ିକୁ ସଂଗ୍ରହ କରି ପଢ଼ ।
୨ । ବର୍ଷା ଋତୁ ସମ୍ପର୍କରେ କବିତା ଲେଖି ତୁମ ଶିକ୍ଷକଙ୍କୁ ଦେଖାଅ ।
୩ । ଜଗନ୍ନାଥ ଦାସଙ୍କ ଜୀବନୀ ସଂଗ୍ରହ କରି ପଢ଼ ।

*[ଛାତ୍ରଛାତ୍ରୀମାନେ ଶିକ୍ଷକ/ଅଭିଭାବକଙ୍କ ସାହାଯ୍ୟ ନେଇ ନିଜେ ଅଭ୍ୟାସ କରିବେ ।]*

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧ । **ସଂକ୍ଷେପରେ ଉତ୍ତର ଦିଅ ।**

**(କ) ତପସ୍ୱୀ କେତେବେଳେ ସୁଖୀ ହୁଅନ୍ତି ?**

ଉ– ତପସ୍ୱୀ କଠୋର ତପସ୍ୟା କରି ଚାଲିଥାଆନ୍ତି । ତପସ୍ୟା ପରେ ସେ ଯେତେବେଳେ ନିଜର ଅଭୀଷ୍ଟ ଫଳ ଲାଭ କରନ୍ତି । ସେତେବେଳେ ବେଶ୍ ଆତ୍ମସନ୍ତୋଷ ଲାଭ କରି ସୁଖୀ ହୁଅନ୍ତି ।

**(ଖ) ଏହି କବିତାରେ କେଉଁ କେଉଁ ପ୍ରାଣୀମାନଙ୍କର ବର୍ଣ୍ଣନା କରାଯାଇଛି ସେମାନଙ୍କ ନାମ ଉଲ୍ଲେଖ କର ।**

ଉ– ଏହି କବିତାରେ ଖଦ୍ୟୋତ, କୀଟ, ମଣ୍ଡୂକ, ମୟୂର ଆଦି ପ୍ରାଣୀମାନଙ୍କୁ ବର୍ଣ୍ଣନା କରାଯାଇଛି ।

**(ଗ) 'ତାପିତ ଥିଲା ଅଷ୍ଟମାସେ' – ଏପରି କାହିଁକି କୁହାଯାଇଛି ?**

ଉ– ଦୀର୍ଘ ଆଠମାସ ଧରି ସୂର୍ଯ୍ୟଙ୍କର ପ୍ରଚଣ୍ଡ କିରଣରେ ଏ ଧରାପୃଷ୍ଠ ଉତ୍ତପ୍ତ ହୋଇଥିଲା । ପ୍ରାଣୀକୂଳ ବହୁ କଷ୍ଟ ଭୋଗ କରୁଥିଲେ । ତେଣୁ ଏପରି କୁହାଯାଇଛି ।

**(ଘ) କାହାର ଦୁଃଖ ଦେଖି କିଏ ଜଳଦାନ କଲା ?**

ଉ– ଗ୍ରୀଷ୍ମ ତାପରେ ସନ୍ତାପିତ ହେଉଥିବା ପୃଥିବୀର ଦୁଃଖକୁ ଦେଖି ମେଘ ଜଳଦାନ କଲା ।

**(ଙ) କବି ପୃଥିବୀକୁ ରାଜାଭାବେ କଳ୍ପନା କରିବାରେ କି ଯଥାର୍ଥତା ରହିଛି ?**

ଉ– ବର୍ଷାଋତୁରେ ରାସ୍ତାଘାଟ, ଖୋଲାପଡ଼ିଆ ଚାରିଆଡ଼େ ଛତୁଗୁଡ଼ିକ ଛତା ପରି ଫୁଟିଥାଏ । ରାଜାଙ୍କ ମସ୍ତକରେ ପାଟଛତା ଶୋଭା ପାଇଲା ଭଳି ପୃଥିବୀ ରାଜାଙ୍କର ମସ୍ତକରେ ଛତୁଗୁଡ଼ିକ ଛତା ପରି ଶୋଭା ପାଉଥାଏ ବୋଲି କବି କଳ୍ପନା କରିଛନ୍ତି । ଏ ତୁଳନାତ୍ମକ ବର୍ଣ୍ଣନାଟି ଅତି ଚମତ୍କାର ହୋଇଛି ।

୨ । **ସଂକ୍ଷେପରେ ଉତ୍ତର ଦିଅ ।**

**(କ) 'ବର୍ଷା' କବିତାରେ କାହାକୁ କାହିଁକି ରାଜା ବୋଲି କୁହାଯାଇଛି ?**

ଉ– *'ବର୍ଷା'* କବିତାରେ ପୃଥିବୀକୁ ରାଜା ବୋଲି କୁହାଯାଇଛି । କାରଣ ବର୍ଷାଋତୁରେ ଛତୁ ଫୁଟି ପୃଥିବୀ ରୂପକ ରାଜାଙ୍କର ଛତ୍ର ଭଳି ଦେଖାଯାଏ ।

**(ଖ) ବର୍ଷାକାଳରେ ଆକାଶରେ କ'ଣ ସବୁ ଦେଖାଯାଏ ?**

ଉ– ବର୍ଷାକାଳରେ ଆକାଶରେ କଳାମେଘ ଭାସୁଥିବାର ଦେଖାଯାଏ । ମେଘ ଫାଙ୍କରେ ବିଜୁଳି ଚମକେ ଓ ଘଡ଼ଘଡ଼ିର ଶବ୍ଦ ଶୁଣିବାକୁ ମିଳେ ।

**(ଗ) ମେଘମାଳା କିପରି ଭାବରେ ଜଳ ବର୍ଷା କଲେ ?**

ଉ– ମହାଶୂନ୍ୟରେ ମେଘମାନେ ବିଜୁଳି ଓ ଘଡ଼ଘଡ଼ି ଶବ୍ଦ ସହ ମିଳିତ ହୁଅନ୍ତି । ପରେ ପରେ ଭୀଷଣ ଶବ୍ଦ କରି ମେଘମାଳ ଜଳ ବର୍ଷା କଲେ ।

(ଘ) ବର୍ଷାଋତୁକୁ ସକଳ ଋତୁଙ୍କର ସାର ବୋଲି କୁହାଯାଏ କାହିଁକି ?

ଉ- ବର୍ଷାଋତୁର ଜଳଦାନରେ ପୃଥିବୀ ଶସ୍ୟଶ୍ୟାମଳା ହୁଏ । ବିଭିନ୍ନ ପ୍ରକାର ଖାଦ୍ୟଶସ୍ୟ ଉତ୍ପନ୍ନ ହୁଏ । ବର୍ଷାଋତୁ ଯୋଗୁଁ ଜୀବଜଗତର ଖାଦ୍ୟାଭାବ ଓ ଜଳାଭାବ କଷ୍ଟ ଦୂର ହେଉଥିବାରୁ ଏହାକୁ ସକଳ ଋତୁଙ୍କର ସାର ବୋଲି କୁହାଯାଏ ।

(ଙ) ବର୍ଷାକାଳରେ ଖଦ୍ୟୋତ କ'ଣ କରେ ?

ଉ- ବର୍ଷାକାଳ ସନ୍ଧ୍ୟାରେ ଖଦ୍ୟୋତ (ଜୁଳୁଜୁଳିଆ ପୋକ) ବିଭିନ୍ନ ଆଡ଼େ ଉଡ଼ିବୁଲେ । ସେମାନଙ୍କ ମିଞ୍ଜିମିଞ୍ଜି ଆଲୁଅରେ ମେଘୁଆ ସନ୍ଧ୍ୟା ସୁନ୍ଦର ଦେଖାଯାଏ ।

୩ । ସରଳ ଭାଷାରେ ବୁଝାଇ ଲେଖ ।

(କ) "ପ୍ରାଣୀ ଜୀବନ ଜଳରାଶି
କରୁଣା ଚିତ୍ତରେ ବରଷି ।।"

*ଉ – ପ୍ରାଣୀ ଜୀବନ ........... ବରଷି ।।*

ଉଦ୍ଧୃତାଂଶଟି ଜଗନ୍ନାଥ ଦାସଙ୍କ ରଚିତ 'ବର୍ଷା' ପଦ୍ୟରୁ ଉଦ୍ଧୃତ । ଏଠାରେ ଜଳ ସହିତ ପ୍ରାଣୀ ଜୀବନର ସମ୍ପର୍କକୁ କବି ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି ।

ବର୍ଷାକାଳ ଆସିଲେ ପୃଥିବୀର ଦୁଃଖ ଦୂର ହୁଏ । ଆଠମାସ ଧରି ସୂର୍ଯ୍ୟ ତାପରେ ଶୁଖିଲା ପଡ଼ିଥିବା ମାଟିରେ ବର୍ଷାଜଳ ପଡ଼ି ତାକୁ ଉର୍ବର କରେ । ଫଳରେ ପୃଥିବୀ ଶସ୍ୟଶ୍ୟାମଳା ହୁଏ । ମେଘମାଳ ଘୋର ଗର୍ଜନ କରି ଜଳ ବର୍ଷା କରନ୍ତି । ପ୍ରାଣୀର ଜୀବନ ହେଉଛି ଜଳ । ଜଳ ବିନା ଜୀବନ ସମ୍ଭବ ନୁହେଁ । ତେଣୁ ବର୍ଷାଋତୁ କରୁଣାପୂର୍ଣ୍ଣ ହୃଦୟରେ ଜଳ ବର୍ଷାକରି ପ୍ରାଣୀର ଜୀବନରୁ ଦୁଃଖ ସନ୍ତାପ ଦୂର କରିଥାଏ ।

ଏହି ବର୍ଣ୍ଣନାରେ ଜଳ ସହ ଜୀବନର ନିବିଡ଼ ସମ୍ପର୍କ ଥିବାର ସୂଚନା ଦିଆଯାଇଛି ।

(ଖ) "ତପସ୍ୟା ଫଳ ଯେହ୍ନେ ପାଇ
ଭୁଞ୍ଜନ୍ତି ଅତି ସୁଖୀ ହୋଇ ।।"

*ଉ – ତପସ୍ୟା ଫଳ ........... ସୁଖୀ ହୋଇ ।।*

ଉଦ୍ଧୃତାଂଶଟି ଜଗନ୍ନାଥ ଦାସଙ୍କ ରଚିତ 'ବର୍ଷା'କବିତାରୁ ଉଦ୍ଧୃତ । ଏଠାରେ କବି ପୃଥିବୀକୁ ଜଣେ ତପସ୍ୱୀ ଏବଂ ବର୍ଷାଜଳକୁ ତପସ୍ୟାର ଫଳ ସ୍ୱରୂପ ବର୍ଣ୍ଣନା କରିଛନ୍ତି ।

ଆଠମାସ ଧରି ପୃଥିବୀ ଶୁଷ୍କ ଥାଏ । ବର୍ଷାଜଳ ପାଇ ତା'ର ଦୁଃଖ ଦୂର ହୁଏ । ପ୍ରାଣୀ, ଉଦ୍ଭିଦ ସମସ୍ତେ ସନ୍ତୋଷ ଲାଭ କରନ୍ତି । ତପସ୍ୱୀଜନ ଯେପରି କଷ୍ଟ ସହି ତପସ୍ୟା କରେ ଏବଂ ଫଳ ପାଇ ସନ୍ତୁଷ୍ଟ ହୁଏ, ପୃଥିବୀ ସେହିପରି କଷ୍ଟ ସହି ଜଳ ପାଇଲା ପରେ ସନ୍ତୁଷ୍ଟ ହୁଏ ।

ଏଠାରେ କବିଙ୍କର ତୁଳନାତ୍ମକ ବର୍ଣ୍ଣନାଟି ଯଥାର୍ଥ ଅଟେ ।

(ଗ) "ଜଳ ପାଇଲା ତୋଷଚିତ୍ତେ
ତପସ୍ୱୀ ଜନଙ୍କର ମତେ ।"

*ଉ – ଜଳ ପାଇଲା ........... ମତେ ।।*

ଉଦ୍ଧୃତାଂଶଟି ଜଗନ୍ନାଥ ଦାସଙ୍କ ରଚିତ 'ବର୍ଷା'ପଦ୍ୟରୁ ଉଦ୍ଧୃତ । ଏଠାରେ କବି ପୃଥିବୀର ଜଳପ୍ରାପ୍ତିକୁ ତପସ୍ୱୀମାନଙ୍କର ତପସ୍ୟାର ଫଳ ଭକ୍ଷଣ ସହ ତୁଳନା କରିଛନ୍ତି ।



ଦୀର୍ଘ ଆଠମାସ ଧରି ପୃଥିବୀ ସୂର୍ଯ୍ୟକିରଣରେ ଉତ୍ତପ୍ତ ହୋଇଥିଲା । ବର୍ଷାଋତୁ ଆସିବାରୁ ଜଳଧାରା ପୃଥିବୀରେ ପଡ଼ି ପୃଥିବୀକୁ ବେଶ୍ ସନ୍ତୋଷ ପ୍ରଦାନ କଲା । ଏହି କଥାକୁ କବି ଏକ ସତ୍ୟ ଘଟଣା ଭାବରେ ଉପସ୍ଥାପନ କରିଛନ୍ତି । ତପସ୍ୱୀମାନେ କଠୋର ତପସ୍ୟା କରି ଚାଲନ୍ତି । ଯେତେବେଳେ ସେହି ତପସ୍ୟା ତାଙ୍କର ସାର୍ଥକ ହୁଏ, ତା'ର ଫଳକୁ ଭୋଗ କରି ସେମାନେ ବେଶ୍ ଆନନ୍ଦିତ ହୁଅନ୍ତି । ତାକୁ ସନ୍ତୋଷ ଚିତ୍ତରେ ଲାଭ କରି ସୁଖୀ ହୁଅନ୍ତି । ଦୀର୍ଘ ଦିନର କଠୋର ତପସ୍ୟାପରେ ଫଳ ଯେପରି ମଧୁର ହୋଇଉଠେ, ସେହିପରି ଦୀର୍ଘଦିନ ଉତ୍ତପ୍ତ ରହିବାପରେ ବର୍ଷା ଜଳ ଲାଭ ପୃଥିବୀକୁ ବେଶ୍ ସନ୍ତୁଷ୍ଟ କରିଛି ।

ବାସ୍ତବରେ କବିଙ୍କର ବର୍ଣ୍ଣନା ବେଶ ଭାବଗର୍ଭକ ହୋଇଛି ।

୪ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।

(କ) ବର୍ଷା ଆଗମନରେ ପ୍ରକୃତିରେ କି କି ପରିବର୍ତ୍ତନ ପରିଲକ୍ଷିତ ହୁଏ ?

ଉ- ଋତୁଚକ୍ରର ଆବର୍ତ୍ତନ କ୍ରମେ ନିଦାଘ ଗ୍ରୀଷ୍ମକାଳ ଶେଷ ହେବାପରେ ବର୍ଷାଋତୁ ଧରାପୃଷ୍ଠକୁ ଆସେ । ଏହି ଋତୁର ଆଗମନରେ ପୃଥିବୀ ସବୁଜଶ୍ରୀ ଧାରଣ କରେ । ଶୁଷ୍କ ବୃକ୍ଷଲତା ସବୁଜ ପତ୍ରମଣ୍ଡିତ ହୋଇ ସୁନ୍ଦରତା ପ୍ରକାଶ କରନ୍ତି । ନୀଳାକାଶରେ ମାଳମାଳ ବଉଦ ଭାସି ବୁଲେ । ବିଜୁଳିର ଚମକ ଓ ଘଡ଼ଘଡ଼ିର ବଜ୍ରନାଦରେ ପୃଥିବୀ ପ୍ରକମ୍ପିତ ହୁଏ । ବର୍ଷା ହେବା ଫଳରେ ଶୁଷ୍କ ଜଳାଶୟ ଜଳପୂର୍ଣ୍ଣ ହୁଏ । ନୀରସ ପୃଥିବୀ ସରସତାରେ ଭରିଯାଏ । ପୃଥିବୀ ଶସ୍ୟ ସମ୍ପଦରେ ମଣ୍ଡିତ ହୁଏ ।

(ଖ) 'ବର୍ଷା' କବିତାରେ କାହାକୁ ଓ କାହିଁକି ରାଜା ବୋଲି କୁହାଯାଇଛି ?

ଉ- 'ବର୍ଷା' କବିତାରେ ଭକ୍ତକବି ଜଗନ୍ନାଥ ଦାସ ପୃଥିବୀକୁ ରାଜା ସହ ତୁଳନା କରିଛନ୍ତି । ଅଭିଷେକ ଉତ୍ସବ ପରେ ରାଜାଙ୍କ ମସ୍ତକ ଉପରେ ପାଟଛତା ବା ରାଜଛତ୍ର ଶୋଭାପାଏ । ବର୍ଷାକାଳରେ ପୃଥିବୀରେ ଛତୁ ଫୁଟେ । ଛତୁଗୁଡ଼ିକ ଆକାରରେ ଛତା ପରି । କବି ଏଠାରେ ଛତୁଗୁଡ଼ିକୁ ରାଜଛତ୍ର ସହିତ ତୁଳନା କରିଛନ୍ତି । କବି ବର୍ଣ୍ଣନା କରିଛନ୍ତି ଯେ ଛତୁଗୁଡ଼ିକ ପୃଥିବୀରୂପକ ରାଜାର ଶିରରେ ରାଜଛତ୍ର ଭଳି ଶୋଭା ପାଉଛି । କବି ପୃଥିବୀକୁ ଯଥାର୍ଥରେ ରାଜାର ସମ୍ମାନ ପ୍ରଦାନ କରିଛନ୍ତି ।

(ଗ) ବର୍ଷାଋତୁକୁ ସକଳ ଋତୁଙ୍କର ସାର ବୋଲି କାହିଁକି କୁହାଯାଇଛି ?

ଉ- ବର୍ଷା ଜଳ ଦାନ କରେ । ଜଳ ହିଁ ଜୀବନ । ଜଳ ବିନା ପ୍ରାଣୀ ବା ଉଦ୍ଭିଦ କେହି ଜୀବନ ଧାରଣ କରିପାରିବେ ନାହିଁ । ନିଦାଘର ପ୍ରଚଣ୍ଡ ତେଜରେ ପୃଥିବୀ ଶୁଷ୍କ, ରୁକ୍ଷ, ନୀରସ ଓ ଶ୍ରୀହୀନ ହୋଇଯାଏ । ବର୍ଷାର ଆଗମନକୁ ସମସ୍ତ ପ୍ରାଣୀଜଗତ ସତୃଷ୍ଣ ନୟନରେ ଚାହିଁ ରହିଥାଆନ୍ତି । ବର୍ଷାଋତୁ ଅମୃତ ତୁଲ୍ୟ ଜଳଧାରା ଅଜାଡ଼ି ଦେଇ ପୃଥିବୀରେ ପାଦ ଥାପେ । ଶୁଷ୍କ ନଦୀ, ନାଳ, ପୁଷ୍କରିଣୀ ଇତ୍ୟାଦି ଜଳାଶୟ ପୂର୍ଣ୍ଣଗର୍ଭା ହୋଇଯା'ନ୍ତି । ବୃକ୍ଷଲତା ସବୁଜପତ୍ର ଧାରଣ କରି ପୃଥିବୀର ଶୋଭାକୁ ବହୁଗୁଣିତ କରନ୍ତି । କୃଷିକ୍ଷେତ୍ର ଶସ୍ୟ ସମ୍ଭାରରେ ହସି ଉଠେ । ବର୍ଷାଋତୁ ଜଳଦାନ କରି ଜୀବଜଗତର ଜୀବନରକ୍ଷା କରିବା ସହ ଶସ୍ୟ ଉପୁଜାଇବାରେ ସହାୟକ ହୋଇଥାଏ । ତେଣୁ ବର୍ଷାଋତୁକୁ ସକଳ ଋତୁଙ୍କର ସାର ବୋଲି କୁହାଯାଏ ।



# ପ୍ରଭାତ ଅବକାଶ

• *ବନମାଳୀ ଦାସ*

*ଜନ୍ମ : ୧୭୩୪*

*ମୃତ୍ୟୁ : ୧୭୮୦*

## କବି ପରିଚୟ

*'ପ୍ରଭାତ ଅବକାଶ'* କବିତାର ରଚୟିତା ବନମାଳୀ ଦାସ ଅଷ୍ଟାଦଶ ଶତାବ୍ଦୀର ଜଣେ ଭକ୍ତକବି । ସେ ପୁରୀରେ ବାସ କରୁଥିଲେ । ଜଗନ୍ନାଥଙ୍କର ସେବା କରିବା ସହିତ ସେ ବହୁ ଭଜନ ଓ ଜଣାଣ ରଚନା କରିଛନ୍ତି । କୃଷ୍ଣଙ୍କୁ ନେଇ ସେ ଅନେକ କବିତା ରଚନା କରିଛନ୍ତି । ତାଙ୍କର କବିତାଗୁଡ଼ିକ ଯେପରି ସରଳ, ସେହିପରି ସଙ୍ଗୀତମୟ । ତାଙ୍କ ରଚିତ ସମସ୍ତ କବିତାକୁ *'ବନମାଳୀ ପଦ୍ୟାବଳୀ'* ନାମରେ ଏକତ୍ର କରି ପ୍ରକାଶ କରାଯାଇଛି ।

## କବିତାର ଆଦର୍ଶ

ଆଲୋଚ୍ୟ *'ପ୍ରଭାତ ଅବକାଶ'* କବିତାଟି *'ବନମାଳୀ ପଦ୍ୟାବଳୀ'*ରୁ ସଂଗୃହୀତ । ଏଥିରେ ନିଦ୍ରାରତ ଶ୍ରୀକୃଷ୍ଣଙ୍କର ନିଦ୍ରାଭଙ୍ଗ ନିମିତ୍ତ ଜନନୀ ଯଶୋଦାଙ୍କର ସ୍ନେହଶ୍ରଦ୍ଧାପୂର୍ଣ୍ଣ ବାଣୀର ସମାହାର ଦେଖିବାକୁ ମିଳେ । ଶ୍ରୀକୃଷ୍ଣଙ୍କର ନିଦ୍ରାଜନିତ ବିଳମ୍ବ ଜାଗ୍ରତ ହେବାର କାରଣ ମଧ୍ୟ ଏଥିରେ ବର୍ଣ୍ଣିତ ହୋଇଛି ।

## ସାରକଥା

ମାତା ଯଶୋଦା ଶ୍ରୀକୃଷ୍ଣଙ୍କୁ ରାତି ପାହିବାର ସୂଚନା ଦେଉଛନ୍ତି । ମନ୍ଦିରରେ ଶୁଆ, ବୃକ୍ଷରେ କାଉ, କୋଇଲି ତଥା କୁକୁଡ଼ାର ଡାକ ଶୁଭିଲାଣି ବୋଲି କହୁଛନ୍ତି । ଯଶୋଦା ମାଆ ବନମାଳୀକୁ କହୁଛନ୍ତି ଯେ, ସେ ଉଠିଲେ ଗଡୁରେ ରଖିଥିବା ସୁଗନ୍ଧଯୁକ୍ତ ଜଳରେ ତାଙ୍କ ମୁହଁ ଧୋଇଦେବେ । ଅମୃତ ପାଣି କଦଳୀ, ଲହୁଣୀ ସହିତ ମିଶ୍ରିତ ପେଡ଼ା, ସରପୁଳି ଓ ଖଣ୍ଡ(କନ୍ଦ) ସହିତ ସର ଖୁଆଇବେ । ହେ ରାମ ବାସୁଦେବ, ତୁମେ ଶୀଘ୍ର ଉଠ । କାରଣ ଗାଈଗୋଠ ଯିବାରେ ବିଳମ୍ବ ହେବ । ସାଙ୍ଗରେ ଦହିଭାତ ନେଇ ଯିବ । ନଈକୂଳରେ ଖାଇବ ।

ଗତକାଲି ବାଛୁରୀ ଚରାଇବାକୁ ଯାଇ ବୋଧହୁଏ ଖୁବ୍ ପରିଶ୍ରମ କରି କ୍ଳାନ୍ତ ହୋଇଛୁ । ତେଣୁ ଅଳସୁଆ ହୋଇ ଶୋଇରହିଛୁ । ଦେହ ଦୁର୍ବଳ ଲାଗୁଛି କି ? ସିଂହଦ୍ୱାରରେ ଗୋପାଳବାଳକେ ଡାକିଲେଣି । ଆଉ ତୁ କେତେ ସମୟ ଶୋଇବୁ ? ଆକାଶରେ ସୂର୍ଯ୍ୟ ଉଦୟ ହୋଇଗଲାଣି । ବନମାଳୀ କହୁଛନ୍ତି, ହେ ପ୍ରଭୁ ଚକ୍ରଧର ! ତୁମେ ଶୀଘ୍ର ଉଠ । ବନକୁ ଯିବାପାଇଁ ବିଳମ୍ବ ହେବ । ତୁମେ ବନକୁ ଗମନ କର । ତୁମର ଚରଣରେ ବନମାଳୀ ଦାସ ହୋଇଛି ।

## କଠିନ ଶବ୍ଦାର୍ଥ

ନିଶି – ରାତି । ବଂଶୀଧର – ଶ୍ରୀକୃଷ୍ଣ । ଶୁକ – ଶୁଆ । କାକ – କାଉ । ପିକ – କୋଇଲି । କୁକ୍କୁଟ – କୁକୁଡ଼ା । ପରଖର – ଖୁବ୍ ଜୋର୍‌ରେ । ଯଶୋବନ୍ତୀ – ଯଶୋଦା । ଭାଳି – ଚିନ୍ତିତ ହୋଇ । ପଖାଳି – ଧୋଇଦେବି । ଝରି – ନଳୀଯୁକ୍ତ ଜଳପାତ୍ର । ବାସ ନୀର – ସୁଗନ୍ଧିତ ଜଳ । ଲବଣୀ – ଲହୁଣୀ । ଅଧାମ – ରାବିଡ଼ି । ଗୋଟିକା – ପେଡ଼ା । ଭୁଞ୍ଜାଇବି – ଖୁଆଇବି । ଗୋ-ଗୋଷ୍ଠ – ଗାଈଗୋଠ । ଉଛୁର – ବିଳମ୍ବ । ଦଧି ଅନ୍ନ – ଦହି ଭାତ । ଆହାର – ଭୋଜନ । ଅଶକତ – ଦୁର୍ବଳ । ଗୋପସୁତ – ଗୋପାଳ ବାଳକ । ଦିନକର – ସୂର୍ଯ୍ୟ । ଚରଣ – ପାଦ । କିଙ୍କର – ଚାକର ।





## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ସକାଳ ହେବାରୁ କେଉଁ କେଉଁ ପକ୍ଷୀ ରାବିଲେ ?**

ଉ– ସକାଳ ହେବାରୁ ଶୁଆ, କାଉ, କୋଇଲି ଓ କୁକୁଡ଼ା ଆଦି ପକ୍ଷୀମାନେ ରାବିଲେ ।

**(ଖ) ମାତା ଯଶୋବନ୍ତୀ ଶ୍ରୀକୃଷ୍ଣଙ୍କୁ କେଉଁସବୁ ଖାଦ୍ୟ ଖୁଆଇବେ ବୋଲି କହିଛନ୍ତି ?**

ଉ– ମାତା ଯଶୋବନ୍ତୀ ଶ୍ରୀକୃଷ୍ଣଙ୍କୁ କଦଳୀ, ଲହୁଣୀ ମିଶ୍ରିତ ପେଡ଼ା, ରାବିଡ଼ି ଏବଂ ଖଣ୍ଡ ଓ ସର ପ୍ରଭୃତି ଖୁଆଇବେ ବୋଲି ମଧ୍ୟ କହିଛନ୍ତି ।

**(ଗ) ଶ୍ରୀକୃଷ୍ଣ କେଉଁ କାରଣରୁ ପଥଶ୍ରମ ପାଇ·ଅଧିକ ସମୟ ଶୋଇଯାଇଛନ୍ତି ?**

ଉ– ଶ୍ରୀକୃଷ୍ଣ ଗତକାଲି ବାଛୁରୀ ଚରାଇବାକୁ ଯାଇ ପଥଶ୍ରମ ପାଇ ଶରୀରରେ ଦୁର୍ବଳତା ଅନୁଭବ କରିଛନ୍ତି । ତେଣୁ ଅଳସରେ ଅଧିକ ସମୟ ଶୋଇଯାଇଛନ୍ତି ବୋଲି ଯଶୋଦା ଭାବିଛନ୍ତି ।

**(ଘ) କେଉଁମାନେ ସିଂହଦ୍ୱାର ନିକଟରେ ଥାଇ ଶ୍ରୀକୃଷ୍ଣଙ୍କୁ ଡାକୁଛନ୍ତି ?**

ଉ– ଗୋପାଳ ବାଳକମାନେ ସିଂହଦ୍ୱାର ନିକଟରେ ଥାଇ ଶ୍ରୀକୃଷ୍ଣଙ୍କୁ ଡାକୁଛନ୍ତି ।

୨ । ଉତ୍ତର ଲେଖ ।

**(କ) କେଉଁ କେଉଁ ପକ୍ଷୀ ଶ୍ରୀକୃଷ୍ଣଙ୍କୁ ରାତି ପାହିଯିବାର ସୂଚନା ଦେଉଛନ୍ତି ?**

ଉ– ମନ୍ଦିରରେ ଶୁଆ, ଗଛରେ କାଉ ଓ କୋଇଲି ଏବଂ କୁକୁଡ଼ା ଭଳି ପକ୍ଷୀ ଶ୍ରୀକୃଷ୍ଣଙ୍କୁ ରାତି ପାହିଯିବାର ସୂଚନା ଦେଉଛନ୍ତି ।

**(ଖ) ଶ୍ରୀକୃଷ୍ଣ ନିଦରୁ ଉଠିବା ପରେ ମା' ଯଶୋଦା କ'ଣ କରିବେ କହୁଛନ୍ତି ?**

ଉ– ଶ୍ରୀକୃଷ୍ଣ ନିଦରୁ ଉଠିବା ପରେ ମାଆ ଯଶୋଦା ଝରିରେ ରଖିଥିବା ସୁଗନ୍ଧଯୁକ୍ତ ଜଳରେ ତାଙ୍କର ଶ୍ରୀମୁଖକୁ ଧୋଇଦେବେ । ତା'ପରେ ତାଙ୍କୁ କଦଳୀ, ଲହୁଣୀ ମିଶ୍ରିତ ଗୋଟିକା, ଅଧାମ, ଖଣ୍ଡ ଏବଂ ସର ପ୍ରଭୃତି ଖୁଆଇବେ ବୋଲି କହୁଛନ୍ତି ।

**(ଗ) ଶ୍ରୀକୃଷ୍ଣ କାହିଁକି ଏତେବେଳ ପର୍ଯ୍ୟନ୍ତ ଶୋଇଛନ୍ତି ବୋଲି ମାତା ଯଶୋଦା ଭାବୁଛନ୍ତି ?**

ଉ– ଶ୍ରୀକୃଷ୍ଣ ଗତକାଲି ବାଛୁରୀ ଚରାଇବାକୁ ବନକୁ ଯାଇଥିଲେ । ସେଥିରେ ତାଙ୍କର ବହୁତ ବାଟଚଲା ପରିଶ୍ରମ ଯୋଗୁଁ ଦେହ ଦୁର୍ବଳ ଲାଗୁଛି । ତେଣୁ ଆଳସ୍ୟ ହେତୁ ଶ୍ରୀକୃଷ୍ଣ ଏତେବେଳଯାଏ ଶୋଇଛନ୍ତି ବୋଲି ମାଆ ଯଶୋଦା ମନେ ମନେ ଭାବୁଛନ୍ତି ।

**(ଘ) ଏହି କବିତାଟିରେ ଯଶୋଦାଙ୍କର ମାତୃ ସ୍ନେହ କିପରି ଫୁଟି ଉଠିଛି ?**

ଉ– ମାଆ ଯଶୋଦା ଶ୍ରୀକୃଷ୍ଣଙ୍କର ଉଠିବାରେ ବିଳମ୍ବ ହେବାର ଦେଖି ଖୁବ୍ ଶ୍ରଦ୍ଧାରେ ତାଙ୍କୁ ଉଠାଉଛନ୍ତି । ଉଠିବାମାତ୍ରେ ସୁଗନ୍ଧଯୁକ୍ତ ଜଳରେ ମୁହଁ ଧୁଆଇ ସ୍ୱାଦିଷ୍ଟ ଖାଦ୍ୟ ଖୁଆଇବାର ଲୋଭ ଦେଖାଉଛନ୍ତି । ଏପରିକି ଗୋଚାରଣ ନିମିତ୍ତ ଯିବାବେଳେ ଦଧି ଅନ୍ନ ସଙ୍ଗରେ ନେବା କଥା ମଧ୍ୟ କହୁଛନ୍ତି । ତତ୍‌ସହିତ ଶ୍ରୀକୃଷ୍ଣଙ୍କର ଶାରୀରିକ ପରିଶ୍ରମ କଥା ମନେପକାଇ ନିଜେ ଯଶୋଦା ଚିନ୍ତିତ ହେଉଛନ୍ତି । ଏହିପରି ଭାବେ ଉକ୍ତ କବିତାରେ ଯଶୋଦାଙ୍କର ଅନାବିଳ ମାତୃସ୍ନେହର ଚିତ୍ର ଫୁଟି ଉଠିଛି ।

(ଡ) ଗୋପାଳ ବାଳକମାନେ କ'ଣ କହି ଶ୍ରୀକୃଷ୍ଣଙ୍କୁ ନିଦରୁ ଉଠାଉଛନ୍ତି ?

ଉ– ପ୍ରତିଦିନ ଗୋପାଳ ବାଳକମାନଙ୍କ ସହ ଶ୍ରୀକୃଷ୍ଣ ଗାଈ ଚରାଇବାକୁ ବଣକୁ ଯାଆନ୍ତି । ସେଦିନ ସୂର୍ଯ୍ୟୋଦୟ ହୋଇ ସାରିଥିଲେ ମଧ୍ୟ ଶ୍ରୀକୃଷ୍ଣ ଉଠିନଥିବାରୁ ସାଥୀ ଗୋପାଳ ବାଳକମାନେ ତାଙ୍କୁ 'ଅଚ୍ୟୁତ ତୁ କେତେ ନିଦରେ ଶୋଇଛୁ' ବୋଲି କହି ନିଦରୁ ଉଠାଇବାକୁ ଚେଷ୍ଟା କରୁଥିଲେ ।

୩ । ସରଳ ଭାଷାରେ ବୁଝାଇ ଲେଖ ।

(କ) ଅମୃତ ପାଣି କଦଳୀ, ଲବଣୀ ସଙ୍ଗତେ ଗୋଳି
ଅଧାମ ଗୋଟିକା ପୁଳି, ଖଣ୍ଡ ସଙ୍ଗେ ଭୁଞ୍ଜାଇବି ସର ହେ ।

ଉ – *ଅମୃତ ପାଣି ................. ସର ହେ ।*

ଶଂସିତ ପଦ୍ୟାଂଶଟି ଭକ୍ତକବି ବନମାଳୀ ଦାସଙ୍କ ରଚିତ *'ପ୍ରଭାତ ଅବକାଶ'* କବିତାରୁ ସଂଗୃହୀତ ।

ଏଠାରେ ମାଆ ଯଶୋଦା ଶ୍ରୀକୃଷ୍ଣଙ୍କୁ ନିଦ୍ରାରୁ ଉଠିଲା ପରେ ଯେଉଁସବୁ ସ୍ୱାଦିଷ୍ଟ ଦ୍ରବ୍ୟ ଭୋଜନ କରାଇବେ ବୋଲି କହିଛନ୍ତି, ସେ ସମ୍ପର୍କରେ ଆଲୋକପାତ କରାଯାଇଛି ।

ରାତି ପାହିଲାଣି, ଅଥଚ ଶ୍ରୀକୃଷ୍ଣ ନିଦ୍ରା ତ୍ୟାଗ କରିନାହାନ୍ତି । ତେଣୁ ତାଙ୍କୁ ଜଣାଇ ଦେବାପାଇଁ ମାଆ କହୁଛନ୍ତି – ହେ ବଂଶୀଧର ! ମନ୍ଦିରରେ ଶୁଆ, ଗଛରେ କାଉ, କୋଇଲି ଓ କୁକୁଡ଼ାମାନେ ବାରମ୍ବାର ଡାକିଲେଣି । ତୁମେ ଶୀଘ୍ର ଉଠିଯାଅ । ଉଠିଲେ ଝରିରେ ରଖିଥିବା ସୁଗନ୍ଧଯୁକ୍ତ ଜଳରେ ତୁମର ମୁହଁ ଧୋଇଦେବି । ତା'ପରେ ତୁମପାଇଁ ଅମୃତତୁଲ୍ୟ ଯେଉଁସବୁ ଖାଦ୍ୟ ପଦାର୍ଥ ରଖିଛି, ତାହା ମଧ୍ୟ ଖୁଆଇବି । କଦଳୀ, ଲହୁଣୀ ମିଶ୍ରିତ ପେଡ଼ା, ସରପୁଳି ସହିତ ଖଣ୍ଡ ଓ ସର ମଧ୍ୟ ଖୁଆଇବି । ଯେଉଁସବୁ ଖାଦ୍ୟ ଶ୍ରୀକୃଷ୍ଣଙ୍କର ଅତି ପ୍ରିୟ ଅଟେ, ତାହାକୁ ଖୁଆଇବାର ଲୋଭ ମାଆ ଯଶୋଦା ଦେଖାଇଛନ୍ତି ।

ବାସ୍ତବରେ ମାଆ ଯଶୋଦା ପୁତ୍ରସ୍ନେହରେ ଆବଦ୍ଧ ହୋଇ ଯେଉଁପରି ସ୍ନେହପୂର୍ଣ୍ଣ ବାଣୀ ଉଚ୍ଚାରଣ କରିଛନ୍ତି, ତାହା ଅନ୍ୟତ୍ର ବିରଳ ।

(ଖ) ବାଛୁରୀ ଚରାଇ ଯାଇ, କାଲି ପଥଶ୍ରମ ପାଇ
ଅଳସରେ ଅଛୁ ଶୋଇ, ଅଶକତ ହୁଏ କି ଶରୀର ହେ ।

ଉ – *ବାଛୁରୀ ......................... ଶରୀର ହେ ।*

ଉଦ୍ଧୃତାଂଶଟି ଭକ୍ତକବି ବନମାଳୀ ଦାସଙ୍କ ରଚିତ *'ପ୍ରଭାତ ଅବକାଶ'* କବିତାରୁ ସଂଗୃହୀତ ।

ଏଠାରେ ଶ୍ରୀକୃଷ୍ଣଙ୍କ ଉଠିବାରେ ବିଳମ୍ବର କାରଣ ସମ୍ପର୍କରେ ମାଆ ଯଶୋଦାଙ୍କ ମନରେ ଯେଉଁ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି, ତାହା ବର୍ଣ୍ଣିତ ହୋଇଛି ।

ଦିନେ ଶ୍ରୀକୃଷ୍ଣଙ୍କର ଉଠିବାରେ ବିଳମ୍ବ ହୋଇଛି । ମାଆ ନିଜ ଆଦରର ପୁତ୍ର ଶ୍ରୀକୃଷ୍ଣଙ୍କୁ ଉଠାଇବା ପାଇଁ ଉଦ୍ୟମ କରୁଛନ୍ତି । ସେ କହିଛନ୍ତି ଯେ ପକ୍ଷୀମାନଙ୍କର କଳରବରେ ଚତୁର୍ଦ୍ଦିଗ ମୁଖରିତ ହେଲାଣି । ଏପର୍ଯ୍ୟନ୍ତ ଶ୍ରୀକୃଷ୍ଣ ଶଯ୍ୟାତ୍ୟାଗ କରୁନାହାଁନ୍ତି ! ତେଣୁ ମାଆ ତାଙ୍କୁ ଲୋଭଗ୍ରସ୍ତ କରାଉଛନ୍ତି । ବିଭିନ୍ନ ପ୍ରକାରର ସ୍ୱାଦିଷ୍ଟ ଖାଦ୍ୟ ଖୁଆଇବାର ଲୋଭ ଦେଖାଉଛନ୍ତି । ଏପରିକି ଡେରି ହେଲେ ଗାଈମାନଙ୍କୁ ଗୋଠକୁ ନେଇଯିବାରେ ବିଳମ୍ବ ହେବ ବୋଲି ମଧ୍ୟ ସେ କହିଛନ୍ତି । ତଥାପି ମାଆର ମନ ବୁଝିନାହିଁ । ତେଣୁ ସେ ଭାବୁଛନ୍ତି, ଗତକାଲି ବାଛୁରୀ ଚରାଇବାକୁ ଯାଇ ପୁଅ ପଥଶ୍ରମ ହେତୁ ଖୁବ୍ ଦୁର୍ବଳ ହୋଇପଡ଼ିଛି । ତେଣୁ ଶରୀରରେ ଦୁର୍ବଳତା ହେତୁ ଅଳସୁଆ ହୋଇ ସେ ଶୋଇପଡ଼ିଛି ! ସେଥିପାଇଁ ବୋଧହୁଏ ତା'ର ଉଠିବାରେ ବିଳମ୍ବ ହେଉଛି ।

ବାସ୍ତବରେ ପୁତ୍ରବତ୍ସଳା ଜନନୀ ଯଶୋଦାଙ୍କର ଅନାବିଳ ପୁତ୍ର ସ୍ନେହର ପଟାନ୍ତର ନାହିଁ ।



୪ । ମାଆ ଯଶୋଦା ଶ୍ରୀକୃଷ୍ଣଙ୍କୁ ନିଦରୁ ଉଠାଇବା ପାଇଁ ବ୍ୟସ୍ତ ହୋଇପଡ଼ିଛନ୍ତି । ଯେଉଁ ପଦଟିରୁ ଏହାର ସୂଚନା ମିଳୁଛି, ସେହି ପଦଟି ଲେଖ ।

ଉ – *''ସିଂହଦ୍ୱାରେ ଗୋପସୁତ, ଡାକନ୍ତି ଉଠ ଅଚ୍ୟୁତ*
*କେତେ ନିଦ୍ରାଯାଉ ତୁ ତ, ଆକାଶେ ଉଦୟ ଦିନକର ହେ ।''*

୫ । ଶ୍ରୀକୃଷ୍ଣଙ୍କୁ କିଏ, କେଉଁ ନାମ ଧରି ଡାକିଛନ୍ତି, ସେହି ନାମଗୁଡ଼ିକ ଲେଖ ।

ଉ–

| କିଏ ଡାକିଛନ୍ତି | କେଉଁ ନାମରେ |
|---|---|
| ଯଶୋଦା | ବଂଶୀଧର, ବନମାଳୀ, ରାମ, ବାସୁଦେବ |
| ଗୋପସୁତ | ଅଚ୍ୟୁତ |
| କବି ବନମାଳୀ | ଚକ୍ରଧର |

୬ । ବଂଶୀ ଧରନ୍ତି ଯେ, ସେ 'ବଂଶୀଧର'; ଏହିଭଳି ଆଉ କେତୋଟି ଶବ୍ଦ ଲେଖ ।

ଉ–

| | |
|---|---|
| ଚକ୍ର ଧରନ୍ତି ଯେ – | ଚକ୍ରଧର |
| ଧନୁ ଧରନ୍ତି ଯେ – | ଧନୁର୍ଦ୍ଧର |
| ଶ୍ରୀ ଧରନ୍ତି ଯେ – | ଶ୍ରୀଧର |
| ଭୂ ଧରନ୍ତି ଯେ – | ଭୂଧର |

୭ । ଅସଜଡ଼ା ପଦକୁ ସଜାଡ଼ି ଲେଖ ।

(କ) ବାସୁଦେବ ଉଚ୍ଛୁର ଗୋ-ଗୋଷ୍ଠେ ହେବ ରାମ ଉଠ ।

ଉ– ଉଠ ରାମ ବାସୁଦେବ, ଗୋ-ଗୋଷ୍ଠ ଉଚ୍ଛୁର ହେବ ।

(ଖ) ଆହାର ନଦୀକୂଳେ ଦଧି ସାଥେ ଅନ୍ନ ନେବ କରିବ ହେ ।

ଉ– ଦଧି ଅନ୍ନ ସାଥେ ନେବ, ନଦୀକୂଳେ କରିବ ଆହାର ହେ ।

**ତୁମ ପାଇଁ କାମ**

୧ । କାଉ, କୁକୁଡ଼ା, ଶୁଆ, ମୟୂର ଓ ଅନ୍ୟ ପକ୍ଷୀମାନଙ୍କର ପର ସଂଗ୍ରହ କର ଏବଂ ସେଗୁଡ଼ିକ ତୁମ ବିଦ୍ୟାଳୟରେ ରଖ ।

୨ । ଶ୍ରୀକୃଷ୍ଣଙ୍କ ପିଲାଦିନ ଉପରେ ଲେଖାଯାଇଥିବା ଅନ୍ୟ କବିତା ସଂଗ୍ରହ କର ଏବଂ ପଢ଼ ।

୩ । ବନମାଳୀ ଦାସଙ୍କ ଲିଖିତ ଅନ୍ୟ କବିତାଗୁଡ଼ିକୁ ସଂଗ୍ରହ କରି ଶ୍ରେଣୀରେ ସାଙ୍ଗମାନଙ୍କ ସହିତ ଆବୃତ୍ତି କର ।
*[ଛାତ୍ରଛାତ୍ରୀମାନେ ଶିକ୍ଷକ/ଅଭିଭାବକଙ୍କ ସାହାଯ୍ୟ ନେଇ ନିଜେ ଅଭ୍ୟାସ କରିବେ ।]*

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧ । ସଂକ୍ଷେପରେ ଉତ୍ତର ଦିଅ ।

(କ) କବି ବନମାଳୀ କିପରି ଶ୍ରୀକୃଷ୍ଣଙ୍କୁ ଉଠିବାକୁ ନିବେଦନ କରିଛନ୍ତି ?

ଉ– ଭକ୍ତକବି ବନମାଳୀ କହୁଛନ୍ତି, ହେ ପ୍ରଭୁ ଚକ୍ରଧର ! ବଣକୁ ଯିବାକୁ ଡେରି ହେବ । ତେଣୁ ଶୀଘ୍ର ଉଠି ବଣକୁ ଗମନ କରନ୍ତୁ । ତୁମର ପାଦରେ ମୁଁ ଚାକର ପରି ନିବେଦନ କରୁଛି ।

**(ଖ) ନଦୀକୂଳରେ କ'ଣ ଖାଇବାକୁ ଜନନୀ କହିଛନ୍ତି ?**

ଉ– ନଦୀକୂଳରେ ଦହି ଭାତ ଖାଇବାକୁ ଜନନୀ କହିଛନ୍ତି ।

**(ଗ) ''ଆକାଶେ ଉଦୟ ଦିନକର ହେ'' – ଏହି ଉକ୍ତିରୁ କ'ଣ ସୂଚନା ମିଳୁଛି ?**

ଉ– ସୂର୍ଯ୍ୟ ଉଦୟ ହୋଇଗଲେଣି । ରାତି ପାହି ସାରିଲାଣି । ତେଣୁ ଆଉ ଶୋଇବା ଅନୁଚିତ । – ଉପରୋକ୍ତ ଉକ୍ତିରୁ ଏହି କଥା ମାଆ କହିବାର ସୂଚନା ମିଳୁଛି ।

**(ଘ) ଯଶୋଦା କିପରି ଶ୍ରୀକୃଷ୍ଣଙ୍କର ମୁହଁ ଧୋଇବାକୁ କହିଛନ୍ତି ?**

ଉ– ଯଥାଶୀଘ୍ର ଉଠିଲେ ସୁଗନ୍ଧିତ ଜଳ ରଖିଛନ୍ତି, ତାହା ସାହାଯ୍ୟରେ ସେ ଶ୍ରୀକୃଷ୍ଣଙ୍କର ମୁହଁ ଧୋଇଦେବେ ବୋଲି କହିଛନ୍ତି ।

**(ଙ) ଉକ୍ତ କବିତାରେ କବି ଶ୍ରୀକୃଷ୍ଣଙ୍କର ଯେଉଁ ଯେଉଁ ନାମ ଉଲ୍ଲେଖ କରିଛନ୍ତି, ତାହାକୁ କ୍ରମାନ୍ୱୟରେ ଲେଖ ।**

ଉ – ବଂଶୀଧର, ବନମାଳୀ, ରାମ, ବାସୁଦେବ, ଅଚ୍ୟୁତ ଓ ଚକ୍ରଧର ।

୨ । **ସଂକ୍ଷେପରେ ଉତ୍ତର ଦିଅ ।**

**(କ) 'ଉଠ ରାମ ବାସୁଦେବ' ବୋଲି କିଏ କାହା ଉଦ୍ଦେଶ୍ୟରେ କହିଛନ୍ତି ?**

ଉ– କୃଷ୍ଣ ଜନନୀ ଯଶୋଦାଙ୍କର ନୟନ ପିତୁଳା ଥିଲେ । 'ଉଠ ରାମ ବାସୁଦେବ' ବୋଲି କୃଷ୍ଣପ୍ରାଣା ଜନନୀ ଯଶୋଦା ବଳରାମ ଓ କୃଷ୍ଣଙ୍କ ଉଦ୍ଦେଶ୍ୟରେ କହିଛନ୍ତି ।

**(ଖ) ସକାଳ ହେବାରୁ କେଉଁ କେଉଁ ପକ୍ଷୀ ରାବିଲେ ?**

ଉ– ସକାଳ ହେବାରୁ ମନ୍ଦିରରେ ଶୁକପକ୍ଷୀ ଓ ବୃକ୍ଷଡାଳରେ କାଉ ରାବିଲେ । କୋଇଲି କୁହୁ କୁହୁ ତାନରେ ଓ କୁକୁଡ଼ା ଉଚ୍ଚ ସ୍ୱରରେ ରାବିଲେ ।

**(ଗ) ଶ୍ରୀକୃଷ୍ଣ କେଉଁ କାରଣରୁ ପଥଶ୍ରମ ପାଇ ଅଧିକ ସମୟ ଶୋଇଯାଇଛନ୍ତି ?**

ଉ– ଶ୍ରୀକୃଷ୍ଣ ଗୋପାଳ ବାଳକମାନଙ୍କ ସହିତ ଗତକାଲି ବାଛୁରୀ ଚରାଇବାକୁ ଯାଇ ପଥଶ୍ରମ ପାଇ ଦୁର୍ବଳ ହୋଇ ଯାଇଛନ୍ତି । ତେଣୁ ଆଳସ୍ୟ କାରଣରୁ ଅଧିକ ସମୟ ଶୋଇ ଯାଇଛନ୍ତି ।

**(ଘ) ଯଶୋଦା କିପରି କୃଷ୍ଣଙ୍କ ମୁଖ ପଖାଳିବେ ବୋଲି କହିଛନ୍ତି ?**

ଉ– ରାତି ପାହିଯିବାରୁ ଯଶୋଦା ଶ୍ରୀକୃଷ୍ଣଙ୍କୁ ଶଯ୍ୟା ତ୍ୟାଗ କରି ଉଠିବାକୁ କହିଛନ୍ତି । କୃଷ୍ଣ ଉଠିଲା ପରେ ଝରିରେ ରଖିଥିବା ସୁବାସିତ ପାଣିରେ ତାଙ୍କ ମୁଖ ପଖାଳିବେ ବୋଲି କହିଛନ୍ତି ।

**(ଙ) ମାତା ଯଶୋଦା ଶ୍ରୀକୃଷ୍ଣଙ୍କୁ କ'ଣ କ'ଣ ଖୁଆଇବେ ବୋଲି କହିଛନ୍ତି ?**

ଉ– ଶ୍ରୀକୃଷ୍ଣ ଶଯ୍ୟାତ୍ୟାଗ କରି ଉଠିବା ପରେ ମାତା ଯଶୋଦା ତାଙ୍କୁ ଅମୃତ ପାଣି କଦଳୀ, ଲବଣୀ, ଅଧାମ ଗୋଟିକା, ପୁଳି ଆଦି ଖୁଆଇବେ ବୋଲି କହିଛନ୍ତି ।



୩ । **ସରଳ ଭାଷାରେ ବୁଝାଇ ଲେଖ ।**

**(କ) ''ସିଂହଦ୍ୱାରେ ଗୋପସୁତ, ଡାକନ୍ତି ଉଠ ଅଚ୍ୟୁତ ।''**

ଉ – *ସିଂହଦ୍ୱାରେ ........................ ଅଚ୍ୟୁତ ।*

ଶଂସିତ ପଦ୍ୟାଂଶଟି ବନମାଳୀ ଦାସଙ୍କ ରଚିତ *'ପ୍ରଭାତ ଅବକାଶ'* କବିତାରୁ ସଂଗୃହୀତ । ଏଠାରେ ମାଆ ଯଶୋଦା ଶ୍ରୀକୃଷ୍ଣଙ୍କ ନିଦ୍ରାଭଙ୍ଗ କରିବାକୁ ଯେଉଁସବୁ କଥା କହିଛନ୍ତି, ତାହା ବର୍ଣ୍ଣିତ ହୋଇଛି ।

ରାତି ପାହିଯାଇଛି । ପକ୍ଷୀମାନେ ରାବ କରିଲେଣି । ତଥାପି ଶ୍ରୀକୃଷ୍ଣ ଅଳସୁଆ ହୋଇ ଶୋଇଛନ୍ତି । ମାଆ ଯଶୋଦା ତାଙ୍କୁ ଖାଦ୍ୟର ପ୍ରଲୋଭନ ଦେଖାଇ ସାରିଲା ପରେ ଶ୍ରୀକୃଷ୍ଣ ନ ଉଠିବାରୁ ବାଧହୋଇ ସିଂହଦ୍ୱାରରେ ଗୋପବାଳକଙ୍କ ଭିଡ଼ ଲାଗିବା କଥା କହିଛନ୍ତି । ଗୋପାଳ ବାଳକମାନେ କେତେବେଳରୁ ଆସି 'ଅଚ୍ୟୁତ' ବୋଲି ଡାକିଲେଣି । ତଥାପି ସେ ଶୋଇଛନ୍ତି ! ତତ୍ ସହିତ ପୂର୍ବଦିଗର ଆକାଶରେ ସୂର୍ଯ୍ୟ ଉଦୟ ମଧ୍ୟ ହୋଇସାରିଲେଣି । ତେଣୁ ଶ୍ରୀକୃଷ୍ଣ ଆଉ ଶୋଇବା ଅନୁଚିତ ବୋଲି ମାଆ ଯଶୋଦା କହିଛନ୍ତି ।

ବାସ୍ତବରେ ଯଶୋଦାଙ୍କର ଏହି ଉକ୍ତି ବେଶ୍ ଭାବପୂର୍ଣ୍ଣ ହୋଇପାରିଛି ।

**(ଖ) ''ଶ୍ରୀମୁଖ .................... ନୀର ହେ ।''**

ଉ – *ଶ୍ରୀମୁଖ ........................ ନୀର ହେ ।*

ଶଂସିତ ପଦ୍ୟାଂଶଟି ବନମାଳୀ ଦାସଙ୍କ ରଚିତ *'ପ୍ରଭାତ ଅବକାଶ'* କବିତାରୁ ସଂଗୃହୀତ । ଏଠାରେ କବି ବନମାଳୀ ଦାସ ଶ୍ରୀକୃଷ୍ଣ ନିଦରୁ ଉଠିଲେ କିପରି ମୁହଁ ଧୋଇବେ, ସେକଥା ମାଆ ଯଶୋଦାଙ୍କ ମାଧ୍ୟମରେ ପ୍ରକାଶ କରିଛନ୍ତି ।

ଶ୍ରୀକୃଷ୍ଣ ନିଦରୁ ଉଠିବାରେ ବିଳମ୍ବ ଘଟିବାରୁ ମାଆ ଯଶୋଦା ତାଙ୍କୁ ଉଠାଇ ଦେଇଛନ୍ତି । ଆଉ ବଂଶୀଧର ବୋଲି ଆଦରରେ ସମ୍ବୋଧନ କରି କହୁଛନ୍ତି ଯେ ରାତି ପାହିଗଲାଣି । ପକ୍ଷୀମାନେ ଡାକିଲେଣି ତେଣୁ ତୁମେ ଆଉ ବିଳମ୍ବ କର ନାହିଁ । ଏପରିକି ମାଆ ଯଶୋଦା ଭାବିଭାବି 'ବନମାଳୀ' ବୋଲି ସମ୍ବୋଧନ କରି କହିଛନ୍ତି ଯେ ଏଥର ଉଠିପଡ଼ । ଆଉ ବିଳମ୍ବ କରନାହିଁ । ପାତ୍ରରେ ମୁଁ ଖୁବ୍ ସୁବାସିତ ଜଳ ସାଇତି ରଖିଛି । ତୁମେ ଉଠିଲେ ସେହି ଜଳରେ ମୁଁ ତୁମର ମୁହଁକୁ ଧୋଇଦେବି । ଆଉ ଡେରି ନ କରି ତୁମେ ଶୀଘ୍ର ଶଯ୍ୟାତ୍ୟାଗ କର ।

ବାସ୍ତବରେ ଯଶୋଦାଙ୍କର ଏହି ଉକ୍ତି ବେଶ ହୃଦୟସ୍ପର୍ଶୀ ହୋଇପାରିଛି ।

୪ । **ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।**

**(କ) ଶ୍ରୀକୃଷ୍ଣ କାହିଁକି ଏତେବେଳ ପର୍ଯ୍ୟନ୍ତ ଶଯ୍ୟାତ୍ୟାଗ କରିନାହାନ୍ତି ବୋଲି ମାତା ଯଶୋଦା ଭାବିଛନ୍ତି ?**

ଉ– ଯଶୋଦାଙ୍କ ହୃଦୟରେ ଶ୍ରୀକୃଷ୍ଣଙ୍କ ପାଇଁ ଅମାପ ସ୍ନେହ ଶ୍ରଦ୍ଧା ପୂରି ରହିଥିଲା । ସେ ସଦାସର୍ବଦା କୃଷ୍ଣଙ୍କ କଥା ହିଁ ଚିନ୍ତା କରୁଥିଲେ । ଅଲିଅଳ ପୁତ୍ର କୃଷ୍ଣଙ୍କୁ ଦଣ୍ଡେ ନ ଦେଖିଲେ ସେ ପାଗଳୀ ପ୍ରାୟ ହେଉଥିଲେ । ଶ୍ରୀକୃଷ୍ଣ ଶଯ୍ୟାତ୍ୟାଗ କରିବାରେ ବିଳମ୍ବ ହେବାରୁ ତାଙ୍କ ମନ ଚିନ୍ତାଗ୍ରସ୍ତ ହୋଇଛି । ସେ ଭାବିଛନ୍ତି ଯେ ଗତକାଲି ଶ୍ରୀକୃଷ୍ଣ ଗୋ-ବତ୍ସମାନଙ୍କୁ ଚାରଣ କରିବାକୁ ବନକୁ ଯାଇ ପଥଶ୍ରମ ପାଇଛନ୍ତି । ତେଣୁ ତାଙ୍କର ବିଳମ୍ବ ଘଟୁଛି । ତାଙ୍କ ଶରୀର ଦୁର୍ବଳ ହୋଇଯାଇଛି । ଏହିଭଳି ଆଶଙ୍କାରେ ଜନନୀ ଯଶୋଦା ବ୍ୟସ୍ତ ହୋଇଛନ୍ତି ।

**(ଖ) 'ପ୍ରଭାତ ଅବକାଶ' କବିତାରେ ଜନନୀ ଯଶୋଦାଙ୍କ ମାତୃସ୍ନେହ କିପରି ଫୁଟିଉଠିଛି ବର୍ଣ୍ଣନା କର ।**
**କିମ୍ବା, ପ୍ରଭାତ ଅବକାଶ ପଦ୍ୟରୁ ଯଶୋଦାଙ୍କର ମାତୃସ୍ନେହ ବର୍ଣ୍ଣନା କର ।**

ଉ– କୃଷ୍ଣ ଥିଲେ ମାତା ଯଶୋଦାଙ୍କ ପ୍ରାଣସ୍ୱରୂପ । ତାଙ୍କ ପାଇଁ ଯଶୋଦାଙ୍କ ହୃଦୟରେ ଅନାବିଳ ବାତ୍ସଲ୍ୟ ସ୍ନେହ ପୂରି ରହିଥିଲା । କୃଷ୍ଣଙ୍କୁ ନ ଦେଖିଲେ ସେ ପାଗଳୀ ପ୍ରାୟ ହେଉଥିଲେ । କୃଷ୍ଣଙ୍କର ମୁହୂର୍ତ୍ତକର ବିଳମ୍ବ ତାଙ୍କୁ ଯୁଗ ପରି ଲାଗୁଥିଲା । ପୂର୍ବଦିନ ସାଙ୍ଗସାଥୀଙ୍କ ସହ ଗୋଚାରଣ କରି କୃଷ୍ଣ ପଥଶ୍ରାନ୍ତ ହୋଇ ନିଦ୍ରା ଯାଇଛନ୍ତି । ତାଙ୍କ ଉଠିବାରେ ବିଳମ୍ବ ହୋଇଛି । ଯଶୋଦା ତାଙ୍କୁ ନିଦରୁ ଉଠାଇବା ପାଇଁ ବନମାଳୀ, ବଂଶୀଧର, ବାସୁଦେବ ଆଦି ସୁମଧୁର ସମ୍ବୋଧନ କରିଛନ୍ତି । ତାଙ୍କୁ ନିଦରୁ ଉଠାଇ ସୁବାସିତ ଜଳରେ ମୁଖ ଧୌତ କରାଇ କ୍ଷୀର ସଙ୍ଗେ କଦଳୀ, ଲହୁଣୀ, ସରପୁଳି, ଖଣ୍ଡସର ଖୁଆଇବାକୁ କହିଛନ୍ତି । କୃଷ୍ଣଙ୍କର ଗୋଷ୍ଠ ବାହୁଡ଼ାରେ ବିଳମ୍ବ ହେତୁ ସଙ୍ଗରେ ଦଧି ଅନ୍ନ ନେଇ ନଦୀକୂଳରେ ଆହାର କରିବାକୁ କହିଛନ୍ତି । ଯଶୋଦାଙ୍କର କୃଷ୍ଣଙ୍କ ପ୍ରତି ଥିବା ଏସବୁ ଆନ୍ତରିକତାରୁ ତାଙ୍କ ବାତ୍ସଲ୍ୟ ମମତା ପ୍ରକାଶିତ ହୋଇଛି ।

**(ଗ) ଶ୍ରୀକୃଷ୍ଣ ନିଦରୁ ଉଠିବା ପରେ ମା' ଯଶୋଦା କ'ଣ କରିବେ ବୋଲି କହିଛନ୍ତି ?**

ଉ– କୃଷ୍ଣ ଥିଲେ ମା' ଯଶୋଦାଙ୍କର ଅତି ଅଲିଅଳ ଓ ଆଦରର ପୁତ୍ର । କୃଷ୍ଣଙ୍କ ବିନା ତାଙ୍କୁ କିଛି ସୁଖ ଲାଗୁନଥିଲା । ଚାରିଆଡ଼ ଅନ୍ଧକାର ଦିଶୁଥିଲା । ସେ ସର୍ବଦା କୃଷ୍ଣଙ୍କ ସେବାଯତ୍ନରେ ଲାଗିଥିଲେ । ରାତି ପାହିଲା ପରେ ସେ ଶ୍ରୀକୃଷ୍ଣଙ୍କୁ 'ବଂଶୀଧର' ବୋଲି ସମଧୁର ସମ୍ବୋଧନ କରି ଶଯ୍ୟାତ୍ୟାଗ କରିବାକୁ କହିଛନ୍ତି । କୃଷ୍ଣ ନିଦରୁ ଉଠିବା ପରେ ସେ ସୁବାସିତ ଜଳରେ ତାଙ୍କ ମୁହଁ ଧୋଇଦେବେ । ତାଙ୍କୁ କ୍ଷୀର, କଦଳୀ ସହିତ ଲବଣୀ ଗୋଳାଇ ଖୁଆଇବେ । ଅଧାମ ସହିତ ସରପୁଳି ଓ ଖଣ୍ଡସର ଖୁଆଇବେ ବୋଲି କହିଛନ୍ତି ।



# ଜନ୍ମଭୂମି

• ପଦ୍ମଚରଣ ପଟ୍ଟନାୟକ
ଜନ୍ମ : ୧୮୮୪
ମୃତ୍ୟୁ : ୧୯୪୬

## କବି ପରିଚୟ

କବି ପଦ୍ମଚରଣ ପଟ୍ଟନାୟକ (୧୮୮୪–୧୯୪୬) ଜଣେ ଜାତୀୟତାବାଦୀ କବି ଭାବରେ ସୁପରିଚିତ । ଗୁରୁ ଗୋପବନ୍ଧୁଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସେ ଅନେକ କବିତା ରଚନା କରିଥିଲେ । ତନ୍ମଧ୍ୟରେ *'ଧଉଳି ପାହାଡ଼', 'ଖୋରଧା ପ୍ରଥମ ଦର୍ଶନେ', 'ତ୍ରିବେଣୀ ତଟେ', 'ପଦ୍ମପାଖୁଡ଼ା', 'ଆଶା ମଞ୍ଜରୀ', 'ସୂର୍ଯ୍ୟମୁଖୀ', 'ସୁନାର ଦେଶ', 'ଗୋଲାପ ଗୁଚ୍ଛ'* ଓ *'ସ୍ୱର୍ଣ୍ଣରେଣୁ'* ପ୍ରଭୃତି ଅନ୍ୟତମ । ଏହାଛଡ଼ା ସେ *'ମାର୍ଟିନ ଲୁଥର', 'ମହାତ୍ମାଗାନ୍ଧୀ', 'ନେପୋଲିୟନ', 'ଫକୀରମୋହନ'* ପ୍ରଭୃତି କେତୋଟି ଜୀବନୀ ପୁସ୍ତକ ମଧ୍ୟ ରଚନା କରିଛନ୍ତି ।

## କବିତାର ଆଦର୍ଶ

ଜନ୍ମଭୂମି ପ୍ରତ୍ୟେକ ମନୁଷ୍ୟ ପାଇଁ ମହାନ୍ ଅଟେ । ତା' ସହିତ ଏ ପୃଥିବୀରେ ଆଉ କେହି ସମାନ ହୋଇପାରିବେ ନାହିଁ । ଇତିହାସର ଅନେକ ମହାବୀର ନିଜର ଜନ୍ମଭୂମିର ମହତ୍ତ୍ୱ ରକ୍ଷା ପାଇଁ ଆତ୍ମବଳୀ ଦେଇ ଅକ୍ଷୟ ଅକ୍ଷରରେ ଆପଣାର ନାମକୁ ଲେଖିଯାଇଛନ୍ତି । ସେମାନଙ୍କ ପାଇଁ ଏ ମାଟି ଧନ୍ୟ ହୋଇଛି ।

## ସାରକଥା

ଯେଉଁ ଦେଶରେ ମୁଁ ଜନ୍ମ ନେଇଛି, ଯେଉଁ ଦେଶର ବାୟୁ ମୋର ନିଃଶ୍ୱାସ ପ୍ରଶ୍ୱାସରେ ପ୍ରବାହିତ ହେଉଛି, ଯେଉଁ ଦେଶର ସୂର୍ଯ୍ୟ ଉତ୍ତାପ ଓ କିରଣ ବାଣ୍ଟନ୍ତି, ଯାହାର ସ୍ୱଚ୍ଛ ଜଳରେ ମୋର ଶୋଷ ଦୂର ହୁଏ, ଯାହାର ଫଳ ଓ ଶସ୍ୟ ଗ୍ରହଣ କରି ମୁଁ ଜୀବନ ଧାରଣ କରେ, ଯାହା ଉପରେ ମୁଁ ଆନନ୍ଦରେ ଭ୍ରମଣ କରେ, ସେହି ସ୍ଥାନ ମୋର ଜନ୍ମଭୂମି । ସେ ମୋ ମାଆ ପରି । ଏ ପୃଥିବୀରେ ତା'ପରି ସ୍ଥାନ ଆଉ କେଉଁଠି ନାହିଁ ।

ଯେଉଁ ଦେଶରେ ମୋର ପରିବାର, ଦୟାଶୀଳ ପିତାମାତା ଅଛନ୍ତି, ଭାଇଭଉଣୀ ଫୁଟିଲା ଫୁଲପରି ମୋର ଘରେ ଶୋଭାପାଉଛନ୍ତି, ଯେଉଁ ଦେଶରେ ମୋର ପ୍ରିୟ ଖେଳସାଥୀ ବନ୍ଧୁଗଣ ନନ୍ଦନକାନନ ପରି ଶୋଭାପାଉଛନ୍ତି, ସେହି ମୋର ଜନ୍ମଭୂମି । ଏ ପୃଥିବୀରେ ତା'ପରି ସ୍ଥାନ ଆଉ କେଉଁଠି ନାହିଁ ।

ଯେଉଁ ଦେଶର ପର୍ବତ ନଦୀ ଅନେକ ଶୋଭା ଧାରଣ କରେ, ଯାହାର ଖଣିରେ ମଣି ଓ ସାଗରରେ ମୁକ୍ତା ରହିଛି, ଯାହାର ସୁନୀଳ ଆକାଶରେ ଅସଂଖ୍ୟ ନକ୍ଷତ୍ର ଶୋଭାପାଉଛନ୍ତି ଓ ନୂତନ ମେଘ ସହିତ ବିଜୁଳି ଭାସିଯାଉଛି, ଯେଉଁ ଦେଶର ବନରେ ସୁନ୍ଦର ଫୁଲ ଶୋଭାପାଏ ଓ ନାନାବିଧ ପକ୍ଷୀ କଳରବ କରି ଗୀତ ଗାଇଥା'ନ୍ତି, ସେହି ମୋର ଜନନୀତୁଲ୍ୟ ଜନ୍ମଭୂମି ଅଟେ । ତା' ସମାନ ସ୍ଥାନ ଏ ପୃଥିବୀରେ ଆଉ କେଉଁଠି ନାହିଁ ।

ଯାହାର ଅନ୍ନ ଜଳ ଖାଇ ମୁଁ ଶରୀର ଧାରଣ କରିଛି, ଯାହାର ନାମରେ ଏ ପୃଥିବୀରେ ମୁଁ ପରିଚିତ, ଯାହାର ଗୌରବରେ କେତେ ସୁଖ ଫୁଟିଉଠେ, ଆଉ ଯାହାର ପତନରେ ମୋର ପତନ ଅବଶ୍ୟମ୍ଭାବୀ, ଦୂର ଦେଶରେ ଥାଇ ଯାହାକୁ ମନେପକାଇଲେ ମନ ଖାଲି ବିକଳ ହୁଏ, ଦୁଃଖରେ ଝୁରି ହେବାକୁ ପଡ଼େ, ତାହା ପାଇଁ ଯେଉଁ ଲୋକ ଆପଣାର ରକ୍ତବିନ୍ଦୁ ଦାନ ନ କରେ, ସେ କୃତଘ୍ନ ପଶୁ ସହିତ ସମାନ ଅଟେ ।

ଇତିହାସର ପୃଷ୍ଠା ଲେଉଟାଇଲେ ଜଣାପଡ଼େ କେତେ ମହାନ୍ ବୀର ନିଜ ଦେଶର ମଙ୍ଗଳ ପାଇଁ ଆପଣାର ଶରୀର ଦାନ କରିଛନ୍ତି । ନିଜର ସୁଖଶାନ୍ତି, ଘର, ପରିବାରକୁ ଭୁଲି ସେମାନେ ଭିକ୍ଷାଥାଳ ଧରି ଘର ଘର ବୁଲିଛନ୍ତି । ଅନ୍ୟ ଲୋକଙ୍କର ମଙ୍ଗଳ ବିଧାନ ପାଇଁ ମୁଣ୍ଡଝାଳ ଗୋଡ଼ରେ ମାରି ଆପଣାର ନାମକୁ ଅକ୍ଷୟ ଅକ୍ଷରରେ ଲେଖିଯାଇଛନ୍ତି । ଲୋକମୁଖରେ ସର୍ବଦା ସେମାନଙ୍କର ନାମ ପ୍ରଚାରିତ ହୁଏ । ସେମାନଙ୍କର ପିତାମାତା ତଥା ଜନ୍ମସ୍ଥାନ ଧନ୍ୟ ବୋଲି ପ୍ରଚାରିତ ହୁଏ ।

### କଠିନ ଶବ୍ଦାର୍ଥ

ରବି – ସୂର୍ଯ୍ୟ । ବିତରେ – ବାଣ୍ଟିଥାଏ । ତୃଷା – ଶୋଷ । ବକ୍ଷେ – ଛାତିରେ । ବିଚରଣ – ବୁଲିବା । ଧରା – ପୃଥିବୀ । ଜନନୀ – ମାଆ । ପିତୁଳା – କଣ୍ଢେଇ । ସକଳେ – ସମସ୍ତେ । ଶୋଭନ୍ତି – ଶୋଭାପାଆନ୍ତି । ଯେହ୍ନେ – ଯେପରି । ଗିରି – ପର୍ବତ । ଶୋଭେ – ଶୋଭାପାଏ । ମୁକୁତା – ମୁକ୍ତା । ଜଳଧର – ମେଘ । ସୌଦାମିନୀ – ବିଜୁଳି । ତୋରା – ମନୋହର । କାନନ – ବଣ । ବିହଙ୍ଗମ – ପକ୍ଷୀ । ଅନ୍ନ – ଭାତ । ସ୍ମରଣ – ମନେପକାଇବା । ସ୍ୱଚ୍ଛ – ନିର୍ମଳ । ସ୍ନିଗ୍ଧ – ଆରାମଦାୟକ, ଶୀତଳତାକାରକ । କୃତଘ୍ନ – ଯେ ଉପକାରକୁ ସ୍ୱୀକାର କରେନାହିଁ । ଅକ୍ଷୟ – ଯାହା କ୍ଷୟ ହୁଏ ନାହିଁ (ଅମର) । ଲୋକମୁଖ – ଲୋକ ମୁହଁରେ ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ଆମେ ଯେଉଁ ଦେଶରେ ଜନ୍ମଲାଭ କରିଛୁ ତାହାକୁ କ'ଣ ବୋଲି କହିବା ?**

ଉ – ଆମେ ଯେଉଁ ଦେଶରେ ଜନ୍ମଲାଭ କରିଛୁ, ତାହାକୁ ଜନ୍ମଭୂମି ବୋଲି କହିବା ।

**(ଖ) ଜୀବନ ଧାରଣ କରିବା ପାଇଁ ଜନ୍ମଭୂମି ଆମକୁ କ'ଣ ଦିଏ ?**

ଉ – ଜୀବନ ଧାରଣ କରିବା ପାଇଁ ଜନ୍ମଭୂମି ଆମକୁ ଫଳ ଓ ଶସ୍ୟ ପ୍ରଦାନ କରେ । ତାହାର ବାୟୁ ଆମ ନିଃଶ୍ୱାସ ପ୍ରଶ୍ୱାସରେ ପ୍ରବାହିତ ହୁଏ, ତାହାର ସ୍ନିଗ୍ଧ ସ୍ୱଚ୍ଛ ଜଳରେ ଆମର ଶୋଷ ଦୂର ହୁଏ ।

**(ଗ) ଜନ୍ମଭୂମି କାହା ସହିତ ତୁଳନୀୟ ?**

ଉ – ଜନ୍ମଭୂମି ମାଆ ସହିତ ତୁଳନୀୟ ।

**(ଘ) ପରିବାରରେ ଫୁଟିଲା ଫୁଲମାନେ କିଏ ?**

ଉ – ଫୁଟିଲା ଫୁଲ ଉଦ୍ୟାନର ଶୋଭା ବଢ଼ାଇଥାଏ । ସେହିପରି ସ୍ନେହର ପିତୁଳା ଭାଇଭଉଣୀମାନେ ଫୁଟିଲା ଫୁଲ ପରି ପରିବାରକୁ ସୁଖମୟ ଓ ସୁନ୍ଦର କରିଥା'ନ୍ତି ।

**(ଙ) ମଣି ଓ ମୁକୁତା କେଉଁଠି ସାଇତା ହୋଇ ରହିଛି ?**

ଉ – ଆମ ଦେଶରେ ଅନେକ ଖଣିଜ ସମ୍ପଦ ଭରପୂର ହୋଇ ରହିଛି । ଆମ ଦେଶର ଖଣିମାନଙ୍କରେ ମଣି ଓ ସାଗର ଗର୍ଭରେ ମୁକ୍ତା ସାଇତା ହୋଇ ରହିଛି ।

**(ଚ) ଜନ୍ମଭୂମି ପ୍ରତି ଆମର କି କର୍ତ୍ତବ୍ୟ ରହିଛି ?**

ଉ – ଜନ୍ମଭୂମି ଆମର ଜନନୀ ପରି । ଜନ୍ମଭୂମିର ଗୌରବ ରକ୍ଷା ତଥା ଦେଶବାସୀଙ୍କ ସେବା କରିବା ଆମ ଜୀବନର ପରମ କର୍ତ୍ତବ୍ୟ ହେବା ଉଚିତ ।



**(ଛ) କେଉଁମାନଙ୍କ ନାମ ଲୋକମୁଖରେ କାଳେ କାଳେ ରହେ ?**

ଉ– ଯେଉଁ ମହାପୁରୁଷମାନେ ନିଜ ଦେଶର ମଙ୍ଗଳପାଇଁ ଆପଣାର ଶରୀରକୁ ଦାନ କରିଛନ୍ତି, ନିଜର ସୁଖଶାନ୍ତି, ଘର, ପରିବାରକୁ ଭୁଲି ଭିକ୍ଷାଥାଳ ଧରି ଘର ଘର ବୁଲିଛନ୍ତି, ଏପରିକି ଲୋକଙ୍କର ମଙ୍ଗଳ ପାଇଁ ବହୁ କଷ୍ଟ ସହିଛନ୍ତି; ସେହିମାନଙ୍କ ନାମ ଲୋକମୁଖରେ କାଳେ କାଳେ ରହେ ।

**୨ । ତିନୋଟି ଏକ ଜାତୀୟ ଶବ୍ଦ ସହିତ ଯେଉଁ ଭିନ୍ନ ଜାତୀୟ ଶବ୍ଦଟି ଅଛି, ତାହାକୁ ବାଛି ଅଲଗା କର ।**

(କ) ବାୟୁ, ପବନ, ଆନନ୍ଦ, ଅନିଳ

(ଖ) ଜନନୀ, ମାତା, ମାଆ, ପିତା,

(ଗ) ରବି, କବି, ସୂର୍ଯ୍ୟ, ତପନ,

(ଘ) ବିହଗ, ନକ୍ଷତ୍ର, ବିହଙ୍ଗମ, ପକ୍ଷୀ

(ଙ) ବଣ, ଜଙ୍ଗଲ, ପର୍ବତ, କାନନ

ଉତ୍ତର

(କ) ଆନନ୍ଦ

(ଖ) ପିତା

(ଗ) କବି

(ଘ) ନକ୍ଷତ୍ର

(ଙ) ପର୍ବତ

**୩ । ମନେପକାଇ କବିତାଂଶକୁ ପୂରଣ କର ।**

(କ) ଯା'ର ଫଳ ଶସ୍ୟେ କରେ ......... ଧାରଣ ।

(ଖ) ଯେ ଦେଶେ ଅଛନ୍ତି ମୋର ପ୍ରିୟ ....... ।

(ଗ) ସ୍ନେହର ପିତୁଳା ......... ସକଳେ ।

(ଘ) ଅସଂଖ୍ୟ ନକ୍ଷତ୍ର ଶୋଭେ ସୁନୀଳ ...... ।

(ଙ) ଯେ ଦେଶ କାନନେ ଶୋଭେ ..... ।

ଉତ୍ତର

(କ) ଜୀବନ

(ଖ) ପରିବାର

(ଗ) ଭାଇ ଭଉଣୀ

(ଘ) ଆକାଶେ

(ଙ) କେତେ ତୋରା ଫୁଲ

**୪ । ସରଳ ଭାବରେ ଅର୍ଥ ବୁଝାଇ ଲେଖ ।**

**(କ) ସେହି ମୋର ଜନ୍ମଭୂମି ଜନନୀ ସମାନ**
**ଧରାତଳେ କାହିଁ ଅଛି ତା' ସମାନ ସ୍ଥାନ !**

*ଉ – ସେହି ମୋର ............... ସମାନ ସ୍ଥାନ !*

ଉକ୍ତ ପଦ୍ୟାଂଶଟି କବି ପଦ୍ମଚରଣ ପଟ୍ଟନାୟକଙ୍କ ଲିଖିତ 'ଜନ୍ମଭୂମି' କବିତାରୁ ଉଦ୍ଧୃତ । ଏଠାରେ କବି ଜନ୍ମଭୂମିର ପରିଚୟ ପ୍ରଦାନ କରିବା ସହିତ ତା' ସହିତ କେହି ତୁଳନୀୟ ନୁହନ୍ତି ବୋଲି ଉଲ୍ଲେଖ କରିଛନ୍ତି ।

କବିତାର ପ୍ରାରମ୍ଭିକ ପର୍ଯ୍ୟାୟରେ ଜନ୍ମଭୂମିର ପରିଚୟ ପ୍ରଦାନ କରିବାକୁ ଯାଇ କବି କହିଛନ୍ତି ଯେ, ଯେଉଁ ଦେଶରେ ମୁଁ ଜନ୍ମଗ୍ରହଣ କରିଛି, ଯାହାର ପବନ ମୋର ନିଃଶ୍ୱାସ ପ୍ରଶ୍ୱାସରେ ବହୁଛି, ଏପରିକି ଯେଉଁ ଦେଶରେ ରବି କିରଣ ଓ ଉତ୍ତାପ ଦେଉଛନ୍ତି, ତାହା ମୋର ଜନ୍ମଭୂମି । ଯାହାର ସୁଶୀତଳ ସ୍ୱଚ୍ଛ ଜଳ ପାନ କରି ମୋର ଶୋଷ ଦୂର ହେଉଛି, ଯାହାର ଫଳ ଓ ଶସ୍ୟ ଖାଇ ମୁଁ ଜୀବନ ଧାରଣ କରୁଛି, ଏପରିକି ଯାହାର ବକ୍ଷଦେଶରେ ମୁଁ ସର୍ବଦା ଚଲାବୁଲା କରୁଛି, ସେହି ଦେଶ ମୋର ଜନନୀ ପରି, ସେ ମୋର ଜନ୍ମଭୂମି ଅଟେ । ଏ ପୃଥିବୀରେ ତାହା ସହିତ ସମାନ ହେଲାପରି ସ୍ଥାନ ଆଉ କେଉଁଠି ନାହିଁ ।

ବାସ୍ତବରେ ଜନନୀତୁଲ୍ୟା ଜନ୍ମଭୂମି ସହ କେହି ସମାନ ହୋଇପାରିବେ ନାହିଁ ।

(ଖ) ତାହା ଲାଗି ଶରୀରର ରକ୍ତବିନ୍ଦୁ ଦାନ
ଯେ ନ କରେ କୃତଘ୍ନ ସେ ପଶୁର ସମାନ ।

ଉ – *ତାହା ଲାଗି ...................... ପଶୁର ସମାନ ।*

ଶଂସିତ ପଦ୍ୟାଂଶଟି କବି ପଦ୍ମଚରଣ ପଟ୍ଟନାୟକଙ୍କ ଲିଖିତ 'ଜନ୍ମଭୂମି' କବିତାରୁ ଆନୀତ । ଏଠାରେ ଜନ୍ମମାଟି ପାଇଁ ଯିଏ କିଛି ତ୍ୟାଗ ନ କରେ ସେ କିପରି କୃତଘ୍ନ ଓ ପଶୁତୁଲ୍ୟ ବିବେଚିତ ହୁଏ, ତାହା ବର୍ଣ୍ଣନା କରାଯାଇଛି ।

ପ୍ରତ୍ୟେକ ମନୁଷ୍ୟ ଜନ୍ମଭୂମିର ଅନ୍ନ, ଜଳ ଖାଇ ଆପଣାର ଶରୀରକୁ ଜୀବିତ ରଖନ୍ତି । ସେହି ମାଟି ମାଆର ପରିଚୟରେ ଅନ୍ୟ ନିକଟରେ ପରିଚିତ ହୁଅନ୍ତି । ତା'ର ଗୌରବରେ ସେମାନଙ୍କର ସୁଖ ସୌଭାଗ୍ୟର ଉଦୟ ହୁଏ । ତା'ର ପତନରେ ସେମାନଙ୍କ ପତନ ଅବଶ୍ୟମ୍ଭାବୀ ହୋଇପଡ଼େ । ସେହି ଜନ୍ମମାଟିର କଥାକୁ ଦୂର ଦେଶରେ ଥାଇ ମନେ ପକାଇଲେ ମନଟା ଗୋଳେଇ ଘାଣ୍ଟି ହୁଏ । ମନ ଦୁଃଖରେ ତାକୁ ଦେଖିବାପାଇଁ ସର୍ବଦା ଝୁରିହେବାକୁ ପଡ଼େ । ସେହି ଜନ୍ମମାଟିଠାରୁ ବହୁଭାବେ ଉପକୃତ ହୋଇଥିବା ବ୍ୟକ୍ତି ଯଦି ଆପଣା ଶରୀରର ରକ୍ତବିନ୍ଦୁ ମାଟିମାଆ ପାଇଁ ଦାନ ନ କରେ, ତେବେ ସେ ପଶୁତୁଲ୍ୟ ବିବେଚିତ ହୁଏ । ତାକୁ କୃତଘ୍ନ ବୋଲି କୁହାଯାଏ । ଜନ୍ମମାଟି ପ୍ରତି ସର୍ବଦା କୃତଜ୍ଞ ହୋଇ ରହିବା ଉଚିତ ।

ବାସ୍ତବରେ କବିଙ୍କର ଏହି ଉକ୍ତି ଯଥାର୍ଥ ଅଟେ ।

(ଗ) ମୁଣ୍ଡଝାଳ ଗୋଡ଼େ ମାରି ସ୍ୱଦେଶ ମଙ୍ଗଳେ
ଲେଖିଯାଇଛନ୍ତି ନାମ ଅକ୍ଷୟ ଅକ୍ଷରେ ।

ଉ – *ମୁଣ୍ଡଝାଳ .................. ଅକ୍ଷୟ ଅକ୍ଷରେ ।*

ଉପରୋକ୍ତ ପଦ୍ୟାଂଶଟି ପଠିତ ସାହିତ୍ୟ ବହିର 'ଜନ୍ମଭୂମି' କବିତାରୁ ଗୃହୀତ । ଏଠାରେ କବି ପଦ୍ମଚରଣ ପଟ୍ଟନାୟକ ମହାବୀରମାନଙ୍କର ଜନ୍ମମାଟି ପାଇଁ ମହାନ୍ ଅବଦାନ ସମ୍ପର୍କରେ ଆଲୋକପାତ କରିଅଛନ୍ତି ।

ଇତିହାସର ପୃଷ୍ଠା ଲେଉଟାଇଲେ ବହୁ ମହାବୀରଙ୍କର ଅମର ଜୀବନଗାଥା ସମ୍ପର୍କରେ ଜାଣିହୁଏ । ସେହି ବୀରଗଣ ନିଜ ଜନ୍ମଭୂମିର ମଙ୍ଗଳ ବିଧାନ ପାଇଁ ଆପଣାର ଶରୀର ଦାନ କରିବାକୁ ପଛାଇ ନାହାନ୍ତି । ନିଜର ସୁଖଶାନ୍ତି, ପରିବାରକୁ ଭୁଲି ସେମାନେ ଭିକ୍ଷାଥାଳ ଧରି ଦ୍ୱାରେ ଦ୍ୱାରେ ବୁଲିଛନ୍ତି । ସେମାନେ ଏ ମାଟି ପାଇଁ ନିଃସ୍ୱ କାଙ୍ଗାଳ ହୋଇଯାଇଛନ୍ତି । ଅନ୍ୟର ମଙ୍ଗଳ ବିଧାନ ନିମିତ୍ତ ମୁଣ୍ଡଝାଳକୁ ଗୋଡ଼ରେ ମାରି ବହୁ କଷ୍ଟକର କାର୍ଯ୍ୟ କରିଛନ୍ତି । ଏପରି ବୀର ସନ୍ତାନମାନେ ନିଜର କର୍ମଦ୍ୱାରା ଅକ୍ଷୟ ଅକ୍ଷରରେ ଆପଣାର ନାମକୁ ଲେଖିଯାଇଛନ୍ତି । ଲୋକମୁଖରେ ଯୁଗ ଯୁଗ ଧରି ସେମାନଙ୍କର ଅମର ଗାଥା ପ୍ରଚାରିତ ହେଉଛି । ସେହିଭଳି ସନ୍ତାନ ଲାଭକରି ସେମାନଙ୍କର ପିତାମାତା ଓ ଜନ୍ମଭୂମି ଧନ୍ୟ ହୋଇଛି । ସେମାନଙ୍କ ଜୀବନ କାହାଣୀ ଆମକୁ ଉଦ୍‌ବୁଦ୍ଧ କରୁଛି ।

ବାସ୍ତବରେ ସେହି ମହାନ୍ ବୀରଙ୍କର ଅମରଗାଥାର ପଟାନ୍ତର ନାହିଁ ।

୫ । ବିଶେଷଣ ପଦଗୁଡ଼ିକ ଚିହ୍ନାଇ ଦିଅ ।

ସ୍ୱଚ୍ଛ ଜଳ, ପ୍ରିୟ ପରିବାର, ଦୟାମୟ ପିତା, ଫୁଟିଲା ଫୁଲ, ସୁନୀଳ ଆକାଶ, ନବ ଜଳଧର, ତୋରା ଫୁଲ ।

ଉ – ବିଶେଷଣ ପଦଗୁଡ଼ିକ ହେଲା – ସ୍ୱଚ୍ଛ, ପ୍ରିୟ, ଦୟାମୟ, ଫୁଟିଲା, ସୁନୀଳ, ନବ, ତୋରା ।

୬ । ଉତ୍ତର ଲେଖ ।

**(କ) ଜୀବନ ଧାରଣ ପାଇଁ କେଉଁ କେଉଁ ଜିନିଷ ଆମର ଅତି ଆବଶ୍ୟକ ?**

ଉ – ଜୀବନ ଧାରଣ ପାଇଁ ଜନ୍ମଭୂମିର ପବନ, ସୂର୍ଯ୍ୟକିରଣ, ସ୍ୱଚ୍ଛ ଜଳ ଓ ଶସ୍ୟ-ଫଳ ଆମର ଅତି ଆବଶ୍ୟକ ।



**(ଖ) ଜନ୍ମଭୂମି ଜନନୀ ସହିତ ସମାନ କାହିଁକି ?**

ଉ – ମାଆ ଯେପରି ଆମକୁ ତା' ବକ୍ଷର କ୍ଷୀର ଦିଏ, ଆମକୁ ଲାଳନପାଳନ କରେ, ସେହିପରି ଜନ୍ମଭୂମି ଆମକୁ ନିଜ ପାଖରେ ରଖିଥିବା ନାନାବିଧ ପଦାର୍ଥ ଦାନକରି ପାଳନ କରେ । ଜନ୍ମଭୂମିର ବାୟୁ, ସୂର୍ଯ୍ୟକିରଣ, ସ୍ୱଚ୍ଛ ଜଳ ଏବଂ ଶସ୍ୟ-ଫଳ ଆମ ଜୀବନ ଧାରଣପାଇଁ ନିତାନ୍ତ ଆବଶ୍ୟକ । ତେଣୁ ଜନ୍ମଭୂମିକୁ ଜନନୀ ସହିତ ତୁଳନା କରାଯାଏ ।

**(ଗ) ପରିବାରର କେଉଁମାନେ ଆମର ପ୍ରିୟ ?**

ଉ – ପରିବାର ସମସ୍ତଙ୍କ ପାଇଁ ଖୁବ୍ ଆପଣାର । ପରିବାରରେ ଦୟାମୟ ପିତା, ସ୍ନେହମୟୀ ଜନନୀ ଓ ସ୍ନେହର ପିତୁଳା ଭାଇଭଉଣୀ ଆମର ଅତି ପ୍ରିୟ ଅଟନ୍ତି ।

**(ଘ) କାହାକୁ କବି କୃତଘ୍ନ ଓ ପଶୁର ସମାନ ବୋଲି କହିଛନ୍ତି ?**

ଉ – ଯେଉଁ ଲୋକ ଜନ୍ମଭୂମିଠାରୁ ନାନାବିଧ ଉପକାର ପାଇ ତା'ର ମଙ୍ଗଳ ବିଧାନ ପାଇଁ ଆପଣା ଶରୀରରୁ ରକ୍ତ ଦାନ ନ କରେ, ତାକୁ କବି କୃତଘ୍ନ ଓ ପଶୁ ସହିତ ସମାନ ବୋଲି ବିବେଚନା କରିଛନ୍ତି ।

**(ଙ) ମହାପୁରୁଷମାନଙ୍କ ଜୀବନୀରୁ ଆମେ କି ଶିକ୍ଷା ପାଉ ?**

ଉ – ଦେଶର ମଙ୍ଗଳ ବିଧାନ ପାଇଁ ନିଜର ଶରୀରକୁ ଦାନ କରିବା ଉଚିତ । ନିଜର ସୁଖଶାନ୍ତି, ଘର, ପରିବାରକୁ ଭୁଲିଯାଇ ଅନ୍ୟର ମଙ୍ଗଳ କରିବା ଉଚିତ । ଏପରିକି ନାନାବିଧ କଷ୍ଟ ସହି ଲୋକଙ୍କର ମଙ୍ଗଳ ସାଧନ କରିବା ଆବଶ୍ୟକ । ଏହାହିଁ ମହାପୁରୁଷମାନଙ୍କର ଜୀବନୀରୁ ଆମେ ଶିକ୍ଷାଲାଭ କରୁ ।

୭ । **'ସ୍ନେହର ପିତୁଳା' ଭଳି 'ପିତୁଳା' ଶବ୍ଦ ପୂର୍ବରୁ ଆଉ କେଉଁ ଶବ୍ଦଟି ବ୍ୟବହାର କରିହେବ ଭାବି ଲେଖ ।**

ଉ – ନୟନ ପିତୁଳା ।

୮ । **ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ଶୂନ୍ୟସ୍ଥାନରେ ଲେଖ ।**

(କ) ରବି ତାପ .............. (ଶୋଭା ଧରେ, କିରଣ ବିତରେ, ବିଚରଣ କରେ)
(ଖ) କାନନେ ଶୋଭେ କେତେ ..... (ବିହଙ୍ଗମ କୁଳ, ନବ ଜଳଧର, ତୋରା ଫୁଲ)
(ଗ) ଯାହାର ଗୌରବେ କେତେ .... (ଶରୀର ଜୀବିତ, ପତନ ନିଶ୍ଚୟ, ସୁଖର ଉଦୟ)

ଉ – (କ) ରବି ତାପ କିରଣ ବିତରେ ।
(ଖ) କାନନେ ଶୋଭେ କେତେ ତୋରା ଫୁଲ ।
(ଗ) ଯାହାର ଗୌରବ କେତେ ସୁଖର ଉଦୟ ।

୯ । **ନିମ୍ନଲିଖିତ ଶବ୍ଦଗୁଡ଼ିକର ଅର୍ଥ ପ୍ରକାଶ କରୁଥିବା କେଉଁ କେଉଁ ଶବ୍ଦ କବିତାରେ ବ୍ୟବହାର କରାଯାଇଛି ଖୋଜି କରି ଲେଖ ।**

ମେଘ, ବିଜୁଳି, ଚଢ଼େଇ, ତାରା, ପୃଥିବୀ

ଉ– ମେଘ – ଜଳଧର, ବିଜୁଳି – ସୌଦାମିନୀ, ଚଢ଼େଇ – ବିହଙ୍ଗମ, ତାରା – ନକ୍ଷତ୍ର, ପୃଥିବୀ – ଧରା ।

## ତୁମ ପାଇଁ କାମ

୧ । ଜନ୍ମଭୂମି ସମ୍ପର୍କରେ ଅନ୍ୟ କବିମାନେ ଲେଖିଥିବା କବିତାଗୁଡ଼ିକୁ ସଂଗ୍ରହ କରି ପଢ଼ ।

୨ । ନିଜ ମନରୁ ଜନ୍ମଭୂମି ସମ୍ପର୍କରେ କବିତାଟିଏ ଲେଖିବାକୁ ଚେଷ୍ଟା କର ।

୩ । କବି ପଦ୍ମଚରଣ ପଟ୍ଟନାୟକଙ୍କର ଅନ୍ୟାନ୍ୟ କବିତା ସଂଗ୍ରହ କରି ପଢ଼ ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧ । ସଂକ୍ଷେପରେ ଉତ୍ତର ଦିଅ ।

**(କ) ଜନ୍ମଭୂମିର ପ୍ରାକୃତିକ ଚିତ୍ର କିପରି ବର୍ଣ୍ଣିତ ହୋଇଛି ?**

ଉ– ଜନ୍ମଭୂମିର ପର୍ବତ ଓ ନଦୀଗୁଡ଼ିକ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରୂପରେ ଶୋଭା ପାଆନ୍ତି । ଏହାର ଖଣିରେ ମଣି ଓ ସାଗରରେ ମୁକ୍ତା ରହିଛି । ସୁନୀଳ ଆକାଶରେ ଅସଂଖ୍ୟ ତାରା, ନୂଆ ମେଘ ସହିତ ବିଜୁଳି ଶୋଭାପାଉଛି । ଏହାର ବଣରେ କେତେ ସୁନ୍ଦର ଫୁଲ ଶୋଭାପାଉଛି । ସେହି ବଣର ଗଛରେ ନାନାବିଧ ପକ୍ଷୀ କଳକଣ୍ଠ ସ୍ୱରରେ ଗୀତ ଗାଇ ଏହାର ଶୋଭାକୁ ବହୁଗୁଣିତ କରୁଛନ୍ତି ।

**(ଖ) ଦୂର ଦେଶରେ ଥାଇ ମନ କାହାକୁ ଝୁରେ ?**

ଉ– ଦୂର ଦେଶରେ ଥାଇ ଜନ୍ମଭୂମି କଥା ମନେ ପକାଇଲେ ମନ ଖାଲି ଘାଣ୍ଟିହୁଏ । ଆଉ ତାକୁ ଦେଖିବାକୁ ଚକ୍ଷୁ ଦୁଇଟି ଦୁଃଖରେ ଝୁରି ହୁଏ ।

**(ଗ) କେଉଁମାନଙ୍କର ପିତାମାତା ଓ ଜନ୍ମସ୍ଥାନ ଧନ୍ୟ ହୋଇଥାଏ ?**

ଉ– ଯେଉଁ ମହାପୁରୁଷଗଣ ଆପଣାର ଜନ୍ମମାଟିର ମଙ୍ଗଳ ବିଧାନ ପାଇଁ ଜୀବନକୁ ଉତ୍ସର୍ଗ କରି ସ୍ୱର୍ଣ୍ଣାକ୍ଷରରେ ନିଜ ନାମକୁ ଇତିହାସର ପୃଷ୍ଠାରେ ଲେଖିଯାଇଛନ୍ତି, ଯେଉଁମାନଙ୍କ ନାମ ଲୋକମୁଖରେ ସଦା ପ୍ରଚାରିତ, ସେହିମାନଙ୍କର ପିତାମାତା ଓ ଜନ୍ମସ୍ଥାନ ଧନ୍ୟ ହୋଇଥାଏ ।

**(ଘ) ଖେଳସାଥୀ ମେଳକୁ ନନ୍ଦନକାନନ ବୋଲି କବି କାହିଁକି କହିଛନ୍ତି ?**

ଉ– ନନ୍ଦନକାନନରେ ଯେପରି ଆନନ୍ଦରେ ବୁଲି ମଜାମଉଜ କରିହୁଏ । ସେହିପରି ଖେଳସାଥୀ ମେଳରେ ରହି ବେଶ ମଜାମଉଜ କରିହୁଏ । ତେଣୁ ଖେଳସାଥୀ ମେଳକୁ ନନ୍ଦନକାନନ ବୋଲି କୁହାଯାଇଛି ।

୨ । ସଂକ୍ଷେପରେ ଉତ୍ତର ଦିଅ ।

**(କ) ଆମ ଦେଶର ଆକାଶ କିପରି ଶୋଭା ଧାରଣ କରିଥାଏ ?**

ଉ– ଆମ ଦେଶର ସୁନୀଳ ଆକାଶରେ ଅସଂଖ୍ୟ ନକ୍ଷତ୍ର ଶୋଭାପାଆନ୍ତି । ପୁଣି ସୁନୀଳ ଆକାଶରେ ମେଘମାଳା ସହ ଚିକ୍‌ଚିକ୍ କରୁଥିବା ବିଜୁଳି ଭାସି ବୁଲୁଥାଏ ଯାହାକି ଆକାଶର ଶୋଭାକୁ ଆହୁରି ବଢ଼ାଇଦିଏ ।

**(ଖ) କବି କାହାକୁ କୃତଘ୍ନ ବୋଲି କହିଛନ୍ତି ?**

ଉ– ସମସ୍ତେ ଜନ୍ମଭୂମିଠାରୁ ସକଳ ଆବଶ୍ୟକୀୟ ଜିନିଷ ପାଇ ଜୀବନ ଧାରଣ କରିଥା'ନ୍ତି । ତେଣୁ ସେହି ଜନ୍ମଭୂମିର ମଙ୍ଗଳ ବିଧାନ ପାଇଁ ଯିଏ ଆପଣା ଶରୀରରୁ ରକ୍ତଦାନ ନ କରେ, ତାକୁ କବି କୃତଘ୍ନ ବୋଲି କହିଛନ୍ତି ।

**(ଗ) ଜୀବନଧାରଣ ପାଇଁ ଜନ୍ମଭୂମି ଆମକୁ କ'ଣ ଦିଏ ?**

ଉ– ଜୀବନ ଧାରଣ ପାଇଁ ଜନ୍ମଭୂମି ଆମକୁ ଫଳ ଓ ଶସ୍ୟ ପ୍ରଦାନ କରେ । ତାହାର ବାୟୁ ଆମ ନିଃଶ୍ୱାସ ପ୍ରଶ୍ୱାସରେ ପ୍ରବାହିତ ହୁଏ, ତାହାର ସ୍ନିଗ୍ଧ ସ୍ୱଚ୍ଛ ଜଳରେ ଆମର ଶୋଷ ଦୂର ହୁଏ ।

**(ଘ) କାହାର ଗୌରବ ଓ ପତନ ସହ ଆମ ସୁଖ ଦୁଃଖ ଜଡ଼ିତ ?**

ଉ– ଜନ୍ମଭୂମିର ଅନ୍ନଜଳ ଗ୍ରହଣ କରି ଆମ ଶରୀର ପୁଷ୍ଟ ହୋଇଛି । ତେଣୁ ଜନ୍ମଭୂମିର ଗୌରବରେ ଆମର ସୁଖର ଉଦୟ ହୁଏ ଓ ତାହାର ପତନରେ ଆମର ମଧ୍ୟ ପତନ ଘଟିଥାଏ ।



୩ । ସରଳ ଭାଷାରେ ବୁଝାଇ ଲେଖ ।

**(କ) ''ଯାର ଫଳଶସ୍ୟେ କରେ ଜୀବନ ଧାରଣ**
**ଯାର ବକ୍ଷେ ସଦା ସୁଖେ କରେ ବିଚରଣ ।''**

ଉ – *ଯାଇ ଫଳଶସ୍ୟେ ...................... କରେ ବିଚରଣ ।*

ଶଂସିତ ପଦ୍ୟାଂଶଟି ପଠିତ ସାହିତ୍ୟ ବହିର 'ଜନ୍ମଭୂମି' କବିତାରୁ ସଂଗୃହୀତ । ଏଠାରେ କବି ପଦ୍ମଚରଣ ପଟ୍ଟନାୟକ ଜନ୍ମମାଟିର ଖାଦ୍ୟଶସ୍ୟ ଖାଇ ଆମର କିପରି ଜୀବନଧାରଣ ହୋଇଥାଏ, ତାହା ବର୍ଣ୍ଣନା କରିଛନ୍ତି ।

ଜନ୍ମମାଟି ଆମକୁ ମାଆ ପରି ଲାଳନପାଳନ କରେ । ତା'ର ପବନ ଆମ ନିଃଶ୍ୱାସ-ପ୍ରଶ୍ୱାସରେ ପ୍ରବାହିତ ହୁଏ । ତା'ର ସ୍ୱଚ୍ଛଜଳ ପାନକରି ଆମର ତୃଷା ଦୂର ହୁଏ । ଆମର ଜୀବନଧାରଣ ପାଇଁ ସେ ତା' ବକ୍ଷରେ ନାନାବିଧ ଖାଦ୍ୟଶସ୍ୟ ଓ ଫଳ ସାଇତି ରଖିଛି, ଯାହାକୁ ଖାଇ ଆମେ ବଞ୍ଚି ରହିଥାଉ । ତା'ର ଛାତିରେ ଆମେ ଆନନ୍ଦରେ ଚଲାବୁଲା କରିଥାଉ । ତେଣୁ ସେହି ଜନ୍ମମାଟି ଆମର ମାତୃସମା, କଲ୍ୟାଣମୟୀ ଜନନୀ । ତା' ସହିତ ପୃଥିବୀର ଅନ୍ୟ କୌଣସି ସ୍ଥାନ ସମାନ ହୋଇପାରିବ ନାହିଁ ।

ବାସ୍ତବରେ ଜନ୍ମଭୂମିର ଅବଦାନକୁ କେହି ଭୁଲିପାରିବେ ନାହିଁ ।

**(ଖ) ''ଅସଂଖ୍ୟ ନକ୍ଷତ୍ର ଶୋଭେ ସୁନୀଳ ଆକାଶେ,**
**ନବ ଜଳଧର ସଙ୍ଗେ ସୌଦାମିନୀ ଭାସେ ।।''**

ଉ – *ଅସଂଖ୍ୟ ...................... ଭାସେ ।*

ଶଂସିତ ପଦ୍ୟାଂଶଟି ପଠିତ ସାହିତ୍ୟ ବହିର 'ଜନ୍ମଭୂମି' କବିତାରୁ ସଂଗୃହୀତ । ଏଠାରେ କବି ପଦ୍ମଚରଣ ପଟ୍ଟନାୟକ ଜନ୍ମମାଟିର ପ୍ରାକୃତିକ ଶୋଭାକୁ ବର୍ଣ୍ଣନା କରିଛନ୍ତି ।

ଏହି ଜନ୍ମଭୂମିରେ ନଦୀ, ପାହାଡ଼, ପର୍ବତ, ଝରଣା ବଣଜଙ୍ଗଲ ଶୋଭାବର୍ଦ୍ଧନ କରିଥାଆନ୍ତି । ଖଣି ମଧ୍ୟରେ ମଣି ଓ ସମୁଦ୍ରରେ ମୁକୁତା ରହିଅଛି । ଜନ୍ମଭୂମିର ସୁନୀଳ ଆକାଶରେ ନକ୍ଷତ୍ରମାନ ଶୋଭା ପାଉଛନ୍ତି । ଏହି ସୁନୀଳ ଆକାଶ ବକ୍ଷରେ କଳାମେଘ ସହିତ ବିଜୁଳିର ଝଲକ ଭାବୁକ ପ୍ରାଣରେ ଅହେତୁକ ଭାବନା ରାଜି ଖେଳାଇଦିଏ । ଏହି ଦେଶର ବନ ଉପବନରେ ନାନା-ଜାତିର ଫୁଲ ଫୁଟି ବଶିକର ପ୍ରାଣକୁ ବିମୋହିତ କରିଥାଏ । ବନ ଉପବନର ଗହଳ ଲତାକୁଞ୍ଜ ଓ ପତ୍ର ଉହାଡ଼ରେ ଥାଇ ପକ୍ଷୀମାନଙ୍କର ମଧୁର କାକଳି ବେଶ୍ ଆନନ୍ଦ ଦେଇଥାଏ । ସେମାନଙ୍କର କଳନିନାଦିନୀ କଣ୍ଠରୁ ଝରିଆସୁଥିବା ଗୀତର ସ୍ୱର ଶ୍ରୋତାକୁ ବେଶ୍ ଆନନ୍ଦ ଦିଏ ।

ବାସ୍ତବରେ କବିଙ୍କର ଏହି ବର୍ଣ୍ଣନା ଅତ୍ୟନ୍ତ ମନୋମୁଗ୍ଧକର ଓ ହୃଦୟସ୍ପର୍ଶୀ ହୋଇପାରିଛି ।

୪ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।

**(କ) ଜନ୍ମଭୂମିର ଶ୍ରୀ ଓ ଶୋଭାସମ୍ପଦ ବିଷୟରେ କବି କ'ଣ କହିଛନ୍ତି ?**

ଉ– ଆମ ଜନ୍ମଭୂମି ମହାନ୍ । ଆମ ଦେଶର ଗିରି, ନଦନଦୀ, ବନ, ଝରଣା ସବୁଠାରେ ଶୋଭାସମ୍ପଦ ପୂରି ରହିଛି । ଆମ ଦେଶରେ ଥିବା ଖଣିଗୁଡ଼ିକ ମଧ୍ୟରେ ମଣି ଓ ସାଗର ଗର୍ଭରେ ମୁକ୍ତା ଶୋଭାପାଉଛି । ସୁନୀଳ ଗଗନରେ ଅସଂଖ୍ୟ ନକ୍ଷତ୍ର ଓ ନୂଆ ମେଘ କୋଳରେ ବିଜୁଳି ଆମ ଜନ୍ମଭୂମିର ଶୋଭାକୁ ବହୁଗୁଣିତ କରୁଛି । ଆମ ଦେଶର ବନ ଉପବନରେ ଅନେକ ସୁନ୍ଦର ସୁନ୍ଦର ଫୁଲ ଫୁଟେ । ବିହଙ୍ଗମ କୁଳର ସୁନ୍ଦର

କାକଳି ମନକୁ ମୁଗ୍ଧ କରେ । ଆମ ଦେଶର ଶୋଭା ସମ୍ପଦ ପୃଥିବୀରେ ଅନନ୍ୟ । ପୃଥିବୀରେ ଏପରି ସ୍ଥାନ ଆଉ କେଉଁଠାରେ ନାହିଁ ।

**(ଖ) ଜୀବନଧାରଣ ପାଇଁ ଜନ୍ମଭୂମି ଆମକୁ କେଉଁ କେଉଁ ଜିନିଷ ପ୍ରଦାନ କରିଛି ?**

ଉ– ଜୀବନଧାରଣ ପାଇଁ ଆବଶ୍ୟକ ସମସ୍ତ ଉପାଦାନ ଆମେ ଜନ୍ମଭୂମିଠାରୁ ପାଇଥାଉ । ଜନ୍ମଭୂମିରେ ପ୍ରବାହିତ ବିଶୁଦ୍ଧ ବାୟୁକୁ ଆମେ ଶ୍ୱାସକ୍ରିୟାରେ ଗ୍ରହଣ କରୁ । ଜନ୍ମଭୂମିର ରବିକିରଣ ଆମ ପିଣ୍ଡରେ ଜୀବନୀଶକ୍ତି ଭରିଦିଏ । ତା'ର ସ୍ୱଚ୍ଛ ସ୍ନିଗ୍ଧ ଜଳ ପାନ କରି ଆମେ ତୃଷା ମେଣ୍ଟାଇଥାଉ । କ୍ଷୁଧା ନିବାରଣ ପାଇଁ ଆମେ ଆବଶ୍ୟକ କରୁଥିବା ଶସ୍ୟ ଓ ଫଳ ଜନ୍ମଭୂମି ଆମକୁ ଯୋଗାଇଦିଏ । ତେଣୁ ଆମ ଜନ୍ମଭୂମି ମହାନ୍ । ସେ ଆମ ପାଇଁ ଜନନୀଠାରୁ ବି ମହୀୟାନ ।

**(ଗ) ଆମ ଦେଶର ଶ୍ରୀ ଓ ଶୋଭା କିପରି ପ୍ରକାଶିତ ହୋଇଥାଏ ?**

ଉ– ଆମ ଦେଶ ମହାନ୍ । ଏହାର ନଦନଦୀ, ଗିରି, ବନ, ନିର୍ଝର ଅମ୍ବର ସବୁଠାରେ ଶ୍ରୀ ଓ ଶୋଭା ପରିପ୍ରକାଶିତ ହୁଏ । ଆମ ଦେଶର ଗିରି ଓ ନଦୀରେ ଶୋଭା ପ୍ରକାଶିତ ହୁଏ । ଖଣି ମଧ୍ୟରେ ମଣି, ସାଗରରେ ମୁକ୍ତା, ସୁନୀଳ ଗଗନରେ ଅସଂଖ୍ୟ ନକ୍ଷତ୍ର ଶୋଭା ପାଆନ୍ତି । ନୂଆ ମେଘ କୋଳରେ ବିଜୁଳିର ଝଟକ ଆମ ଦେଶର ଶୋଭା ପ୍ରକଟ କରେ । କାନନରେ ବିକଶିତ କୁସୁମ, ବିହଙ୍ଗମକୁଳଙ୍କ କଳରବ ଅପୂର୍ବ ଶ୍ରୀ ଓ ଶୋଭାରେ ଆମ ଦେଶକୁ ସମୃଦ୍ଧ କରେ ।



# ଶରତ-ନଈ-କୂଳେ

• ଡ. ରାଧାମୋହନ ଗଡ଼ନାୟକ
ଜନ୍ମ : ୨୪.୮.୧୯୧୧
ମୃତ୍ୟୁ : ୨୧.୨.୨୦୦୦

## କବି ପରିଚୟ

ଡକ୍ଟର ରାଧାମୋହନ ଗଡ଼ନାୟକ (୧୯୧୧-୨୦୦୦) ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ଜଣେ ଶ୍ରେଷ୍ଠ ଛନ୍ଦକବି ଭାବରେ ସୁପରିଚିତ । ଅନୁଗୁଳର କଲଣ୍ଡାପାଳ ଗ୍ରାମରେ କବି ଜନ୍ମଗ୍ରହଣ କରିଥିଲେ । ତାଙ୍କ ରଚିତ *'କୈଶୋରିକା'*, *'ଉତ୍କଳିକା'*, *'ଶାମୁକାର ସ୍ୱପ୍ନ'*, *'ପଶୁପକ୍ଷୀର କାବ୍ୟ'* ଆଦି କବିତା ପୁସ୍ତକ ବେଶ୍ ଲୋକପ୍ରିୟ ହୋଇପାରିଛି । *'ସୂର୍ଯ୍ୟ ଓ ଅନ୍ଧକାର'* କାବ୍ୟଗ୍ରନ୍ଥ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି ।

## କବିତାର ଆଦର୍ଶ

ପଠିତ *'ଶରତ-ନଈ-କୂଳେ'* କବିତାଟି କବିଙ୍କ ଲିଖିତ *'କୈଶୋରିକା'* କବିତା ଗ୍ରନ୍ଥରୁ ସଂଗୃହୀତ । ଶରତ ଋତୁରେ ପ୍ରକୃତିର ଶୋଭା ଅତୀବ ମନୋମୁଗ୍ଧକର । ବିଶେଷତଃ ଏହି ଋତୁରେ ନଈକୂଳରେ ଦୃଶ୍ୟମାନ ପ୍ରାକୃତିକ ଶୋଭାଶ୍ରୀ କବିଙ୍କୁ ବେଶ୍ ଆନମନା କରିଛି, ଯାହାକି ଉକ୍ତ କବିତାରେ ସ୍ଥାନ ପାଇଛି । ଶରତ ଋତୁରେ ନଦୀକୂଳରେ ଯେଉଁସବୁ ମନୋରମ ଦୃଶ୍ୟ ଦେଖିବାକୁ ମିଳେ, ତାହାହିଁ ଏ କବିତାରେ ବର୍ଣ୍ଣିତ ବିଷୟ ।

## ସାରକଥା

ଶରତ ଋତୁରେ ନଈକୂଳରେ ଥିବା ଏକ ସୁନ୍ଦର ଆମ୍ବଗଛର ଛାଇରେ କବି ବସିଛନ୍ତି । ପ୍ରକୃତିର ସବୁଜିମାଭରା ସୁନ୍ଦର ଦୃଶ୍ୟକୁ ଦେଖି ସେ ବେଶ୍ ବିଭୋର ହୋଇଉଠିଛନ୍ତି । ତାଙ୍କର ଆଖି ଦୁଇଟି ଭ୍ରମର ପରି ସୌନ୍ଦର୍ଯ୍ୟକୁ ଦେଖି ଚାଲିଛି । ଛାଇ ଆଲୁଅର ଲୁଚକାଳି ଖେଳ ମଧ୍ୟରେ ନଈର ଜଳଧାରା ବହିଚାଲିଛି ଓ ବେଶ୍ ମନୋହର ଦିଶୁଛି । ସେହି ନଈର ଲହରୀମାଳାରେ ପବନ ଧୀରେ ଧୀରେ ଗଛକୁ ହଲାଇ ପତ୍ରସବୁ ଝଡ଼ାଇ ପକାଇ ଦେଉଛି । ସେହି ନଈ ସୁଅର ଗୋଟିଏ ପାଖରେ ବଗଟିଏ ମଉନରେ ଶିକାର ଉଦ୍ଦେଶ୍ୟରେ ବସିଛି । ଯାହା ପାଉଛି, ବେଶ୍ ଆନନ୍ଦରେ ନିଜ ମୁହଁରେ ଭରି ଦେଉଛି । ଗେଣ୍ଡାଳିଆଟିଏ ସେଇ ନଈକୂଳରେ ଝାମ୍ପମାରି ନୀଳ ଆକାଶକୁ ଉଠିଯାଉଛି । ନଈ ଆରପାରିରେ ଗାଈବାଛୁରୀପଲ ସବୁଜ ପଡ଼ିଆରେ ଚରୁଥିବାର ଦେଖାଯାଉଛି । ସେହିଠାରେ ଗୋପାଳ ବାଳକ ରହି ବଂଶୀର ସ୍ୱରରେ ଗୀତ ଗାଉଛି, ଯାହାର ମୂର୍ଚ୍ଛନା ତାଳଦେଇ ମାତିଉଠୁଛି ।

ନଈର ଏପଟରେ ଗଙ୍ଗଶିଉଳି ଫୁଲ ଫୁଟିଛି । ତା'ର ସୁମଧୁର ମହକ ପବନରେ ଭାସି ଆସୁଛି । ସେହି ସୁମଧୁର ମହକରେ କବିଙ୍କର ମନ ବିହ୍ୱଳ ହୋଇ ତା'ସହିତ ଘୂରି ବୁଲୁଛି । ସେହି ସମୟରେ ଆକାଶରେ ଶଙ୍ଖଚିଲ ଉଡ଼ିବୁଲି ରହି ରହି ଡାକୁଛି । ଦୂରରେ ଯେଉଁ ବାଳକମାନେ ଥିଲେ, ସେମାନେ ଉଚ୍ଚସ୍ୱରରେ କହିଉଠିଲେ *"ହେଇରେ ଭାଇ ! ବିଜୟ ସମ୍ପଦକୁ ଦେଖ ।"* ଶରତର ଏଇ ଶୁଭ ଅବସରରେ ଧୂସର ଆକାଶରେ ସୁନୀଳ ବଉଦ ଉଡ଼ିଯାଉଛି । ଉପରେ ମେଘମାଳ, ତଳେ ନଈ ବହିଯାଉଛି । କବି କହୁଛନ୍ତି ଏପରି ଏକ ପରିବେଶକୁ ଦେଖି ମୋ ମନରେ ସତେ ଯେପରି କିଏ କହୁଛି ଏ ସୃଷ୍ଟିର ଜନଜୀବନରେ ଆମେ ସୌନ୍ଦର୍ଯ୍ୟକୁ ଭରିଦେଉଛୁ ।

## କଠିନ ଶବ୍ଦାର୍ଥ

ଛଇଳ – ସୁନ୍ଦର । ଆମ୍ରତରୁ – ଆମ୍ବଗଛ । ଭୋଳ – ବିହ୍ୱଳ । ନୟନ – ଆଖି । ଭ୍ରମର – ଭଅଁର । ମମ – ମୋର । ସମ – ସମାନ । ମାଧୁରୀ – ମଧୁରତା, ସୌନ୍ଦର୍ଯ୍ୟ । ପତରରାଶି – ପତ୍ରସମୂହ । ସମୀର – ପବନ । ଝାସି – ଝାସଦେଇ । ଲୋଟି – ଗଡ଼ି ପଡୁଛି । ଚପଳ – ଚଳଚଞ୍ଚଳ । ବକ – ବଗ । ଅଭିଳାଷେ – ଉଦ୍ଦେଶ୍ୟରେ । ଅତୁଳ – ଯାହାର ତୁଳନା କରିହେବ ନାହିଁ । ଆପଣା – ନିଜର । ମୁଖେ – ମୁହଁରେ । ଗୋପାଳ – ଗଉଡ଼ । ମୂର୍ଚ୍ଛନା – ସ୍ୱରର ସୁମଧୁର କମ୍ପନ । ଶେଫାଳୀ – ଗଙ୍ଗଶିଉଳି । ମହକ – ସୁଗନ୍ଧ, ବାସ୍ନା । ଆବେଶ – ବିହ୍ୱଳ । ଚିତ୍ତ – ହୃଦୟ । ସାଥେ – ସହିତ । ଶିରୀ – ସମ୍ପଦ, ସୌନ୍ଦର୍ଯ୍ୟ । ସୃଷ୍ଟିଧାମେ – ଏ ପୃଥିବୀରେ । ସୁଷମା – ସୌନ୍ଦର୍ଯ୍ୟ ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

**୧ । କବିତାର ଗୋଟିଏ ଲେଖାଏଁ ପଦ ଆବୃତ୍ତି କର ।**

ଉ– ଶିକ୍ଷକ/ଶିକ୍ଷିକାମାନେ ଏହି କବିତାରୁ ଗୋଟିଏ ଲେଖାଏଁ ପଦ ଆବୃତ୍ତି କରିବାକୁ ଛାତ୍ରଛାତ୍ରୀମାନଙ୍କୁ କହିବେ ।

**୨ । କବିତାର ଯେଉଁ ପଦରେ ଏକଥା କୁହାଯାଇଛି ସେହି ପଦକୁ ଆବୃତ୍ତି କର ।**

**(କ) ବଗ ଶିକାର ପାଇଁ ବସିଛି ।**

ଉ– ସୁଅର ଏକ ପାଶେ
ମଉନ ବକ ବସିଛି ତାର
ଶିକାର ଅଭିଳାଷେ ।
ପାଉଛି ଯାହା, ଅତୁଳ ସୁଖେ
ଦେଉଚି ଭରି ଆପଣା ମୁଖେ ।
ଗେଣ୍ଡାଳିଆ
ଝାମ୍ପ ମାରି
ଉଠାଇ ନୀଳାକାଶେ ।

**(ଖ) ଶଙ୍ଖଚିଲ ଆକାଶରେ ଉଡୁଛି ।**

ଉ– ସେତିକି ବେଳେ ତହିଁ
ଶଙ୍ଖଚିଲ ଉଠଇ ଡାକି
ଆକାଶେ ରହି ରହି ।
ଦୂରେ ଯେ ଥିଲେ ବାଳକ ଦଳ
ଉଚ୍ଚେ ମିଳି ତୋଳିଲେ ସ୍ୱର,
'ହେଇ ରେ ଭାଇ
ବିଜୟ-ଶିରୀ,
ଦେଖରେ ଦେଖ ଭାଇ ।'

**(ଗ) ଗୋପାଳ ପିଲା ବଂଶୀ ବଜାଉଛି ।**

ଉ– ନଈର ଆର ପାରେ
ଦିଶୁଛି ଗାଈ ବାଛୁରୀ ପଲ
ସବୁଜ ପଡ଼ିଆରେ ।
ଗୋପାଳ ପୁଅ ସେଇଠି କାହିଁ
ବଇଁଶୀ ସୁରେ ଦେଉଛି ଗାଇ,
ମୂର୍ଚ୍ଛନାଟି
ଉଠୁଚି ମାତି
ସତେ କି ତାଳେ ତାଳେ ।

**(ଘ) ଶରତ-ଆକାଶରେ ନୀଳମେଘ ଅତି ସୁନ୍ଦର ଦେଖାଯାଉଛି ।**

ଉ– ଶରତ ଲଗନରେ
ସୁନୀଳ ଏକ ବଉଦ ଉଡ଼େ
ଧୂସର ଗଗନରେ ।
ଉପରେ ମେଘ, ତଳେ ଏ ନଈ
ମନରେ ମୋର ଦିଅଇ କହି
'ସୃଷ୍ଟି ଧାମେ
ସୁଷମା ଆମେ
ଭରୁଚୁ ଜୀବନରେ ।'



**୩ । ନିମ୍ନଲିଖିତ ବାକ୍ୟଗୁଡ଼ିକୁ ଉତ୍ତର ମନେକରି ଏଗୁଡ଼ିକ ପାଇଁ କେତୋଟି ପ୍ରଶ୍ନ ପ୍ରସ୍ତୁତ କର ।**

**(କ) କବି ଶରତ ଋତୁରେ ନଈକୂଳ ଆମ୍ବଗଛ ମୂଳେ ବସିଥିଲେ ।**

ଉ –(୧) କିଏ ଶରତ ଋତୁରେ ନଈକୂଳ ଆମ୍ବଗଛ ମୂଳେ ବସିଥିଲେ ?
(୨) କବି କେଉଁ ଋତୁରେ ନଈକୂଳ ଆମ୍ବଗଛ ମୂଳେ ବସିଥିଲେ ?
(୩) କବି ଶରତ ଋତୁରେ କେଉଁଠି ବସିଥିଲେ ?

**(ଖ) ନଈର ଜଳଧାରା ମନୋହର ଦେଖାଯାଉଛି ।**

ଉ –(୧) କାହାର ଜଳଧାରା ମନୋହର ଦେଖାଯାଉଛି ?
(୨) କ'ଣ ମନୋହର ଦେଖାଯାଉଛି ?
(୩) ନଈର ଜଳଧାରା କିପରି ଦେଖାଯାଉଛି ?

**(ଗ) ବଗ ନଈ ସୁଅର ଗୋଟିଏ ପଟେ ଶିକାର ପାଇଁ ବସିଛି ।**

ଉ –(୧) କିଏ ନଈ ସୁଅର ଗୋଟିଏ ପଟେ ଶିକାର ପାଇଁ ବସିଛି ?
(୨) ବଗ କେଉଁଠି ଶିକାର ପାଇଁ ବସିଛି ?
(୩) ବଗ ନଈ ସୁଅର ଗୋଟିଏ ପଟେ କ'ଣ ପାଇଁ ବସିଛି ?

**(ଘ) ନଈକୂଳରେ ଶେଫାଳୀ ଫୁଲ ଫୁଟିଛି ।**

ଉ –(୧) ନଈକୂଳରେ କେଉଁ ଫୁଲ ଫୁଟିଛି ?
(୨) ଶେଫାଳୀ ଫୁଲ କେଉଁଠି ଫୁଟିଛି ?

**୪ । ସବୁଜ କୋଳ, ମଉନ ବକ, ଧୀର ସମୀର ଶବ୍ଦରେ ଥିବା ବିଶେଷ୍ୟ ପଦଗୁଡ଼ିକ ଲେଖ ।**

ଉ – ବିଶେଷ୍ୟ ପଦଗୁଡ଼ିକ ହେଲା – କୋଳ, ବକ, ସମୀର ।

**୫ । ନିମ୍ନଲିଖିତ ପ୍ରତ୍ୟେକ ଶବ୍ଦର ଅର୍ଥ ବୁଝାଉଥିବା ଆଉ ଗୋଟିଏ ଶବ୍ଦ ଲେଖ ।**

ନୟନ, ଢେଉ, ଗଛ, ଭ୍ରମର, ଜଳ, ସମୀର, ଶେଫାଳୀ

ଉ –ନୟନ – ଚକ୍ଷୁ, ଢେଉ – ତରଙ୍ଗ, ଗଛ – ପାଦପ, ଭ୍ରମର – ଅଳି, ଜଳ – ନୀର, ସମୀର – ବାୟୁ, ଶେଫାଳୀ – ଗଙ୍ଗଶିଉଳି ।

**୬ । କବିତାରେ ଥିବା ପଦରୁ ଗୋଟିଏ ଧାଡ଼ି ଦିଆଯାଇଛି । ପରବର୍ତ୍ତୀ ଧାଡ଼ିକି ପୂରଣ କର ।**

(କ) ମଧୁର ତାର ମହକ ରାଶି .................. ।

ଉ –ମଧୁର ତାର ମହକ ରାଶି <u>ପବନ ସାଥେ ଆସୁଚି ଭାସି</u> ।

(ଖ) ଦୂରେ ଯେ ଥିଲେ ବାଳକ ଦଳ .................. ।

ଉ –ଦୂରେ ଯେ ଥିଲେ ବାଳକ ଦଳ <u>ଉଚ୍ଚେ ମିଳି ତୋଳିଲେ ସ୍ୱର</u> ।

(ଗ) ସୁଅର ଏକ ପାଶେ .................. ।

ଉ –ସୁଅର ଏକ ପାଶେ <u>ମଉନ ବକ ବସିଛି ତାର ଶିକାର ଅଭିଳାଷେ</u> ।

(ଘ) ହଲାଇ ଗଛ ପତରରାଶି .................. ।

ଉ –ହଲାଇ ଗଛ ପତରରାଶି <u>ସମୀର ଧୀରେ ପଡ଼ଇ ଝାସି</u> ।

୭ । ନିମ୍ନଲିଖିତ ଶବ୍ଦଗୁଡ଼ିକର ଗଦ୍ୟରୂପ ଲେଖ ।

ଚକର, ଲଗନ, ମଉନ, ମୁରୁଛନା

| ଉ– ପଦ୍ୟରୂପ | ଗଦ୍ୟରୂପ | ପଦ୍ୟରୂପ | ଗଦ୍ୟରୂପ |
|---|---|---|---|
| ଚକର | ଚକ୍ର | ମଉନ | ମୌନ |
| ଲଗନ | ଲଗ୍ନ | ମୂରୁଛନା | ମୂର୍ଚ୍ଛନା |

୮ । 'ନୀଳ' ଶବ୍ଦ ପୂର୍ବରୁ 'ସୁ' ଯୋଡ଼ିଲେ ସୁନୀଳ ହୁଏ । ସେହିପରି 'ସୁ' ଲଗାଇ ଆଉ ତିନିଗୋଟି ଶବ୍ଦ ତିଆରି କର ।

ଉ– ସୁପୁତ୍ର, ସୁଜନ, ସୁଗମ ।

୯ । ତଳେ ଦିଆଯାଇଥିବା ପଦଟିରୁ ସ୍ୱରବର୍ଣ୍ଣଗୁଡ଼ିକୁ ବାଛି ଲେଖ ।

ସୁଅର ଏକ ପାଶେ
ମଉନ ବକ ବସିଛି ତାର
ଶିକାର ଅଭିଳାଷେ ।

ଉ– ଅ, ଏ, ଉ, ଆ, ଇ ।

**ତୁମ ପାଇଁ କାମ**

୧ । କବି ରାଧାମୋହନ ଗଡ଼ନାୟକଙ୍କ ରଚିତ କବିତା ବହିଗୁଡ଼ିକର ନାମ ସଂଗ୍ରହ କର ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧ । ସଂକ୍ଷେପରେ ଉତ୍ତର ଦିଅ ।

**(କ) ଏହି କବିତାରେ ବଗ ଓ ଗେଣ୍ଡାଳିଆଙ୍କର କାର୍ଯ୍ୟ କଥା କିପରି ବର୍ଣ୍ଣନା ହୋଇଛି ?**

ଉ– ସେହି ନଈ ସୁଅର ଏକ ପାଖରେ ବଗଟିଏ ମଉନରେ ଶିକାର ପାଇଁ ବସିଛି । ସେ ଯାହା ପାଉଛି, ତାହାକୁ ଅତି ଆନନ୍ଦରେ ଆପଣାର ମୁହଁରେ ଭରିଦେଉଛି । ଗେଣ୍ଡାଳିଆଟିଏ ଝାମ୍ପ ମାରି ନୀଳ ଆକାଶକୁ ଉଠିଯାଉଛି ।

**(ଖ) ନଈ ଆରପାରିରେ ଗୋପାଳ ପୁଅ କ'ଣ କରୁଛି ?**

ଉ– ନଈ ଆରପାରିରେ ଥିବା ସବୁଜ ଘାସ ପଡ଼ିଆରେ ଗାଈବାଛୁରୀ ପଲ ଦିଶୁଛନ୍ତି । ଗୋପାଳ ପୁଅ ସେଇଠି ଥାଇ ବଂଶୀର ସ୍ୱରରେ ଗୀତ ଗାଇ ଅପୂର୍ବ ମୂର୍ଚ୍ଛନା ତୋଳୁଛି ।

**(ଗ) ଶେଫାଳୀ ଫୁଲର ବର୍ଣ୍ଣନା କବି କିପରି କରିଛନ୍ତି ?**

ଉ– ନଈର ଏଇ କୂଳରେ ଦୂରରେ ଶେଫାଳୀ ଫୁଲ ଫୁଟିଛି । ତା'ର ମଧୁର ମହକ ପବନରେ ଭାସିଆସି କବିଙ୍କୁ ବେଶ୍ ଭାବବିହ୍ୱଳ କରିଦେଉଛି ।

**(ଘ) ଶଙ୍ଖଚିଲକୁ ଦେଖି ପିଲାମାନେ କ'ଣ କହୁଛନ୍ତି ?**

ଉ– ଆକାଶରେ ଶଙ୍ଖଚିଲ ଉଡ଼ିବୁଲିଲାବେଳେ ରହି ରହି ଡାକୁଛି । ଦୂରରେ ଥିବା ବାଳକମାନେ ତାକୁ ଦେଖି ଉଚ୍ଚସ୍ୱରରେ କହିବାରେ ଲାଗିଲେ, *"ହେ ଭାଇ, ବିଜୟର ସମ୍ପଦ ଏହାକୁ ଦେଖ ।"*



**(ଙ) ଶରତ ଆକାଶରେ ନୀଳମେଘ କଥା କିପରି ବର୍ଣ୍ଣନା ହୋଇଛି ?**

ଉ– ଶରତ ଋତୁର ସେହି ଧୂସର ଆକାଶରେ ନୀଳମେଘ ଖଣ୍ଡେ ଉଡ଼ି ଉଡ଼ି ଯାଉଛି । ଉପରେ ମେଘର ଦୃଶ୍ୟ ଓ ତଳେ ନଦୀ ବହିଯାଉଥିବାର ଦୃଶ୍ୟ ବେଶ୍ ମନୋରମ ଦିଶୁଛି ।

**(ଚ) କବିଙ୍କର ଆଖିକୁ ଭ୍ରମର ସହିତ ତୁଳନା କରାଯାଇଛି କାହିଁକି ?**

ଉ– ଭ୍ରମର ଯେପରି ଫୁଲ ଉପରେ ବସିବାପାଇଁ ସବୁ ଜାଗା ଖୋଜିବୁଲେ, ସେହିପରି କବିଙ୍କର ଆଖି ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଦେଖିବାପାଇଁ ବ୍ୟାକୁଳ ହୋଇଉଠୁଛି । ତେଣୁ ନୟନକୁ ଭ୍ରମର ସହିତ ତୁଳନା କରାଯାଇଛି ।

୨ । ସଂକ୍ଷେପରେ ଉତ୍ତର ଦିଅ ।

**(କ) ସୃଷ୍ଟିରେ କିଏ ସୁଷମା ଭରୁଛନ୍ତି ବୋଲି କହୁଛନ୍ତି ?**

ଉ– ଶରତ ଋତୁରେ କବି ନଦୀକୂଳର ଏକ ଆମ୍ବ ଗଛ ଛାଇରେ ବସିଥିଲେ । ସେ ଅନୁଭବ କରିଥିଲେ ଯେ ଧୂସର ଆକାଶରେ ଭାସି ଯାଉଥିବା ମେଘ ଓ ତଳେ ବହିଯାଉଥିବା ନଈ ଯେପରି ତାଙ୍କ କାନରେ ସୃଷ୍ଟିର ସୁଷମା ଭରୁଛନ୍ତି ବୋଲି କହୁଛନ୍ତି ।

**(ଖ) କବିଙ୍କ ନୟନ କାହାର ମାଧୁରୀ ଚାଖି ବୁଲୁଥିଲା ?**

ଉ– କବି ଶରତ ଋତୁରେ ନଦୀକୂଳରେ ବସି ପ୍ରକୃତିର ସବୁଜିମା ଦେଖି ବିହ୍ୱଳ ହୋଇ ପଡ଼ିଥିଲେ । ତାଙ୍କର ନୟନ ଏକ ଭ୍ରମର ପରି ପ୍ରକୃତିର ସୁଷମା ମାଧୁରୀ ଚାଖି ବୁଲୁଥିଲା ।

**(ଗ) ଜଳଧାରା ନିକଟରେ ବଗଟିଏ ବସି କ'ଣ କରୁଛି ?**

ଉ– ଜଳଧାରା ନିକଟରେ ବଗଟିଏ ମାଛ ଶିକାର ଆଶାରେ ମଉନ ହୋଇ ବସିରହିଛି । ଯେତେବେଳେ ଯାହା ମିଳୁଛି ତାହାକୁ ସିଏ ପରମ ସୁଖରେ ପାଟି ଭିତରେ ପୂରାଇ ଦେଉଛି ।

**(ଘ) ନଈ ଆରପାରିରେ କବି କ'ଣ ଦେଖିଛନ୍ତି ?**

ଉ– କବି ନଈ ଆରପାରିରେ ସବୁଜ ପଡ଼ିଆରେ ଗାଈ ବାଛୁରୀ ପଲ ଚରୁଥିବାର ଦେଖିଛନ୍ତି । ଗୋପାଳ ବାଳକଟିଏ ସେଠାରେ କେଉଁଠି ରହି ଅପୂର୍ବ ମୂର୍ଚ୍ଛନା ତୋଳି ବଂଶୀ ବଜାଉଛି ।

**(ଙ) ଶେଫାଳୀ ଫୁଲଟି କେଉଁଠି ଫୁଟିଛି ଓ ତା'ର ମହକ କିପରି ଭାସି ଆସୁଛି ?**

ଉ– ଶେଫାଳୀ ଫୁଲଟି ବହୁତ ଦୂରରେ ନଦୀର ଏଇପାଖ କୂଳରେ ଫୁଟିଛି । ତା'ର ମଧୁର ମହକ ପବନରେ ଭାସି ଭାସି କବିଙ୍କ ନିକଟକୁ ଚାଲି ଆସୁଛି ।

୩ । ସରଳାର୍ଥ ଲେଖ ।

**(କ) ନୟନ ମମ ଭ୍ରମର ସମ**
**ମାଧୁରୀ ଚାଖି ବୁଲେ ।**

*ଉ– ନୟନ ମମ ............................ ଚାଖି ବୁଲେ ।*

ଶଂସିତ ପଦ୍ୟାଂଶଟି ପଠିତ ସାହିତ୍ୟ ବହିର *'ଶରତ-ନଈ-କୂଳେ'* କବିତାରୁ ସଂଗୃହୀତ । ଏଠାରେ କବି ରାଧାମୋହନ ଗଡ଼ନାୟକ ଶରତକାଳୀନ ପ୍ରାକୃତିକ ଶୋଭାଶ୍ରୀକୁ ଦେଖି କିପରି ଆତ୍ମହରା ହୋଇଛନ୍ତି, ତାହା ବର୍ଣ୍ଣିତ ହୋଇଛି ।

ଶରତ ଋତୁରେ କବି ନଈକୂଳରେ ଥିବା ଏକ ଆମ୍ବଗଛର ସୁନ୍ଦର ଛାଇରେ ବସିଥିଲେ । ଚତୁର୍ଦ୍ଦିଗରେ ପ୍ରକୃତିର ସବୁଜିମାଭରା ଶୋଭାକୁ ଦେଖି ତାଙ୍କର ମନ ଆନ୍ଦୋଳିତ ହୋଇଛି । ସେ ସେହି ଅପୂର୍ବ ଶୋଭାଶ୍ରୀକୁ ଅବଲୋକନ କରି ଆତ୍ମବିଭୋର ହୋଇପଡ଼ିଛନ୍ତି । ନିଜର ଚକ୍ଷୁଯୁଗଳ ଭ୍ରମର ପରି ସେହି ଶୋଭାର ମାଧୁର୍ଯ୍ୟକୁ ଚାଖିବାପାଇଁ ଘୂରି ବୁଲୁଛି । ଶରତର ଏଇ ନଦୀକୂଳର ଦୃଶ୍ୟ ବେଶ୍ ମନୋରମ ହୋଇଥିବାରୁ ସାମୟିକଭାବେ କବିଙ୍କର ଦୃଷ୍ଟି ସେହିଆଡ଼କୁ ଆକର୍ଷିତ ହୋଇଯାଇଛି ।

ବାସ୍ତବରେ କବିଙ୍କର ଏଇ ବର୍ଣ୍ଣନା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇପାରିଛି ।

(ଖ) "ଆବେଗ-ଭୋଳ
ଚିତ୍ତ ମୋର
ତାହାରି ସାଥେ ଘୂରେ" ।

ଉ– *ଆବେଗ-ଭୋଳ .............................. ଘୂରେ ।*

ଶଂସିତ ପଦ୍ୟାଂଶଟି ପଠିତ ସାହିତ୍ୟ ବହିର *'ଶରତ-ନଈ-କୂଳେ'* କବିତାରୁ ସଂଗୃହୀତ । ଏଠାରେ କବି ଡକ୍ଟର ରାଧାମୋହନ ଗଡ଼ନାୟକ ଶେଫାଳୀ ଫୁଲର ମଧୁର ମହକରେ କିପରି ବିଭୋର ହୋଇଛନ୍ତି, ତାହା ବର୍ଣ୍ଣନା କରିଛନ୍ତି ।

ଶରତ ଋତୁରେ କବି ଏକ ନଈକୂଳେ ବସି ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଅବଲୋକନ କରୁଥିଲେ । ନଈର ଆରପଟରେ ଗୋପାଳ ବାଳକର ବଂଶୀର ମଧୁର ମୂର୍ଚ୍ଛନା ଯେପରି କବିକୁ ଆନମନା କରିଛି, ସେହିପରି ନଈର ଏପଟ କୂଳରେ ଦୂରରେ ଫୁଟିଥିବା ଶେଫାଳୀ ଫୁଲର ମହକ ମଧ ବେଶ୍ ବିଭୋର କରିଛି । ଶେଫାଳୀ ବହୁଦୂରରେ ଫୁଟିଛି, ହେଲେ ତା'ର ସୁମଧୁର ମହକ ପବନରେ ଭାସି ଆସି କବିକୁ ଆନମନା କରୁଛି । ଫୁଲକୁ ନ ଦେଖିଲେ ମଧ ତାହାର ମହକକୁ ପବନ ମାଧ୍ୟମରେ ଗ୍ରହଣ କରି କବିଙ୍କର ହୃଦୟ ବେଶ୍ ବିଭୋର ହୋଇ ଉଠୁଛି । ଏପରିକି ଶେଫାଳୀର ବାସ୍ନା ସହିତ କବିଙ୍କର ହୃଦୟ ପାଗଳି ପରି ଘୂରିବୁଲୁଛି ।

ବାସ୍ତବରେ କବିଙ୍କର ଏହି ବର୍ଣ୍ଣନା ବେଶ୍ ମନୋମୁଗ୍ଧକର ଓ ଭାବଗର୍ଭକ ହୋଇପାରିଛି ।

(ଗ) ମୂର୍ଚ୍ଛନାଟି ଉଠୁଛି ମାତି
ସତେ କି ତାଳେ ତାଳେ ।

ଉ– *ମୂର୍ଚ୍ଛନାଟି.................ତାଳେ ତାଳେ ।*

ଶଂସିତ ପଦ୍ୟାଂଶଟି କବି ଡ. ରାଧାମୋହନ ଗଡ଼ନାୟକଙ୍କ ଲିଖିତ *'ଶରତ-ନଈ-କୂଳେ'* ଶୀର୍ଷକ କବିତାରୁ ଆନୀତ । ଉକ୍ତ ପ୍ରସଙ୍ଗରେ କବି ନଦୀର ଅପରପାର୍ଶ୍ୱରେ ଦୃଶ୍ୟମାନ ଦୃଶ୍ୟାବଳୀ ବିଷୟରେ ସୂଚନା ପ୍ରଦାନ କରିଛନ୍ତି ।

କବି ଶରତ ଋତୁର କୌଣସି ଏକ ଦିନରେ ନଈକୂଳେ ଆମ୍ବଗଛର ଛାଇ ତଳେ ବସିଛନ୍ତି । ସେଠାରେ ବସି ସେ ନଈର ଓ ନଈ ଦୁଇପାଖର ଶୋଭା ଅବଲୋକନ କରିଛନ୍ତି । ପ୍ରକୃତିର ଶୋଭାସମ୍ପଦ ତାଙ୍କ ଚିତ୍ତକୁ ଭାବବିହ୍ୱଳ କରିଦେଉଛି । କବିଙ୍କର ଦୃଷ୍ଟି ଧୀରେ ଧୀରେ ନଦୀ ଅପର ପାର୍ଶ୍ୱକୁ ପ୍ରସରି ଯାଇଛି । ନଈ ଆରପାରିରେ ସବୁଜ ପଡ଼ିଆରେ ଚରୁଥିବା ଗାଈ ବାଛୁରୀପଲ ତାଙ୍କ ଦୃଷ୍ଟି ଆକର୍ଷଣ କରିଛି । ସେଠାରେ କେଉଁଠି ଗୋପାଳ ବାଳକଟିଏ ଅଛି । ସେ ବଂଶୀ ବଜାଉଛି । ସେହି ବଂଶୀର ମୂର୍ଚ୍ଛନାର ତାଳେ ତାଳେ କବିଙ୍କ ମନ ନାଚି ଉଠିଛି । ସେ ଆତ୍ମବିଭୋର ହୋଇ ପଡ଼ିଛନ୍ତି ।

କବିଙ୍କ ବର୍ଣ୍ଣନା ବାସ୍ତବରେ ମନଛୁଆଁ ହୋଇପାରିଛି ।



(ଘ) ଗୋଟିକି ଗୋଟି ପଡୁଛି ଲୋଟି
ଚପଳ ଢେଉମାଳା ।

ଉ – *ଗୋଟିକି .....................ଢେଉମାଳା ।*

ଶଂସିତ ପଦ୍ୟାଂଶଟି ରାଧାମୋହନ ଗଡ଼ନାୟକଙ୍କ ଲିଖିତ *'ଶରତ-ନଈ-କୂଳେ'* ଶୀର୍ଷକ କବିତାରୁ ଉଦ୍ଧୃତ । ଏହି ପ୍ରସଙ୍ଗରେ କବି ଶରତ ଋତୁରେ ନଦୀର ଶୋଭା ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି ।

ଶରତ ଋତୁରେ କବି ନଈକୂଳର ଏକ ଆମ୍ବଗଛ ମୂଳେ ବସିଛନ୍ତି । ଗଛ ଛାଇତଳେ ବସି ସେ ପ୍ରାକୃତିକ ସୁଷମା ଉପଭୋଗ କରି ଚାଲିଛନ୍ତି । ନଈଟି କୁଳୁକୁଳୁ ନାଦକରି ବହିଯାଉଛି । ଛାଇ ଆଲୁଅ ତଳେ ପ୍ରବାହିତ ନଦୀର ଜଳଧାରା ଖୁବ୍ ସୁନ୍ଦର ଦେଖାଯାଉଛି । ପବନରେ ଗଛରୁ ପତ୍ରଗୁଡ଼ିକ ଧୀରେ ଧୀରେ ନଈ ଧାରରେ ଖସି ପଡୁଛି । ଗୋଟି ଗୋଟି ପତ୍ର ନଈର ଢେଉମାଳା ଦେହରେ ନାଚି ନାଚି ଭାସିଯାଉଛି । ଏହିସବୁ ଦୃଶ୍ୟ କବିଙ୍କ ହୃଦୟକୁ ସ୍ପର୍ଶ କରିଛି ।

ଏ ପ୍ରସଙ୍ଗରେ କବିଙ୍କ ବର୍ଣ୍ଣନା ବେଶ୍ ହୃଦୟସ୍ପର୍ଶୀ ହୋଇପାରିଛି ।

**୪ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।**

**(କ) କବି ଶରତ ଋତୁରେ ଆମ୍ବଗଛ ମୂଳରେ ବସି ପ୍ରକୃତିର କି ଅପୂର୍ବ ଶୋଭା ଉପଭୋଗ କରୁଥିଲେ ?**

ଉ– ଶରତ ଋତୁର ନିର୍ମଳ ଓ ସୁନ୍ଦର ପରିବେଶ ମନରେ ଭାବାନ୍ତର ସୃଷ୍ଟି କରେ । ଏଭଳି ଏକ ମନୋମୁଗ୍ଧକର ପରିବେଶ କବିଙ୍କୁ ସୌନ୍ଦର୍ଯ୍ୟ-ବିଳାସୀ କରିଛି । ସେ ଏକ ନଦୀକୂଳରେ ଆମ୍ବଗଛ ମୂଳରେ ବସି ପ୍ରକୃତିର ଶୋଭା ସନ୍ଦର୍ଶନ କରି ବିମୋହିତ ହୋଇଛନ୍ତି । ଫୁଲରୁ ମଧୁପାନ କରି ଭ୍ରମର ଆମୋଦିତ ହେବା ଭଳି କବିଙ୍କ ନୟନ ପ୍ରକୃତିର ରୂପ ମାଧୁରୀ ପାନ କରି ଆନନ୍ଦ ବିଭୋର ହୋଇଛି । ଛାଇ ଆଲୁଅ ତଳେ କ୍ଷୁଦ୍ର ନଦୀଟି ବହିଯାଉଛି । ଗଛରୁ ପତ୍ରମାନ ଖସିପଡ଼ି ଢେଉରେ ଭାସି ଦୂରକୁ ଦୂରକୁ ଯାଉଛି । ଜଳଧାରା ପାଖରେ ମଉନ ଭାବରେ ବଗଟିଏ ବସି ମୀନକୁ ଝାମ୍ପି ନେଉଛି । ଏସବୁ ଦୃଶ୍ୟକୁ କବି ଉପଭୋଗ କରୁଥିଲେ ।

**(ଖ) ନଦୀର ଆରପାରିରେ କ'ଣ ଦେଖି କବି ଆତ୍ମବିଭୋର ହୋଇ ଉଠିଛନ୍ତି ?**

ଉ– ଶରତ ଋତୁ ହେଉଛି ଶୋଭାର ଋତୁ । ଶରତର ଶାନ୍ତ ନିର୍ମଳ ପରିବେଶ ସମସ୍ତଙ୍କ ମନରେ ଭାବାନ୍ତର ସୃଷ୍ଟି କରିଥାଏ । କବିଙ୍କ ମନରେ ମଧ ଭାବାନ୍ତର ସୃଷ୍ଟି ହୋଇଛି । କବି ଦେଖିଛନ୍ତି ନଦୀର ଆରପାରିରେ ଗାଈ ବାଛୁରୀ ପଲ ସବୁଜ ପଡ଼ିଆରେ ଚରୁଛନ୍ତି । ଗୋପାଳ ବାଳକଟିଏ ସେଠାରେ ରହି ସୁମଧୁର ସ୍ୱରରେ ବଂଶୀ ବାଦନ କରୁଛି । ଏହା କବିଙ୍କ ମନକୁ ଆମୋଦିତ କରିଛି । ପ୍ରକୃତିର ଏଭଳି ଶୋଭା ତାଙ୍କ ହୃଦୟକୁ ବିହ୍ୱଳିତ କରିଦେଇଛି ।

**(ଗ) 'ଶରତ-ନଈ-କୂଳେ' କବିତାରେ କବି ନଈର ଶୋଭା ବିଷୟରେ କି ବର୍ଣ୍ଣନା କରିଛନ୍ତି ?**

ଉ– କବି ଡ. ରାଧାମୋହନ ଗଡ଼ନାୟକ *'ଶରତ-ନଈ-କୂଳେ'* କବିତାରେ ନଈର ଉଭୟ ପାର୍ଶ୍ୱରେ ଦୃଶ୍ୟମାନ ଶୋଭାରାଶି ଉପରେ ଆଲୋକପାତ କରିଛନ୍ତି । ଶରତ ଋତୁର କୌଣସି ଏକ ଦିନରେ କବି ଏକ ଆମ୍ବଗଛ ମୂଳେ ବସି ଏହି ଶୋଭାରାଶିକୁ ଅବଲୋକନ କରି ଭାବବିହ୍ୱଳ ହୋଇଛନ୍ତି । ନଈର ସ୍ୱଚ୍ଛ ଜଳଧାରା ଛାଇ ଆଲୁଅ ତଳେ କୁଳୁକୁଳୁ ନାଦ କରି ବହିଯାଉଛି । ନଈର ସ୍ୱଚ୍ଛ ଜଳରାଶି ଧବଳ ହୀରକ ଭଳି ଦେଖାଯାଉଛି ।

ସୁଲୁସୁଲିଆ ପବନରେ ଗଛରୁ ପତ୍ରଗୁଡ଼ିକ ନଈ ଜଳଧାରାରେ ଖସିପଡୁଛି । ନଈର ଚପଳ ତରଙ୍ଗରେ ସେଗୁଡ଼ିକ ନାଚି ନାଚି ବହୁଦୂରକୁ ଭାସି ଯାଉଛି । କବି ଏହି ଶୋଭାକୁ ଦର୍ଶନ କରି ଆତ୍ମହରା ହୋଇପଡ଼ିଛନ୍ତି ।

**(ଘ) ମେଘ ଓ ନଈ କବିଙ୍କ ମନରେ କ'ଣ କହି ଦେଇଛନ୍ତି ?**

ଉ– ଏକ ଶାରଦୀୟ ଦିବସରେ କବି ରାଧାମୋହନ ଗଡ଼ନାୟକ ନଈ ଓ ଆକାଶର ମନୋଲୋଭା ପ୍ରାକୃତିକ ସୁଷମାରେ ଆକୃଷ୍ଟ ହୋଇ ପଡ଼ିଛନ୍ତି । ସେ ନଈକୂଳର ଏକ ଆମ୍ବଗଛ ମୂଳରେ ବସି ଏସବୁ ଦୃଶ୍ୟ ଦେଖି ଆନନ୍ଦ ପାଇଛନ୍ତି । ନଦୀର ସ୍ୱଚ୍ଛ ଜଳଧାରା, ଆକାଶର ନୀଳିମା ଓ ସମୀରର ଶୀତଳ ସ୍ପର୍ଶ ତାଙ୍କ ମନକୁ ହରଣ କରିନେଇଛି । ଶରତ ଲଗ୍ନରେ ଧୂସର ଗଗନରେ ବଉଦମାଳା ଭାସିବୁଲୁଛି । ଏହି ବଉଦମାଳାର ଠିକ୍ ତଳେ ନଈଟି କୁଳୁକୁଳୁ ନାଦ କରି ବହିଯାଉଛି । କବି ଅନୁଭବ କରିଛନ୍ତି ଯେ ଉପରେ ମେଘମାଳ ଓ ତଳେ ନଈ ସତେ ଯେପରି ତାଙ୍କୁ କହୁଛନ୍ତି ଯେ ସେମାନେ ପ୍ରକୃତିରେ ନାନା ସୁଷମା ଭରି ଦେଉଛନ୍ତି ।

**(ଙ) କେଉଁ ମୂର୍ଚ୍ଛନା ତାଳେ ତାଳେ ମାତି ଉଠୁଥିଲା ?**

ଉ– କବି ରାଧାମୋହନ ଗଡ଼ନାୟକ ଏକ ପ୍ରାକୃତିକ ପରିବେଶରେ ଶରତ ଋତୁର ନଦୀକୂଳରେ ଆନନ୍ଦ ଉପଭୋଗ କରୁଥିଲେ । ତାଙ୍କର ମନ ବିଭୋର ହୋଇଉଠୁଥିଲା । ନଈର ଜଳଧାରା, ଢେଉମାଳା, ନୀଳଆକାଶ ଓ ନଈର ଆରପାରିର ଦୃଶ୍ୟ ତାଙ୍କୁ ଅଶେଷ ଆନନ୍ଦ ଦେଉଥିଲା । ନଈର ଆରପାରିରେ ଗାଈ ବାଛୁରୀ ପଲ ସବୁଜ ଘାସ ପଡ଼ିଆରେ ଚରିବୁଲୁଥିଲେ । ଗୋପାଳ ପୁଅ ମଧୁର ସ୍ୱରରେ ବଇଁଶୀ ବଜାଉଥିଲା । ସେହି ବଇଁଶୀ ସ୍ୱରର ମୂର୍ଚ୍ଛନା ତାଳେ ତାଳେ ମାତି ଉଠୁଥିଲା ।



# ଧୂଳି

• *ବିଦ୍ୟୁତ୍‌ପ୍ରଭା ଦେବୀ*

*ଜନ୍ମ : ୧୨.୭.୧୯୨୬*

*ମୃତ୍ୟୁ : ୨୮.୧.୧୯୭୭*

## କବି ପରିଚୟ

ବିଦ୍ୟୁତ୍‌ପ୍ରଭା ଦେବୀ (୧୯୨୬-୧୯୭୭) ଆଧୁନିକ ଯୁଗର ଜଣେ ବିଶିଷ୍ଟ ନାରୀକବି । ସେ କେନ୍ଦ୍ରାପଡ଼ା ଜିଲ୍ଲା ଅନ୍ତର୍ଗତ ନାଟରା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଜଣେ ଗୃହିଣୀ ହେଲେ ମଧ ସେ ଯେଉଁ କାବ୍ୟକବିତା ରଚନା କରି ଓଡ଼ିଆ ବାଣୀ ଭଣ୍ଡାରକୁ ପରିପୁଷ୍ଟ କରିଛନ୍ତି, ତାହା ଅନ୍ୟତ୍ର ବିରଳ । ତାଙ୍କ ରଚିତ *'ଉତ୍କଳ ସାରସ୍ୱତ ପ୍ରତିଭା'*, *'ସ୍ୱପ୍ନଦୀପ'*, *'ମରୀଚିକା'*, *'ଝରା ଶିଉଳି'*, *'ଯାହାକୁ ଯିଏ'*, *'ବନ୍ଦନିକା'* ପ୍ରଭୃତି କବିତାଗ୍ରନ୍ଥ ଓଡ଼ିଆ କାବ୍ୟ ସାହିତ୍ୟର ଏକ ଏକ ଅମୂଲ୍ୟ ସମ୍ପଦ ।

## କବିତାର ଆଦର୍ଶ

ପଠିତ *'ଧୂଳି'* କବିତାଟି କବିଙ୍କ ରଚିତ *'ମରୀଚିକା'* କବିତା ସଂକଳନରୁ ସଂଗୃହୀତ । ଧୂଳି ଅତି ନଗଣ୍ୟ ପଦାର୍ଥ ହେଲେ ମଧ ସୃଷ୍ଟିର ଆରମ୍ଭରୁ ତାହା ରହିଛି । ସୃଷ୍ଟିର ସମସ୍ତ ପରିବର୍ତ୍ତନକୁ ସେ ନିଜ ଆଖିରେ ଦେଖିଛି । ଏ ସୃଷ୍ଟିର ଜୀବଜଗତ ଶେଷରେ ତା'ରି ଦେହରେ ମିଶିଥାଏ । ତଥାପି ମନରେ ଅହଙ୍କାର ନରଖି ସେ ସବୁ ଦୁଃଖକୁ ସହିନେଉଛି ।

## ସାରକଥା

ଆକାଶ ତଳେ ଥିବା ଧୂଳିକଣା ବିଶ୍ୱରେ ସବୁଠାରୁ କ୍ଷୁଦ୍ର ଅଟେ । ଜୀବନରେ ତା'ର କାହା ସହିତ କିଛି ମାନ ଅଭିମାନ ନାହିଁ । ପ୍ରତିଦିନ କେତେ ଜୀବଜନ୍ତୁ ସେମାନଙ୍କର ପାଦରେ ଦଳି ଚକଟି ତାକୁ କଷ୍ଟ ଦେଉଛନ୍ତି । ହେଲେ ମନରେ ଟିକେ ଦୁଃଖ ନକରି ସେ ବିକାରଶୂନ୍ୟ ହୋଇ ସେହିପରି ଏହି ଧରାପଥରେ ପଡ଼ି ରହିଛି । ଏ ପୃଥିବୀରେ ଘଟୁଥିବା ଦୁଃଖସୁଖ ସହିତ ତା'ର କୌଣସି ସମ୍ପର୍କ ନାହିଁ । ତେବେ ସେ ଖାଲି ଜାଣିଛି ଏ ବିଶ୍ୱର ଜୀବଗଣ ତା'ରି ଦେହରେ ଶେଷରେ ବିଲୀନ ହେବେ । ତା'ର ମୁହଁରୁ କଥା ବାହାରୁ ନାହିଁ । ସେ ଅତି ଦରିଦ୍ର । ତା'ର କେହି ସାହା ଭରସା ନାହାନ୍ତି । ତଥାପି ସବୁପ୍ରକାରର ଚାପ ସହିନେବାରେ ତା'ର ମଥା ବେଶ୍ ଦକ୍ଷ ଅଟେ । ସୃଷ୍ଟିର ଆରମ୍ଭକାଳରୁ ଧୂଳି ସବୁକିଛି ଅଭିଯାନ ବସି ଦେଖୁଅଛି । ଆକାଶ ତଳେ ଥିବା ଧୂଳିକଣା ଏ ପୃଥିବୀରେ ଖୁବ୍ ସାନ ହେଲେ ମଧ ତା'ର ଆଦର୍ଶ ଅତ୍ୟନ୍ତ ମହାନ୍ ।

## କଠିନ ଶବ୍ଦାର୍ଥ

ଅଭିମାନ – ଅହଙ୍କାର । ଜନ୍ତୁ-ଜୀବ – ଜୀବଜନ୍ତୁ । ପୀଡ଼ଇ – କଷ୍ଟଦିଏ । ସବୁରି – ସମସ୍ତଙ୍କର । ନିତି – ସବୁଦିନେ । ନିର୍ବିକାରେ – ବିକାରଶୂନ୍ୟଭାବେ । ଧରାପଥେ – ପୃଥିବୀର ରାସ୍ତାରେ । ବୁକୁ – ଛାତିରେ । ନିଃସ୍ୱ – ଦରିଦ୍ର । ଭରସାହୀନ – ସାହାଭରସାଶୂନ୍ୟ । ଚିର – ସର୍ବଦା । ଦକ୍ଷ – ଯୋଗ୍ୟ । ଶିର – ମଥା ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ଧୂଳିକଣା ନିଜକୁ କ'ଣ ବୋଲି କହୁଛି ?**

ଉ – ଏ ପୃଥିବୀରେ ଧୂଳିକଣା ନିଜକୁ ଖୁବ୍ ଛୋଟ ବୋଲି କହୁଛି ।

**(ଖ) ଧୂଳିକୁ କେଉଁମାନଙ୍କ ପାଦ ପୀଡ଼ା ଦିଏ ?**

ଉ – ଧୂଳିକୁ ସବୁ ଜୀବଜନ୍ତୁଙ୍କର ପାଦ ପୀଡ଼ା ଦିଏ ।

**(ଗ) ଧୂଳି କିଭଳି ଭାବରେ ପୃଥିବୀ ଉପରେ ପଡ଼ିରହିଛି ?**

ଉ – ଧୂଳି ନିର୍ବିକାର ଭାବରେ ପୃଥିବୀ ଉପରେ ପଡ଼ିରହିଛି ।

**(ଘ) ବିଶ୍ୱଜୀବଙ୍କ ବିଷୟରେ ଧୂଳି କ'ଣ କହିଛି ?**

ଉ – ଜଗତର ଦୁଃଖସୁଖ ସହିତ ଧୂଳିର କିଛି ସମ୍ପର୍କ ନାହିଁ । ହେଲେ ବିଶ୍ୱର ଜୀବଗଣ ତା'ରି ଦେହରେ ମିଶୁଛନ୍ତି, ଏକଥା ସେ ଜାଣିଛି ।

**(ଙ) ସୃଷ୍ଟିର ଆରମ୍ଭ ଦିନରୁ ଧୂଳିକଣା କ'ଣ ଦେଖୁଛି ?**

ଉ – ସୃଷ୍ଟିର ଆରମ୍ଭ ଦିନରୁ ଯେତେସବୁ ଅଭିଯାନ, ପରିବର୍ତ୍ତନ ଘଟିଛି ବା ଘଟୁଅଛି ସେସବୁକୁ ଧୂଳିକଣା ଦେଖୁଛି ।

୨ । ତଳେ ଦିଆଯାଉଥିବା ପ୍ରଶ୍ନର ଉତ୍ତର ଲେଖ ।

**(କ) ଧୂଳିକଣା ନିଜକୁ ଅତି ସାନ ମଣିବାର କାରଣ କ'ଣ ?**

ଉ – ଏ ବିରାଟ ବିଶ୍ୱରେ ଅନ୍ୟାନ୍ୟ ଜୀବ ତୁଳନାରେ ଧୂଳିକଣାର ଆକାର ଖୁବ୍ ଛୋଟ । ବିଶାଳ ଆକାଶ ତଳେ ଥିଲାବେଳେ ତା'ର ଆକୃତି ଖୁବ୍ ନଗଣ୍ୟ ପରି ମନେହୁଏ । ତେଣୁ ସେ ନିଜକୁ ଅତି ସାନ ବୋଲି ମଣିଛି ।

**(ଖ) ନିର୍ବିକାର ଭାବରେ ଧୂଳିକଣା କ'ଣ ସହେ ?**

ଉ – ପୃଥିବୀର ସକଳ ଜୀବଜନ୍ତୁ ଧରାପଥରେ ପଡ଼ିଥିବା ଧୂଳିକଣା ଉପରେ ଯାତାୟାତ କରିଥା'ନ୍ତି । ତେଣୁ ଧୂଳିକଣା ଜୀବଜନ୍ତୁଙ୍କ ପାଦ ଆଘାତଜନିତ କଷ୍ଟକୁ ନିର୍ବିକାର ଭାବରେ ସହିଥାଏ ।

**(ଗ) କେଉଁ କଥା ଧୂଳିକଣା ଭଲଭାବେ ଜାଣେ ?**

ଉ – ଜଗତର ଦୁଃଖ ସୁଖ ସହିତ ଧୂଳିକଣାର କୌଣସି ସମ୍ପର୍କ ନାହିଁ । ସେ କିନ୍ତୁ ଭଲ ଭାବେ ଜାଣେ ଯେ ବିଶ୍ୱର ସମସ୍ତ ଜୀବଜନ୍ତୁ ମୃତ୍ୟୁ ପରେ ତା' ଦେହରେ ମିଶି ଏକାକାର ହେଉଛନ୍ତି ।

**(ଘ) ଧୂଳିକଣା କାହିଁକି ନିଜର ମଥାକୁ ଦକ୍ଷ ବୋଲି କହିଛି ?**

ଉ – ଧୂଳିକଣା କିଛି କହିପାରେ ନାହିଁ । ସେ ଖୁବ୍ ଦରିଦ୍ର । ତା'ର କେହି ସାହା ଭରସା ନାହାନ୍ତି । ହେଲେ ପୃଥିବୀର ସକଳ ପ୍ରାଣୀଙ୍କ ପଦାଘାତଜନିତ ଚାପକୁ ସେ ମଥାପାତି ନିର୍ବିକାରଭାବେ ସହିନିଏ । ତେଣୁ ସେ ତା'ର ମଥାକୁ ଦକ୍ଷ ବୋଲି କହିଛି ।



୩ । ନିମ୍ନରେ କେତୋଟି ପଦର କିଛି ଅଂଶ ଦିଆଯାଇଛି ଓ କିଛି ଅଂଶ ବାଦ୍ ଦିଆଯାଇଛି; ସଂପୂର୍ଣ୍ଣ ପଦ ଲେଖ ।

(କ) ......................
ପୀଡ଼ଇ ନିତି ମତେ,
ନିର୍ବିକାର ତଥାପି ମୁହିଁ
...................... ।

ଉ – ଜନ୍ତୁ-ଜୀବ ସବୁରି ପାଦ
ପୀଡ଼ଇ ନିତି ମତେ,
ନିର୍ବିକାର ତଥାପି ମୁହିଁ
ପଡ଼ିଛି ଧରାପଥେ ।

(ଖ) ଏତିକି ଜାଣେ ବିଶ୍ୱ ଜୀବ
...................... ।

ଉ – ଏତିକି ଜାଣେ ବିଶ୍ୱ ଜୀବ
ମିଶଇ ମୋର ବୁକେ ।

(ଗ) ସୃଷ୍ଟି ଦିନୁ ଦେଖୁଛି ବସି
......................,
......................
ବିଶ୍ୱେ ଅତି ସାନ ।

ଉ – ସୃଷ୍ଟି ଦିନୁ ଦେଖୁଛି ବସି
ସକଳ ଅଭିଯାନ,
ଆକାଶ ତଳେ ଧୂଳିକଣା ମୁଁ
ବିଶ୍ୱେ ଅତି ସାନ ।

୪ । ସରଳ ଭାଷାରେ ବୁଝାଇ ଲେଖ ।

(କ) 'ଜୀବନେ ମୋର ନାହିଁ ତ କେବେ
କା' ସାଥେ ଅଭିମାନ ।'

*ଉ– ଜୀବନେ ମୋର ...................... ଅଭିମାନ ।*

ଶଂସିତ ପଦ୍ୟାଂଶଟି ନାରୀକବି ବିଦ୍ୟୁତ୍‌ପ୍ରଭା ଦେବୀଙ୍କ ରଚିତ 'ଧୂଳି' କବିତାରୁ ସଂଗୃହୀତ । ଏଠାରେ ଧୂଳିକଣାର କାହା ଉପରେ କିଛି ମାନ ଅଭିମାନ ନାହିଁ ବୋଲି କବି ବର୍ଣ୍ଣନା କରିଛନ୍ତି ।

ଆକାଶତଳେ ଧରାପୃଷ୍ଠରେ ଧୂଳିକଣା ରହିଛି । ଏହି ବିଶ୍ୱରେ ସମସ୍ତ ପଦାର୍ଥ ତୁଳନାରେ ତାହା ଖୁବ୍ ସାନ ଅଟେ । ସେ ଏତେ ଛୋଟ ଯେ, ଅନ୍ୟ ସହିତ ନିଜକୁ ତୁଳନା କରିବାକୁ ଅବସର ପାଏ ନାହିଁ । ସେ ଜୀବନରେ କେବେ କାହା ସହିତ ମାନ ଅଭିମାନ, କଳିତ କରାଳ କରେ ନାହିଁ । ବରଂ ସେ ଏହି ବିଶ୍ୱରେ ସବୁକିଛି କଷ୍ଟକୁ ସହିନେଉଛି ।

ବାସ୍ତବରେ ଏହି କବିତାରେ ଧୂଳିକଣା ଯେ କେଡ଼େ ମହାନ୍, ତାହା ସହଜରେ ଜାଣିହେଉଛି ।

(ଖ) ''ଜନ୍ତୁ ଜୀବ ସବୁରି ପାଦ
ପୀଡ଼ଇ ନିତି ମତେ ।''

*ଉ– ଜନ୍ତୁ ଜୀବ ...................... ନିତି ମତେ ।*

ଶଂସିତ ପଦ୍ୟାଂଶଟି ପଠିତ ସାହିତ୍ୟ ବହିର 'ଧୂଳି' କବିତାରୁ ସଂଗୃହୀତ । ଏଠାରେ ନାରୀକବି ବିଦ୍ୟୁତ୍‌ପ୍ରଭା ଦେବୀ ଧୂଳିକଣାର ଜୀବନଧାରା ସମ୍ପର୍କରେ ଆଲୋକପାତ କରିଛନ୍ତି ।

ଧୂଳିକଣା ଏ ବିଶ୍ୱରେ ସବୁଠାରୁ ସାନ ଅଟେ । ତା'ର କାହା ଉପରେ ମାନ ଅଭିମାନ ନାହିଁ । ବରଂ ପ୍ରତିଦିନ ଏ ସୃଷ୍ଟିର ପ୍ରତ୍ୟେକ ଜୀବଜନ୍ତୁ ନିଜର ପାଦ ଆଘାତରେ ତାକୁ ଅହରହ ପୀଡ଼ା ଦେଇଥା'ନ୍ତି । ସେହିମାନଙ୍କର ପଦାଘାତଜନିତ ପୀଡ଼ାକୁ ସେ ନିର୍ବିକାର ଭାବରେ ସହି ନେଇଥାଏ । ଧରାପୃଷ୍ଠରେ ସେହିପରି ସବୁକୁ ସହିନେଇ ସେ ପଡ଼ି ରହିଥାଏ । ନିଜର

ମୁହଁ ଖୋଲି କାହାରିକୁ କିଛି ଅଭିଯୋଗ ଶୁଣାଏ ନାହିଁ । ବରଂ ଜୀବଜନ୍ତୁମାନଙ୍କୁ ସେ ଆପଣାର ସହନଶୀଳତା ଗୁଣର ଆଦର୍ଶକୁ ଦେଖାଇ ଚାଲିଛି ।

ବାବସ୍ତବରେ ଧୂଳିକଣାର ଏହି ମହାନ୍ ଗୁଣ ଆମ ସମସ୍ତଙ୍କର ଧ୍ୟେୟ ହେବା ଉଚିତ ।

(ଗ) "ଜଗତେ ମୋର କି ଯାଏ ଆସେ
ଦୁଃଖେ ଅବା ସୁଖେ ।"

*ଉ– ଜଗତେ ........................ ଅବା ସୁଖେ ।*

ଶଂସିତ ପଦ୍ୟାଂଶଟି ନାରୀକବି ବିଦ୍ୟୁତପ୍ରଭା ଦେବୀଙ୍କ ରଚିତ 'ଧୂଳି' କବିତାରୁ ସଂଗୃହୀତ । ଏଠାରେ କବି ଧୂଳିକଣା ମୁହଁରେ ଏ ସୃଷ୍ଟିର ଚିରନ୍ତନ ସତ୍ୟକୁ ଉପସ୍ଥାପନ କରିଛନ୍ତି ।

ଧୂଳିକଣା ଖୁବ୍ ସାନ ହେଲେ ମଧ୍ୟ ନିର୍ବିକାର ଭାବରେ ସମସ୍ତଙ୍କର ପଦାଘାତଜନିତ କଷ୍ଟକୁ ସହିନିଏ । ଏ ଦୁନିଆରେ କାହାର ଦୁଃଖ-ସୁଖରେ ସେ ଆଦୌ ଭାଗୀଦାର ନଥାଏ । ବରଂ ନିର୍ବିକାର ଭାବରେ ଧରାପୃଷ୍ଠରେ ପଡ଼ିରହି ସେ ଏସବୁକୁ ଦେଖୁଥାଏ । ତେବେ ଏ ପୃଥିବୀର ଗୋଟିଏ ସତ୍ୟକୁ ସେ ମର୍ମେ ମର୍ମେ ଅନୁଭବ କରିଥାଏ । ସମଗ୍ର ବିଶ୍ୱର ଜୀବଜଗତ ନିଜକୁ ଯେତେ ବଡ଼ ବୋଲି ବିଚାର କଲେ ମଧ୍ୟ ଦିନେ ସେମାନଙ୍କର ମୃତ୍ୟୁ ହେବ । ମୃତ୍ୟୁ ହେଲାପରେ ସେମାନେ ତା' ସହିତ ଧୂଳିହୋଇ ମିଶିଯିବେ । ତେଣୁ ଏହି ସତ୍ୟକୁ ଅନୁଭବ କରି ସେ ନିଜ ମନରେ ଦୁଃଖ ପୋଷଣ କରିନାହିଁ ।

ବାସ୍ତବରେ ଧୂଳିକଣା ଅନୁଭବ କରିଥିବା ଚିରନ୍ତନ ସତ୍ୟଟିର ମହତ୍ତ୍ୱ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

(ଘ) "ସକଳ ଚାପ ନେବାରେ ସହି
ଦକ୍ଷ ଏ ମୋ ଶିର ।"

*ଉ– ସକଳ ଚାପ ........................ ମୋ ଶିର ।*

ଶଂସିତ ପଦ୍ୟାଂଶଟି ପଠିତ ସାହିତ୍ୟ ବହିର 'ଧୂଳି' କବିତାରୁ ସଂଗୃହୀତ । ଏଠାରେ ନାରୀକବି ବିଦ୍ୟୁତ୍‌ପ୍ରଭା ଦେବୀ ଧୂଳି କିପରି ସମସ୍ତ ଦୁଃଖଜନିତ ଚାପକୁ ସହିନେବାରେ ଦକ୍ଷ, ତାହା ବର୍ଣ୍ଣନା କରିଛନ୍ତି ।

ଧୂଳିକଣା ଖୁବ୍ ସାନ । ତଥାପି ସେ ସମସ୍ତଙ୍କର ପାଦର ଚାପ ସହୁଛି । କାହାର ଦୁଃଖ ସୁଖରେ ସେ ଭାଗୀଦାର ନୁହେଁ । ତା'ର ମୁହଁରୁ କଥା ବାହାରୁ ନାହିଁ । ସେ ଖୁବ୍ ଦରିଦ୍ର । ତାହାର କେହି ସାହାଭରସା ନାହାନ୍ତି । ଏସବୁ ସତ୍ତ୍ୱେ ଧୂଳିକଣା ପୃଥିବୀବାସୀଙ୍କର ସମସ୍ତ ଚାପକୁ ନିଜର ମଥାରେ ସହି ନେଉଛି, ଆଉ ରାଜରାସ୍ତାରେ ସେହିପରି ମଥାକୁ ଉନ୍ନତ କରି ପଡ଼ିରହିଛି । ନିଜେ ନିଃସ୍ୱ ହେଲେ ମଧ୍ୟ ସମସ୍ତଙ୍କର ଦୁଃଖକଷ୍ଟକୁ ଯେ ସେ ସହିପାରେ, ଏହା ସେ ମୁକ୍ତକଣ୍ଠରେ ଜଣାଇ ଦେଉଛି ।

ବାସ୍ତବରେ ଧୂଳିକଣାର ଏହି ଆତ୍ମବାଣୀ ବେଶ୍ ହୃଦୟସ୍ପର୍ଶୀ ଅଟେ ।

(ଙ) "ଆକାଶ ତଳେ ଧୂଳିକଣା ମୁଁ
ବିଶ୍ୱେ ଅତି ସାନ ।"

*ଉ– ଆକାଶ ତଳେ ..................... ଅତି ସାନ ।*

ଶଂସିତ ପଦ୍ୟାଂଶଟି 'ଧୂଳି' କବିତାରୁ ସଂଗୃହୀତ । ଏଠାରେ ନାରୀକବି ବିଦ୍ୟୁତ୍‌ପ୍ରଭା ଦେବୀ ଧୂଳିକଣାର କ୍ଷୁଦ୍ରତ୍ୱ ସମ୍ପର୍କରେ ସୂଚାଇଛନ୍ତି ।



ଏ ସୃଷ୍ଟିର ସମସ୍ତ ପଦାର୍ଥ ମଧ୍ୟରେ ଧୂଳିକଣା ଖୁବ୍ ସାନ ଓ ନଗଣ୍ୟ । ସେ ନିର୍ବିକାର ଭାବରେ ଧରାପୃଷ୍ଠରେ ପଡ଼ିରହି ଜୀବଜନ୍ତୁଙ୍କର ପାଦର ପୀଡ଼ାକୁ ସହିଚାଲିଛି । କାହାର ଦୁଃଖ ସୁଖରେ ସେ ଭାଗୀଦାର ନୁହେଁ । ବରଂ ଯେତେ ନିଃସ୍ୱ ହେଲେ ମଧ୍ୟ ସେ ସମସ୍ତ ଚାପକୁ ନିର୍ବିବାଦରେ ଆପଣାର ମଥାପାତି ସହିନେଉଛି । ସୃଷ୍ଟିର ଆରମ୍ଭରୁ ସେ ରହିଛି । ଯେତେସବୁ ପରିବର୍ତ୍ତନ ଏ ସୃଷ୍ଟିରେ ହେଉଛି, ତାହାକୁ ସେ ବସି ଦେଖୁଛି । ତଥାପି ନିଜେ ଖୁବ୍ ଛୋଟ ହେଲେ ମଧ୍ୟ ଏ ସୃଷ୍ଟିର ସର୍ବବିଧ ଲୀଳା ରହସ୍ୟକୁ ଦେଖିବାରେ ସେ ମୂକସାକ୍ଷୀ ପାଲଟିଛି ।

ବାସ୍ତବରେ ଧୂଳିକଣାର ଭୂମିକା ଏ ସୃଷ୍ଟିରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

**୫ । ସମାନ ଅର୍ଥ ବୁଝାଉଥିବା ଆଉ ଗୋଟିଏ ଲେଖାଏଁ ଶବ୍ଦ ଲେଖ ।**

| | |
|---|---|
| (କ) ଜୀବନ | ଉ – (କ) ଜୀବନ – ପ୍ରାଣ |
| (ଖ) ଧରା | (ଖ) ଧରା – ବସୁଧା |
| (ଗ) ଜନ୍ତୁ | (ଗ) ଜନ୍ତୁ – ପ୍ରାଣୀ |
| (ଘ) ନିଃସ୍ୱ | (ଘ) ନିଃସ୍ୱ – ଦରିଦ୍ର |
| (ଙ) ଦକ୍ଷ | (ଙ) ଦକ୍ଷ – ସମର୍ଥ |

**୬ । ଗଦ୍ୟ ଆକାରରେ ଲେଖ ।**

(କ) ନିର୍ବିକାରେ ତଥାପି ମୁହିଁ ପଡ଼ିଛି ଧରାପଥେ ।

ଉ– ମୁଁ ତଥାପି ନିର୍ବିକାର ଭାବରେ ଧରାପଥରେ ପଡ଼ି ରହିଛି ।

(ଖ) ଜଗତେ ମୋର କି ଯାଏ ଆସେ ଦୁଃଖେ ଅବା ସୁଖେ ।

ଉ – ଜଗତର ଦୁଃଖ ସୁଖରେ ମୋର ବା କ'ଣ ଯାଏ ଆସେ ଅଛି ।

(ଗ) ବାକ୍ୟହୀନ ନିଃସ୍ୱ ମୁହିଁ ଭରସାହୀନ ଚିର ।

ଉ – ମୁଁ ବାକ୍ୟହୀନ, ନିଃସ୍ୱ ଓ ସର୍ବଦା ଭରସାହୀନ ଅଟେ ।

(ଘ) ସକଳ ଚାପ ନେବାରେ ସହି ଦକ୍ଷ ଏ ମୋ ଶିର ।

ଉ – ମୋର ଏହି ମଥା ସବୁପ୍ରକାରର ଚାପକୁ ସହିନେବାକୁ ସମର୍ଥ ଅଟେ ।

**୭ । 'କ' ସ୍ତମ୍ଭରେ ଥିବା ଶବ୍ଦର ଅର୍ଥ 'ଖ' ସ୍ତମ୍ଭରୁ ବାହାର କରି ଖାତାରେ ଲେଖ ଓ 'କ' ସ୍ତମ୍ଭର ପ୍ରତ୍ୟେକ ଶବ୍ଦକୁ ନେଇ ବାକ୍ୟ ଗଠନ କର ।**

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ଚିର | ଯାହାର କିଛି ନାହିଁ |
| ଶିର | ଦୁନିଆଁ |
| ଜଗତ | ସର୍ବଦା |
| ନିଃସ୍ୱ | ମୁଣ୍ଡ |
| | ଆକାଶ |

ଉ– ଚିର – ସର୍ବଦା

ଶିର – ମୁଣ୍ଡ

ଜଗତ – ଦୁନିଆଁ

ନିଃସ୍ୱ – ଯାହାର କିଛି ନାହିଁ

ଚିର – ମାର୍କୋନୀ ରେଡ଼ିଓ ଉଦ୍ଭାବନ କରି ଚିରକାଳ ପାଇଁ ଯଶ ରଖିଗଲେ ।

ଶିର – ରାଜାଙ୍କ ଶିରରେ ମୁକୁଟ ଶୋଭାପାଏ ।

ଜଗତ – ଜଗତରେ ବହୁ ପ୍ରାଣୀ ରହିଛନ୍ତି ।

ନିଃସ୍ୱ – ହରିବାବୁ ନିଃସ୍ୱ ହୋଇ କାଳ କାଟୁଛନ୍ତି ।

### ତୁମ ପାଇଁ କାମ

୧ । ନାରୀକବି ବିଦ୍ୟୁତ୍‌ପ୍ରଭାଙ୍କର ଅନ୍ୟ କବିତା ବହି ସଂଗ୍ରହ କରି ପଢ଼ ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧ । ସଂକ୍ଷେପରେ ଉତ୍ତର ଦିଅ ।

(କ) ଧୂଳିକଣା କେଉଁ ଚିରନ୍ତନ ସତ୍ୟକୁ ପ୍ରକାଶ କରିଛି ?

ଉ– ଏ ସୃଷ୍ଟିରେ ସମସ୍ତେ ତା'ଠାରୁ ବଡ଼ । ସେ ଖୁବ୍ ସାନ ଓ ନଗଣ୍ୟ । ମାତ୍ର ଜଗତର ସମସ୍ତ ବିରାଟ ଜୀବଜନ୍ତୁ ଶେଷରେ ତା'ରି ଦେହରେ ଧୂଳିହୋଇ ମିଶିଯିବେ । ଏହି ଚିରନ୍ତନ ସତ୍ୟକୁ ଧୂଳିକଣା ପ୍ରକାଶ କରିଛି ।

(ଖ) କବି ଧୂଳିକଣା ମାଧ୍ୟମରେ ଜଗତବାସୀଙ୍କୁ କେଉଁ ବାର୍ତ୍ତା ପ୍ରଦାନ କରିଛନ୍ତି ?

ଉ– ଧୂଳିକଣା ଯେପରି କାହାର ସୁଖ-ଦୁଃଖରେ ଭାଗୀଦାର ନୁହେଁ, ସେହିପରି ଆମ୍ଭେମାନେ ଅନ୍ୟର କଥାରେ ମୁଣ୍ଡ ପୂରାଇବା ଅନୁଚିତ । ନିର୍ବିକାର ଭାବରେ ସମସ୍ତ ଦୁଃଖ ସହି ଧୂଳିକଣା ଆପଣାର ମଥାକୁ ଉନ୍ନତ ରଖିବା ଉଚିତ ।

୨ । ସଂକ୍ଷେପରେ ଉତ୍ତର ଦିଅ ।

(କ) ନିର୍ବିକାର ଭାବରେ ଧୂଳିକଣା କ'ଣ ସହେ ?

ଉ– ପୃଥିବୀର ସକଳ ଜୀବଜନ୍ତୁ ଧରାପଥରେ ପଡ଼ିଥିବା ଧୂଳିକଣା ଉପରେ ଯାତାୟାତ କରିଥା'ନ୍ତି । ତେଣୁ ଧୂଳିକଣା ଜୀବଜନ୍ତୁଙ୍କ ପାଦ ଆଘାତଜନିତ କଷ୍ଟକୁ ନିର୍ବିକାର ଭାବରେ ସହିଥାଏ ।

(ଖ) ଧୂଳିକଣା କେଉଁ କଥା ଭଲଭାବେ ଜାଣେ ?

ଉ– ଜଗତର ଦୁଃଖ ସୁଖ ସହିତ ଧୂଳିକଣାର କୌଣସି ସମ୍ପର୍କ ନାହିଁ । ସେ କିନ୍ତୁ ଭଲ ଭାବେ ଜାଣେ ଯେ ବିଶ୍ୱର ସମସ୍ତ ଜୀବଜନ୍ତୁ ମୃତ୍ୟୁ ପରେ ତା' ଦେହରେ ମିଶି ଏକାକାର ହେଉଛନ୍ତି ।



(ଗ) ଧୂଳିକଣା କାହିଁକି ନିଜକୁ ନିଃସ୍ୱ ଓ ଭରସାହୀନ ବୋଲି କହିଛି ?

ଉ– ସୃଷ୍ଟିରେ ସବୁଠାରୁ କ୍ଷୁଦ୍ର ଧୂଳିକଣା ସମ୍ବଳହୀନ ଓ ନିଃସହାୟ । ତେଣୁ ଧୂଳିକଣା ନିଜକୁ ନିଃସ୍ୱ ଓ ଭରସାହୀନ ବୋଲି କହିଛି ।

(ଘ) ଧୂଳିକଣା କାହିଁକି ନିଜର ମଥାକୁ ଦକ୍ଷ ବୋଲି କହିଛି ?

ଉ– ଧୂଳିକଣା ଖୁବ୍ ସାନ ହେଲେହେଁ ପୃଥିବୀର ସକଳ ପ୍ରାଣୀଙ୍କର ପଦାଘାତଜନିତ ଚାପକୁ ମଥାପାତି ସହିନିଏ । ତେଣୁ ସେ ନିଜର ମଥାକୁ ଦକ୍ଷ ବୋଲି କହିଛି ।

୩ । ସରଳଭାଷାରେ ବୁଝାଇ ଲେଖ ।

''ଏତିକି ଜାଣେ ବିଶ୍ୱଜୀବ
ମିଶଇ ମୋର ବୁକେ ।''

ଉ – *''ଏତିକି ............................ ବୁକେ ।''*

ଶଂସିତ ପଦ୍ୟାଂଶଟି ପଠିତ ସାହିତ୍ୟ ବହିର 'ଧୂଳି' କବିତାରୁ ସଂଗୃହୀତ । ଏଠାରେ ନାରୀକବି ବିଦ୍ୟୁତ୍‌ପ୍ରଭା ଦେବୀ ମୃତ୍ୟୁପରେ ସକଳଜୀବ କିପରି ଧୂଳିକଣାରେ ମିଶିଯାଆନ୍ତି, ସେ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି ।

ଧୂଳିକଣା ଆକାରରେ ଅତିକ୍ଷୁଦ୍ର । ତା'ର ମନରେ ଗର୍ବ ଅହଙ୍କାର ବୋଲି କିଛି ନାହିଁ । ପ୍ରତିଦିନ ସେ ଏ ଜଗତର ପ୍ରତିଟି ଜୀବର ପଦାଘାତକୁ ନିର୍ବିକାରରେ ସହିନେଉଛି । ଏ ଦୁନିଆରେ କିଏ କେତେ ସୁଖ ଭୋଗ କଲା ବା କିଏ କେତେ ପରିମାଣରେ ଦୁଃଖ ପାଇଲା, ସେସବୁ କଥାରେ ଧୂଳିକଣା ମୁଣ୍ଡ ଖେଳେଇବାକୁ ଚାହିଁନଥାଏ । ତା'ର ସେସବୁରୁ କିଛି ମିଳିନଥାଏ । ବରଂ ସେ ଗୋଟିଏ ଚିରନ୍ତନ ସତ୍ୟକୁ ମର୍ମେ ମର୍ମେ ଅନୁଭବ କରିଛି ଯେ ବିଶ୍ୱର ପ୍ରତ୍ୟେକ ଜୀବ ନିଜର ଲୀଳା ଖେଳା ଶେଷ କରି ପରିଶେଷରେ ତାହାରି ବୁକୁରେ ଏକାକାର ହୋଇଯିବେ ଅର୍ଥାତ୍ ଏତେ ଅହଙ୍କାର କରୁଥିବା ବଡ଼ ବଡ଼ ପ୍ରାଣୀ ଶେଷରେ ତା'ସହିତ ଧୂଳିକଣା ହୋଇ ଏକାକାର ହୋଇଯିବେ । ଏହି ଚିରନ୍ତନ ସତ୍ୟକୁ ଧୂଳିକଣା ଭଲ ଭାବରେ ଅନୁଭବ କରି ସାରିଛି ।

ବାସ୍ତବରେ କବିଙ୍କର ଏହି ଉକ୍ତି ବେଶ୍ ଚିନ୍ତାମୂଳକ ।

୪ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।

(କ) କେଉଁ କଥା ଧୂଳିକଣା ଭଲଭାବରେ ଜାଣେ ?

କିମ୍ବା, ବିଶ୍ୱଜୀବଙ୍କ ବିଷୟରେ ଧୂଳିକଣା କ'ଣ କହିଛି ?

ଉ– ବିରାଟ ପୃଥିବୀରେ ଧୂଳିକଣା ନଗଣ୍ୟ ହେଲେ ବି ଅଭିମାନ ଭାବ ପ୍ରକାଶ କରିନାହିଁ । ସେ ମହତ୍‌କାର୍ଯ୍ୟ ସାଧନ କରି ଚାଲିଛି । ସକଳ ଜୀବଜନ୍ତୁଙ୍କ ପଦାଘାତ ତାକୁ ନିତି ଅଶେଷ ପୀଡ଼ା ଦେଉଛି । ତା'ର କଷ୍ଟ ଓ ସହିବାର ଶେଷ ନାହିଁ । ସେ ନିର୍ବିକାର ଭାବେ ସବୁ ସହି ନେଉଛି । ତା' ମଧ୍ୟରେ ତା'ର ବିରାଟପଣ ଓ ଉଦାରତା ଲୁକ୍କାୟିତ ହୋଇ ରହିଛି । ଜଗତର ଦୁଃଖ ସୁଖ ସହ ତା'ର ମଧ୍ୟ କୌଣସି ସମ୍ପର୍କ ନାହିଁ । ସେ କାହା ଦୁଃଖରେ ଦୁଃଖୀ ବା କାହା ସୁଖରେ ସୁଖୀ ହୁଏ ନାହିଁ । ସେ କିନ୍ତୁ ଜଗତର ଚିରନ୍ତନ ସତ୍ୟକୁ ଭଲ ଭାବେ ଜାଣିଛି । ସମସ୍ତ ଜୀବ ଦିନେ ନା ଦିନେ ମୃତ୍ୟୁବରଣ କରିବେ ଓ ଧରାପୃଷ୍ଠରେ ଧୂଳିକଣା ବକ୍ଷରେ ମିଶିଯିବେ । ଧୂଳିକଣା ସେମାନଙ୍କୁ ସାଦରେ କୋଳେଇ ନେବ ।

(ଖ) 'ଧୂଳି' କବିତା ଆମକୁ କ'ଣ ଶିକ୍ଷା ଦେଉଛି ?

ଉ– ନାରୀ କବି ବିଦ୍ୟୁତ୍‌ପ୍ରଭା ଦେବୀଙ୍କ ରଚିତ *'ଧୂଳି'* କବିତାଟି ଏକ ଶିକ୍ଷଣୀୟ କବିତା । କ୍ଷୁଦ୍ରଠାରେ କିପରି ମହାନତା ପ୍ରକାଶ ପାଏ ତାହା ଏହି କବିତାରେ ବର୍ଣ୍ଣିତ ହୋଇଛି । ଧୂଳିକଣା ପୃଥିବୀରେ ସବୁଠାରୁ କ୍ଷୁଦ୍ର ବସ୍ତୁ; ମାତ୍ର ସକଳ ଜୀବଜନ୍ତୁଙ୍କୁ ସେ ତା' ବକ୍ଷରେ ଧାରଣ କରିଛି । ସେମାନଙ୍କ ପାଦର ଅସହ୍ୟ ଆଘାତକୁ ହସି ହସି ସହିଯାଉଛି । ଶେଷରେ ବିଶ୍ୱର ସମସ୍ତ ଜୀବ ମୃତ୍ୟୁପରେ ମଧ ତା' ଦେହରେ ମିଶିଯାଉଛନ୍ତି । କୌଣସି ଘାତପ୍ରତିଘାତ ବା ଦୁଃଖ ତାକୁ ତା' ଲକ୍ଷ୍ୟପଥରୁ ବିଚ୍ୟୁତ କରିପାରି ନାହିଁ । ତେଣୁ ଧୂଳିକଣା ଜୀବନରୁ ଆମେ ଶିକ୍ଷା ପାଉଛୁ ଯେ କ୍ଷୁଦ୍ର ହେୟ ନୁହେଁ । ଆମେ ସବୁ ଦୁଃଖ ଯାତନାକୁ ହସି ହସି ସହିଯିବା ଓ ପରୋପକାର ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିବା ।

(ଗ) ଧୂଳିକଣା ନିଜର ମଥାକୁ କାହିଁକି ଦକ୍ଷ ବୋଲି ଭାବିଛି ?

ଉ– ନାରୀକବି ବିଦ୍ୟୁତ୍‌ପ୍ରଭା ଦେବୀଙ୍କ *'ଧୂଳି'* କବିତାଟି ଏକ ଉଦାର ଭାବନା ସମ୍ବଳିତ କବିତା । ଏ ବିଶାଳ ବିଶ୍ୱରେ ଧୂଳିକଣା ଖୁବ୍ ସାନ ଓ ନଗଣ୍ୟ । ତାକୁ କେହି ଗୁରୁତ୍ୱ ପ୍ରଦାନ କରନ୍ତି ନାହିଁ । ତଥାପି ସେ ନିଜ ଗୁଣରେ ଗରୀୟାନ । ନାରୀକବିଙ୍କ ବର୍ଣ୍ଣନାରେ ଧୂଳିକଣା ନିର୍ବାକ୍ । ସେ କିଛି କହିପାରେ ନାହିଁ । ସେ ନିଃସ୍ୱ, ତା'ର କେହି ସାହା ଭରସା ନାହାନ୍ତି । ତଥାପି ସେ ଅନ୍ୟ ବିରାଟ ଓ କ୍ଷୁଦ୍ର ଜୀବମାନଙ୍କୁ ନିଜ ବକ୍ଷରେ ସ୍ଥାନ ଦେଇ ଭରସା ଦେଇଛି । ସେମାନଙ୍କ ପାଇଁ ସମ୍ବଳ ପାଲଟିଛି । ପୃଥିବୀର ସକଳ ଜୀବଙ୍କ ପଦାଘାତଜନିତ କଷ୍ଟକୁ ସେ ନିର୍ବିକାର ଚିତ୍ତରେ ସହି ନେଉଛି । କେବେ କୌଣସି ପ୍ରତିବାଦ କରିନି । ତେଣୁ ଧୂଳିକଣା ନିଜ ମଥାକୁ ଦକ୍ଷ ବୋଲି କହିଛି ।



# ଗଦ୍ୟ ବିଭାଗ

## ବନବାଣୀ

• *ଗୋପବନ୍ଧୁ ଦାସ*
*ଜନ୍ମ : ୯.୧୦.୧୮୭୭*
*ମୃତ୍ୟୁ : ୧୭.୬.୧୯୨୮*

### ଲେଖକ ପରିଚୟ

ପଣ୍ଡିତ ଗୋପବନ୍ଧୁ ଦାସ (୧୮୭୭ - ୧୯୨୮) ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ନିକଟବର୍ତ୍ତୀ ସୁଆଣ୍ଡୋ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରି ସେ ବହୁବାର କାରାବରଣ କରିଥିଲେ । ଏଥି ସହିତ ସାହିତ୍ୟ ସାଧନା ତାଙ୍କ ଜୀବନର ଅନ୍ୟତମ ଅଙ୍ଗ ଥିଲା । *ସତ୍ୟବାଦୀ ବନବିଦ୍ୟାଳୟ*, *'ସତ୍ୟବାଦୀ'* ପତ୍ରିକା ଓ ଦୈନିକ ସମ୍ବାଦପତ୍ର *'ସମାଜ'* ର ସେ ପ୍ରତିଷ୍ଠାତା । ସେ *'ଉତ୍କଳମଣି'* ନାମରେ ପରିଚିତ । ତାଙ୍କ ରଚିତ ପୁସ୍ତକଗୁଡ଼ିକ ମଧ୍ୟରେ *'ବନ୍ଦୀର ଆତ୍ମକଥା'*, *'କାରା କବିତା'*, *'ଧର୍ମପଦ'* ଓ *'ଗୋ-ମାହାତ୍ମ୍ୟ'* ପ୍ରଧାନ ।

### ବିଷୟ ସୂଚନା

ଭାରତୀୟ ସଂସ୍କୃତି ତଥା ସଭ୍ୟତାର ବିକାଶ ଦିଗରେ ଅରଣ୍ୟର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଅଟେ । ଯୋଗୀ ଋଷିମାନେ ଏହି ଅରଣ୍ୟରେ ଆଶ୍ରମ ସ୍ଥାପନ କରି ସାଧନାରତ ଥିଲେ । ଅରଣ୍ୟ ଥିଲା ଭାରତୀୟ ଶିକ୍ଷାକେନ୍ଦ୍ରର ପୀଠସ୍ଥଳ । ବହୁ କାବ୍ୟ-କବିତାରେ ଅରଣ୍ୟର ବର୍ଣ୍ଣନା ଦେଖିବାକୁ ମିଳେ । ଆଜି ଅରଣ୍ୟ ଲୋପ ପାଇଥିଲେ ମଧ ତା'ର ସ୍ମୃତି ଭାରତୀୟଙ୍କ ମନରୁ ଲୋପ ପାଇନାହିଁ । ବନବାଣୀ ହିଁ ଭାରତର ବାଣୀ । ଏହାର ପୁନରୁଦ୍ଧାର କରାଯିବା ଆବଶ୍ୟକ । ଏହା ହିଁ ଉକ୍ତ *'ବନବାଣୀ'* ପ୍ରବନ୍ଧରେ ପ୍ରତିପାଦିତ ବିଷୟବସ୍ତୁ ।

### ସାରକଥା

ଅରଣ୍ୟ ଭାରତୀୟ ସଭ୍ୟତାର କେନ୍ଦ୍ର । ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ବର୍ତ୍ତମାନ ଭାରତ ପ୍ରଭାବିତ ହେଲେ ମଧ କେଉଁ ଅନାଦିକାଳରୁ ଭାରତର ମହାପୁରୁଷଗଣ ଅରଣ୍ୟକୁ ନିଜର ସାଧନା ଓ ସିଦ୍ଧିର ସ୍ଥାନରୂପେ ନିରୂପଣ କରିଥିଲେ । ଭାରତୀୟ ସଭ୍ୟତାର ମୂଳଭିତ୍ତି ଓ ସମସ୍ତ ତତ୍ତ୍ୱ ଏହି ବନପ୍ରଦେଶରେ ହିଁ ଆବିର୍ଭୂତ ହୋଇଥିଲା । ଏହା ଯୋଗୀ ଋଷିଙ୍କର ସାଧନାର ପୀଠସ୍ଥଳୀ ଥିଲା । ବାଲ୍ୟକାଳରେ ଭାରତର ସନ୍ତାନଗଣ ଏହି ଆର୍ଯ୍ୟଋଷିଙ୍କର ଚରଣତଳେ ବସି ଶିକ୍ଷା ଲାଭ କରୁଥିଲେ । ଏପରିକି ରାଜା, ମହାରାଜାଗଣ ଜୀବନର ଅନ୍ତିମଭାଗରେ ରାଜ୍ୟ, ଧନସମ୍ପଦ ଛାଡ଼ି ଏହି ଅରଣ୍ୟରେ ଆଶ୍ରୟ ନେଇ ଜୀବନକୁ ଧନ୍ୟ ମଣୁଥିଲେ ।

ଭାରତର କାବ୍ୟ, ନାଟକ, ପୁରାଣ ଆଦିରେ ଅରଣ୍ୟର ଗୌରବ ବର୍ଣ୍ଣିତ ହୋଇଛି । *'ଶକୁନ୍ତଳା'*, *'କୁମାର ସମ୍ଭବ'*, *'ଉତ୍ତର ରାମଚରିତ'* ପ୍ରଭୃତି ସାହିତ୍ୟରେ ଯଦି ବନର ଚିତ୍ର ସନ୍ନିବେଶିତ ହୋଇନଥା'ନ୍ତା, ତେବେ ସେଥିରେ କବିଙ୍କର ପୂର୍ଣ୍ଣପ୍ରାଣତା ପ୍ରକାଶ ପାଇଥା'ନ୍ତା କି ନା ସନ୍ଦେହ । ଭାରତୀୟ ଭାବୁକମାନେ ଯୁଗେ ଯୁଗେ ପ୍ରକୃତିକୁ ପବିତ୍ର ପ୍ରେରଣାର ମୂଳ ନିଦାନ ବୋଲି ଗ୍ରହଣ କରିଛନ୍ତି । ପ୍ରକୃତି ସେମାନଙ୍କ ପାଇଁ ଜଡ଼ ନହୋଇ ମହାଶକ୍ତି ପାଲଟିଛି । ସେମାନେ ପ୍ରକୃତି ସହିତ

ଏହି ଘନିଷ୍ଠ ମିଳନଦ୍ୱାରା ବିଶ୍ୱପ୍ରାଣରେ ନିଜ ପ୍ରାଣ ଏବଂ ନିଜ ପ୍ରାଣରେ ବିଶ୍ୱପ୍ରାଣକୁ ଅନୁଭବ କରିପାରୁଥିଲେ । ମହାକାବ୍ୟରେ ବର୍ଣ୍ଣିତ ମହାପୁରୁଷଗଣ ସମାଜର ନେତୃତ୍ୱ ନେବା ଆଗରୁ ଜୀବନର ସଂଯମ ଏବଂ ସାଧନା ନିମିତ୍ତ ଦୀର୍ଘକାଳ ଅରଣ୍ୟରେ ଅତିବାହିତ କରୁଥିଲେ । ରାମଚନ୍ଦ୍ରଙ୍କୁ ଅଯୋଧ୍ୟା ସିଂହାସନରେ ବସିବା ପୂର୍ବରୁ ଅରଣ୍ୟ ପ୍ରଦେଶରେ ଚଉଦବର୍ଷ କାଳ ନାନାବିଧ ଦୁଃଖ ଦୁର୍ବିପାକ ଭୋଗ କରିବାକୁ ପଡ଼ିଛି । କାରଣ ଏହିଭଳି ଅବସ୍ଥାରେ ନ ପଡ଼ିଲେ ଜୀବନର ବାସ୍ତବିକତା ସମ୍ବନ୍ଧରେ ମନୁଷ୍ୟର ଯଥାର୍ଥ ଜ୍ଞାନ ଜନ୍ମେ ନାହିଁ । ମହାଭାରତରେ ପଞ୍ଚୁପାଣ୍ଡବଙ୍କୁ ମଧ୍ୟ ରାଜ୍ୟଲାଭ ପୂର୍ବରୁ ଅଜ୍ଞାତ ବନବାସରେ ଏହିପରି ଦୀର୍ଘ ସାଧନା ମଧ୍ୟଦେଇ ଯିବାକୁ ପଡ଼ିଛି । ଅରଣ୍ୟର ଏହି ତରୁଲତାଗଣ ଭାରତୀୟ ଭାବୁକଙ୍କ କାନରେ ନୀରବ ବାଣୀ କହିବା ସହିତ ସେମାନଙ୍କ ପ୍ରାଣରେ କି ଅପୂର୍ବ ଭାବ ଜନ୍ମାଉଥିଲେ ଯେ ସେମାନେ ବନସ୍ପତିର ମାହାତ୍ମ୍ୟ ପ୍ରାଣରେ ଅନୁଭବ କରୁଥିଲେ ।

ଆଜି ସେଦିନ ଆଉ ନାହିଁ । ଭାରତର ସଭ୍ୟତା ଓ ଚିନ୍ତାର ଗତି କେତେକ ପରିମାଣରେ ବାହ୍ୟିକ ପ୍ରଭାବରେ ପରିବର୍ତ୍ତିତ ହୋଇଛି । ଆଜି ସିନା ଋଷି ଆଶ୍ରମ ନାହିଁ କି ବନପ୍ରଦେଶ ଶିଷ୍ୟଗଣଙ୍କ ବେଦଧ୍ୱନିରେ ମୁଖରିତ ହେଉନାହିଁ; ହେଲେ ତା'ର ସ୍ମୃତି ଭାରତବାସୀଙ୍କ ହୃଦୟରୁ ଏକାବେଳକେ ବିଲୁପ୍ତ ହୋଇନାହିଁ କି ହେବ ନାହିଁ । ବନବାଣୀ ହିଁ ଭାରତର ବାଣୀ । ଏହା ହିଁ ଏ ଦେଶ ସଭ୍ୟତାର ବିଶେଷତ୍ୱ । କୌଣସି ବିଶେଷତ୍ୱ ଲୋପ ପାଇବା ଅର୍ଥ ସେ ଦେଶ ବା ଜାତିର ବିଲୟ । ଏହି ଲୁପ୍ତପ୍ରାୟ ଜାତୀୟ ବିଶେଷତ୍ୱର ପୁନରୁଦ୍ଧାର ଆଶା ଅନେକଙ୍କ ହୃଦୟରେ ବର୍ତ୍ତମାନ ଜାଗିଅଛି ।

## କଠିନ ଶବ୍ଦାର୍ଥ

ଅରଣ୍ୟ – ବଣ । ପାଶ୍ଚାତ୍ୟ – ବିଦେଶ (ଆମ ଦେଶର ପଶ୍ଚିମରେ ଥିବା ଦେଶ) । ଆବହମାନ – ଚିରପ୍ରଚଳିତ । ଅଦ୍ୟାପି – ଏବେ ମଧ୍ୟ । ମୂଳଭିତ୍ତି – ମୂଳଦୁଆ । ବିଦ୍ୟମାନ – ରହିଛି । ଆବିର୍ଭାବ – ପ୍ରକାଶ । ଅଧିଷ୍ଠାନ – ଅବସ୍ଥିତି । ଚରଣତଳେ – ପାଦତଳେ । ଏମନ୍ତ – ଏପରି । ଶେଷ ଦଶା – ଶେଷ ଭାଗ । କୃତାର୍ଥ – ଧନ୍ୟ, ଚରିତାର୍ଥ । ଗୌରବ - ଉତ୍କର୍ଷ । ପ୍ରକଟିତ – ପ୍ରକାଶିତ । ଘଟଣାସକଳ – ଘଟଣାସବୁ । ସନ୍ନିବେଶ – ଯୋଡ଼ିବା, ଏକାଠି କରିବା । ନିଦାନ – ମୂଳ କାରଣ । ଜଡ଼ – ଯାହାର ଜୀବନ ନାହିଁ । ଆଲେଖ୍ୟ – ଚିତ୍ର । ଦୁର୍ବିପାକ – ଦୁର୍ଯୋଗ, ବିପତ୍ତି । ନିରୁଦ୍ଦେଶ୍ୟ – ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନଥିବା । ଅଜ୍ଞାତ – ଅଜଣା । ଭାବୁକ – ଯେ ଭାବନା କରେ । ସନସନ – ଗଛର ପତ୍ର ପବନରେ ହଲିବାର ଶବ୍ଦ । ବିହଙ୍ଗକୁଳ – ପକ୍ଷୀସମୂହ । କୋଳାହଳ – ଘୋ ଘୋ ଶବ୍ଦ । ବନସ୍ପତି – ବୃକ୍ଷ । ବାହ୍ୟିକ – ବାହାରର । ମାହାତ୍ମ୍ୟ - ମହତ୍ତ୍ୱ, ଗୌରବ, ମହିମା । ମୁଖରିତ – ଧ୍ୱନିତ । ବିଲୁପ୍ତ – ସଂପୂର୍ଣ୍ଣ ଲୋପ । ବିଲୟ – ବିଲୋପ । ପୁନରୁଦ୍ଧାର - ଆଉଥରେ ଉଦ୍ଧାର । ଜାଗିଅଛି – ଚେଇଁ ଉଠିଛି ।

## ସୂଚନା

**ଶକୁନ୍ତଳା** – ଏହା ଏକ ନାଟକ । ମହାକବି କାଳିଦାସ ଏହାର ଲେଖକ । ସଂସ୍କୃତରେ ଏହାର ନାମ *'ଅଭିଜ୍ଞାନ ଶାକୁନ୍ତଳମ୍'* ଅଟେ । ଏଥିରେ ରାଜା ଦୁଷ୍ୟନ୍ତ ଓ ମୁନିକନ୍ୟା ଶକୁନ୍ତଳାଙ୍କ କଥା ବର୍ଣ୍ଣିତ ହୋଇଛି ।

**କୁମାର ସମ୍ଭବ** – ଏହା ମହାକବି କାଳିଦାସଙ୍କ ରଚିତ ଏକ ମହାକାବ୍ୟ । ଏଥିରେ ପାର୍ବତୀଙ୍କର ତପସ୍ୟା, କାର୍ତ୍ତିକେୟଙ୍କ ଜନ୍ମ ଓ ସମ୍ବରାସୁର ବଧ କଥା ବର୍ଣ୍ଣିତ ହୋଇଛି ।

**ଉତ୍ତର ରାମଚରିତ** – ଏହି ସଂସ୍କୃତ ନାଟକର ଲେଖକ ଭବଭୂତି । ଏଥିରେ ରାମ ବନବାସ ପରେ ଘଟିଥିବା ଘଟଣା ବର୍ଣ୍ଣିତ ହୋଇଛି ।

**ପଞ୍ଚୁପାଣ୍ଡବ** – ମହାଭାରତର ପଞ୍ଚୁପାଣ୍ଡବ ହେଲେ ଯୁଧିଷ୍ଠିର, ଭୀମ, ଅର୍ଜୁନ, ସହଦେବ ଓ ନକୁଳ ।



# ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ପୁରାତନ ଭାରତର ଛାତ୍ରମାନେ କେଉଁ ସ୍ଥାନରେ ରହି ଶିକ୍ଷାଲାଭ କରୁଥିଲେ ?**

ଉ – ପୁରାତନ ଭାରତରେ ଛାତ୍ରମାନେ ଅରଣ୍ୟରେ ଆର୍ଯ୍ୟଋଷିମାନଙ୍କ ଚରଣତଳେ ବସି ଶିକ୍ଷାଲାଭ କରୁଥିଲେ ।

**(ଖ) କେଉଁମାନଙ୍କର ପବିତ୍ର ସ୍ମୃତି ଏବେ ବି ଭାରତୀୟଙ୍କ ପ୍ରାଣରେ ଗୌରବ ଜନ୍ମାଉଛି ?**

ଉ – ଭାରତୀୟ ଯୋଗୀ ଋଷିମାନଙ୍କର ପବିତ୍ର ସ୍ମୃତି ଏବେ ମଧ୍ୟ ଭାରତୀୟଙ୍କ ପ୍ରାଣରେ ଗୌରବ ଜନ୍ମାଉଛି ।

**(ଗ) ରାଜା ମହାରାଜାମାନେ ଜୀବନରେ କାହାର ଆଶ୍ରୟ ନେଇ ନିଜକୁ କୃତାର୍ଥ ମଣୁଥିଲେ ?**

ଉ – ରାଜା ମହାରାଜାମାନେ ଜୀବନର ଶେଷ ଦଶାରେ 'ମୁନିବନ ତରୁଛାୟା'ର ଆଶ୍ରୟ ନେଇ ନିଜକୁ କୃତାର୍ଥ ମଣୁଥିଲେ ।

**(ଘ) ଭାରତର କେଉଁ ପ୍ରାଚୀନ କାବ୍ୟ, ନାଟକ ଆଦିରେ ଅରଣ୍ୟର କଥା କୁହାଯାଇଛି ?**

ଉ – ପ୍ରାଚୀନ ନାଟକ *'ଶକୁନ୍ତଳା'*, *'ଉତ୍ତର ରାମଚରିତ'* ଓ କାବ୍ୟ *'କୁମାର ସମ୍ଭବ'* ରେ ଅରଣ୍ୟର କଥା କୁହାଯାଇଛି ।

୨ । ପଠିତ ପ୍ରବନ୍ଧରୁ ନିମ୍ନ ପ୍ରଶ୍ନଗୁଡ଼ିକର ଉତ୍ତର ଖୋଜି ଲେଖ ।

**(କ) ଭାରତୀୟ ଭାବୁକମାନେ କାହିଁକି ପ୍ରକୃତିକୁ ସମସ୍ତ ପ୍ରେରଣାର ଉତ୍ସ ବୋଲି ଗ୍ରହଣ କରିଛନ୍ତି ?**

ଉ – ଭାରତୀୟ ଭାବୁକମାନେ ପ୍ରକୃତିକୁ ସମସ୍ତ ପ୍ରେରଣାର ଉତ୍ସ ବୋଲି ଗ୍ରହଣ କରିଛନ୍ତି କାରଣ ସେମାନଙ୍କ ଦୃଷ୍ଟିରେ ପ୍ରକୃତି ନିର୍ଜୀବ ଓ ଜଡ଼ ନୁହେଁ । ବରଂ ତାହା ଏକ ମହାଶକ୍ତି ରୂପେ ବିଦ୍ୟମାନ ହୋଇ ପ୍ରତି ମୁହୂର୍ତ୍ତରେ ପ୍ରେରଣା ଦେଉଥିଲା । ଏହା ସଙ୍ଗେ ସେମାନଙ୍କର ପ୍ରକୃତି ସହିତ ଘନିଷ୍ଠ ମିଳନ ଘଟୁଥିବାରୁ ସେମାନେ ବିଶ୍ୱପ୍ରାଣରେ ନିଜ ପ୍ରାଣ ଏବଂ ନିଜ ପ୍ରାଣରେ ବିଶ୍ୱପ୍ରାଣକୁ ଅନୁଭବ କରି ପାରୁଥିଲେ ।

**(ଖ) ମହାକାବ୍ୟରେ ବର୍ଣ୍ଣିତ ମହାପୁରୁଷମାନେ କାହିଁକି ଅରଣ୍ୟରେ ସମୟ ଅତିବାହିତ କରୁଥିଲେ ?**

ଉ – ମହାକାବ୍ୟରେ ବର୍ଣ୍ଣିତ ମହାପୁରୁଷଗଣ ସଂସାର କ୍ଷେତ୍ରରେ ସମାଜର ନେତୃତ୍ୱ ନେବା ପୂର୍ବରୁ ଜୀବନର ସଂଯମ ଓ ସାଧନା ପାଇଁ ଅରଣ୍ୟ ମଧ୍ୟରେ ଦୀର୍ଘକାଳ ଅତିବାହିତ କରୁଥିଲେ । ଏଭଳି ଅବସ୍ଥାରେ ନ ପଡ଼ିଲେ ଜୀବନର ବାସ୍ତବିକତା ସମ୍ବନ୍ଧରେ ମନୁଷ୍ୟର ଯଥାର୍ଥ ଜ୍ଞାନ ଜନ୍ମିବ ନାହିଁ । ତେଣୁ ସେମାନେ ଅରଣ୍ୟରେ ଦୀର୍ଘ ସମୟ ଅତିବାହିତ କରୁଥିଲେ ।

**(ଗ) ଭାରତୀୟ ସଭ୍ୟତାର ପରିବର୍ତ୍ତନ ଯୋଗୁଁ ବନପ୍ରଦେଶ କିପରି ବଦଳିଛି ?**

ଉ – ସଭ୍ୟତାର ପରିବର୍ତ୍ତନ ଯୋଗୁଁ ସଭ୍ୟତା ଓ ଚିନ୍ତାର ଗତି କେତେକ ପରିମାଣରେ ବାହ୍ୟିକ ପ୍ରଭାବରେ ପରିବର୍ତ୍ତିତ ହୋଇଛି । ଏବେ ଆଉ ଋଷି ଆଶ୍ରମ ଦେଖିବାକୁ ମିଳୁନାହିଁ କିମ୍ବା ଶତ ଶତ ଶିଷ୍ୟଙ୍କ ବେଦଧ୍ୱନିରେ ବନପ୍ରଦେଶ ମୁଖରିତ ହେଉନାହିଁ ।

**(ଘ) ବନବାଣୀକୁ କାହିଁକି 'ଭାରତର ବାଣୀ' ବୋଲି କୁହାଯାଇଛି ?**

ଉ – ଆଜି ପୂର୍ବକାଳର ଋଷି ଆଶ୍ରମ ନଥିଲେ ଓ ଶିଷ୍ୟଗଣଙ୍କ ବେଦ ଧ୍ୱନିରେ ବନପ୍ରଦେଶ ମୁଖରିତ ହେଉ ନ ଥିଲେ ମଧ୍ୟ ସେହି ସହସ୍ର ସହସ୍ର ବର୍ଷ ପୂର୍ବର ସ୍ମୃତି ଏବେ ମଧ୍ୟ ଭାରତୀୟଙ୍କ ମନରୁ ଲୋପ ପାଇ ଯାଇନାହିଁ । ବନବାଣୀ ହିଁ ଏ ଦେଶର ସଭ୍ୟତାର ବିଶେଷତ୍ୱ । ଏହା ଭାରତୀୟଙ୍କ ହୃଦୟରେ ସର୍ବଦା ଚିରଜାଜ୍ୱଲ୍ୟ ହୋଇ ରହିଛି । ତେଣୁ ବନବାଣୀକୁ ଭାରତର ବାଣୀ ବୋଲି କୁହାଯାଇଛି ।

୩ । ସରଳ ଭାଷାରେ ବୁଝାଇ ଲେଖ ।

**(କ) ପ୍ରକୃତି ସେମାନଙ୍କ ନିକଟରେ ନିର୍ଜୀବ ଏବଂ ଜଡ଼ ନୁହେଁ, ତାହା ଏକ ମହାଶକ୍ତି ।**

ଉ – *ପ୍ରକୃତି ସେମାନଙ୍କ .................................. ମହାଶକ୍ତି ।*

ଶଂସିତ ଗଦ୍ୟାଂଶଟି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଲିଖିତ *'ବନବାଣୀ'* ପ୍ରବନ୍ଧରୁ ଉଦ୍ଧୃତ । ଏଠାରେ ଲେଖକ ଭାରତୀୟ ଭାବୁକଙ୍କ ଦୃଷ୍ଟିରେ ପ୍ରକୃତି କିପରି ମହାଶକ୍ତି ଭାବରେ ପରିଚିତ, ସେ ସମ୍ପର୍କରେ ଆଲୋକପାତ କରିଛନ୍ତି ।

ଶାନ୍ତ କୋମଳ ଅରଣ୍ୟରେ ଭାରତର ସଭ୍ୟତା ଓ ସଂସ୍କୃତିର ବିକାଶ ଘଟିଥିଲା । ଏହି ଅରଣ୍ୟ ଥିଲା ମୁନିଋଷିଙ୍କର ସାଧନାର ପୀଠସ୍ଥଳୀ ଓ ରାଜା, ମହାରାଜାମାନଙ୍କର ଶେଷ ଜୀବନର ଆଶ୍ରୟସ୍ଥଳୀ । ଏହି ବନପ୍ରଦେଶର ଚିତ୍ର ଭାରତର କାବ୍ୟ, ନାଟକ, ପୁରାଣାଦିରେ ଚିତ୍ରିତ ହୋଇଛି । ସେଥିରେ ବର୍ଣ୍ଣିତ ଘଟଣା ସକଳ କବିଙ୍କର ପୂର୍ଣ୍ଣପ୍ରାଣତା ପ୍ରକାଶର ମାଧ୍ୟମ ହୋଇଛି । ଏହି ଅରଣ୍ୟ ପ୍ରକୃତି ଭାରତୀୟ ଭାବୁକମାନଙ୍କର ପ୍ରେରଣାର ମୂଳ କାରଣ ଭାବରେ ଗୃହୀତ । ପ୍ରକୃତି ସେମାନଙ୍କ ଦୃଷ୍ଟିରେ ନିର୍ଜୀବ ବା ଜଡ଼ ନୁହେଁ, ବରଂ ଏକ ମହାଶକ୍ତି । ପ୍ରକୃତି ସହିତ ଘନିଷ୍ଠ ମିଳନଦ୍ୱାରା ସେମାନେ ବିଶ୍ୱପ୍ରାଣରେ ନିଜ ପ୍ରାଣ ଓ ନିଜ ପ୍ରାଣରେ ବିଶ୍ୱପ୍ରାଣକୁ ଅନୁଭବ କରିପାରୁଥିଲେ । ଏପରି ମହାନ୍ ଅନୁଭୂତି ପ୍ରଦାନ କରୁଥିବା ପ୍ରକୃତି କେବେହେଲେ ନିର୍ଜୀବ ବା ଜଡ଼ ହୋଇ ନ ପାରେ ।

ବାସ୍ତବରେ ଲେଖକଙ୍କର ଏହି ଉକ୍ତି ଯଥାର୍ଥ ଅଟେ ।

**(ଖ) ଭାରତର ସଭ୍ୟତା ଓ ଚିନ୍ତାର ଗତି କେତେକ ପରିମାଣରେ ବାହ୍ୟିକ ପ୍ରଭାବରେ ପରିବର୍ତ୍ତିତ ହୋଇଛି ।**

ଉ – *ଭାରତର ସଭ୍ୟତା ................................ ପରିବର୍ତ୍ତିତ ହୋଇଛି ।*

ଉଦ୍ଧୃତାଂଶଟି ପଠିତ ସାହିତ୍ୟ ବହିର *'ବନବାଣୀ'* ପ୍ରବନ୍ଧରୁ ସଂଗୃହୀତ । ଏଠାରେ ଲେଖକ ପଣ୍ଡିତ ଗୋପବନ୍ଧୁ ଦାସ ବାହ୍ୟ ପ୍ରଭାବରେ ଭାରତୀୟ ସଭ୍ୟତା ଓ ଚିନ୍ତାର ଗତି କିପରି ପରିବର୍ତ୍ତିତ ହୋଇଛି, ତାହା ଉପରେ ଆଲୋକପାତ କରିଛନ୍ତି ।

ଦିନେ ବନ ଥିଲା ସମସ୍ତ ପ୍ରଗତିର ମୂଳଉତ୍ସ, ଭାରତୀୟ ଭାବୁକମାନଙ୍କର ପ୍ରେରଣାର ମୂଳ ନିଦାନ । ମହାକାବ୍ୟ ବର୍ଣ୍ଣିତ ମହାପୁରୁଷମାନଙ୍କର ସଂଯମ ତଥା ସାଧନାର ପରୀକ୍ଷାଗାର ଥିଲା ଏହି ଅରଣ୍ୟ । ଅରଣ୍ୟର ତରୁଲତାଗଣ ଭାବୁକ କାନରେ ନୀରବ ବାଣୀ ଶୁଣାଇ ଅନୁପ୍ରେରିତ କରୁଥିଲେ । ବନସ୍ପତିର ମାହାତ୍ମ୍ୟକୁ ସେମାନେ ମର୍ମେ ମର୍ମେ ଅନୁଭବ କରୁଥିଲେ । ହେଲେ ଆଜି ସେସବୁ ବାହାର ସଭ୍ୟତାର ପ୍ରଭାବରେ ପରିବର୍ତ୍ତିତ ହୋଇଯାଇଛି । ପୂର୍ବର ସେ ଋଷି ଆଶ୍ରମ ନାହିଁ । ସେଠାରୁ ଆଉ ବେଦଧ୍ୱନି ଶୁଣାଯାଉନାହିଁ । ଏସବୁ ପ୍ରଭାବ ସତ୍ତ୍ୱେ ଏହି ଅରଣ୍ୟର ପବିତ୍ର ସ୍ମୃତି ଭାରତବାସୀଙ୍କ ହୃଦୟରୁ ସଂପୂର୍ଣ୍ଣ ଲୋପ ପାଇଯାଇ ନାହିଁ, ବରଂ ଏହି ବନବାଣୀ ଭାରତରବାଣୀ ପାଲଟି ଯାଇଛି । ସମୟ ସ୍ରୋତରେ ପ୍ରତ୍ୟେକ ସଭ୍ୟତାର ପରିବର୍ତ୍ତନ ଘଟିଛି । ହେଲେ ସେହି ସ୍ରୋତରେ ସଂପୂର୍ଣ୍ଣ ଭାସିଯାଇ ଦେଶ ସଭ୍ୟତାର ବିଶେଷତ୍ୱକୁ ହରାଇବା ଅନୁଚିତ ।

ବାସ୍ତବରେ ଲେଖକଙ୍କର ଏହି ଉକ୍ତି ବେଶ୍ ହୃଦୟସ୍ପର୍ଶୀ ତଥା ସମୟୋପଯୋଗୀ ହୋଇପାରିଛି ।

**୪ । ପ୍ରତ୍ୟେକ ଧାଡ଼ିରେ ତିନୋଟି ଏକଜାତୀୟ ଶବ୍ଦ ସହିତ ଗୋଟିଏ ଭିନ୍ନଜାତୀୟ ଶବ୍ଦ ମିଶି ରହିଛି । ଭିନ୍ନଜାତୀୟ ଶବ୍ଦଟିକୁ ଚିହ୍ନଟ କରି ଲେଖ ।**

(କ) ଯୋଗୀ, ମୁନି, ଋଷି, ରୋଗୀ
(ଖ) ପ୍ରୌଢ଼, ନାଗରିକ, ବାଳକ, ଯୁବକ
(ଗ) ବନ, ଉପବନ, ଅରଣ୍ୟ, ପର୍ବତ
(ଘ) କାବ୍ୟ, କିମ୍ବଦନ୍ତୀ, ନାଟକ, ପୁରାଣ
(ଙ) ତରୁ, ବିହଙ୍ଗ, ଦ୍ରୁମ, ମହାଦ୍ରୁମ

ଉତ୍ତର

(କ) ରୋଗୀ
(ଖ) ନାଗରିକ
(ଗ) ପର୍ବତ
(ଘ) କିମ୍ବଦନ୍ତୀ
(ଙ) ବିହଙ୍ଗ



**୫ । ତଳେ 'କ' ଓ 'ଖ' ସ୍ତମ୍ଭରେ କିଛି ଶବ୍ଦ ଦିଆଯାଇଛି । ସେମାନଙ୍କ ମଧ୍ୟରୁ ପରସ୍ପର ସମ୍ପର୍କ ଥିବା ଶବ୍ଦକୁ ଯୋଡ଼ି ବାକ୍ୟ କର ।**

| 'କ' | 'ଖ' |
|---|---|
| ଅରଣ୍ୟ | କ୍ଷେତ୍ର |
| ତରୁ | ସ୍ରୋତ |
| ଚିନ୍ତା | ପୀଠ |
| କାର୍ଯ୍ୟ | ପ୍ରଦେଶ |
| ସାଧନା | ଛାୟା |

ଉତ୍ତର

ଅରଣ୍ୟପ୍ରଦେଶ, ତରୁଛାୟା, ଚିନ୍ତାସ୍ରୋତ, କାର୍ଯ୍ୟକ୍ଷେତ୍ର, ସାଧନାପୀଠ

**ଅରଣ୍ୟପ୍ରଦେଶ** – ଅରଣ୍ୟପ୍ରଦେଶର ଦୃଶ୍ୟ ଖୁବ୍ ମନୋରମ ।
**ତରୁଛାୟା** – ତରୁଛାୟା ତଳେ ବସି ଋଷି ବେଦପାଠ କରୁଛନ୍ତି ।
**ଚିନ୍ତାସ୍ରୋତ** – ମନ ମଧ୍ୟରେ ଅଜସ୍ର ଚିନ୍ତାସ୍ରୋତ ଖେଳିଗଲା ।
**କାର୍ଯ୍ୟକ୍ଷେତ୍ର** – ରାମବାବୁ ନିଜର କାର୍ଯ୍ୟକ୍ଷେତ୍ରରେ ବେଶ୍ ନାଁ କରିଛନ୍ତି ।
**ସାଧନାପୀଠ** – ଜଗନ୍ନାଥ ଦାସଙ୍କ ସାଧନାପୀଠ ଭାବରେ ବଡ଼ଓଡ଼ିଆ ମଠ ସୁପରିଚିତ ।

**୬ । ବନ୍ଧନୀରୁ ଶବ୍ଦ ବାଛି ଶୂନ୍ୟସ୍ଥାନ ପୂରଣ କରି ପାଠଟିକୁ ପୂର୍ଣ୍ଣ ଭାବରେ ଲେଖ ।**

ମହାଭାରତରେ ପଞ୍ଚୁପାଣ୍ଡବଙ୍କୁ ମଧ୍ୟ ରାଜ୍ୟଲାଭ ପୂର୍ବରୁ ____ ବନବାସରେ ଏହିପରି ଦୀର୍ଘ ____ ମଧ୍ୟଦେଇ ଯିବାକୁ ପଡ଼ିଥିଛି । କେଜାଣି, ଅରଣ୍ୟର ତରୁଲତାଶ୍ରେଣୀ ଭାରତୀୟ ____ କାନରେ କି ____ ବାଣୀ କହୁଥିଲେ ।
(ଅଜ୍ଞାତ, ନୀରବ, ଭାବୁକ, ସାଧନା)

ଉ – ମହାଭାରତରେ ପଞ୍ଚୁପାଣ୍ଡବଙ୍କୁ ମଧ୍ୟ ରାଜ୍ୟଲାଭ ପୂର୍ବରୁ ଅଜ୍ଞାତ ବନବାସରେ ଏହିପରି ଦୀର୍ଘ ସାଧନା ମଧ୍ୟଦେଇ ଯିବାକୁ ପଡ଼ିଥିଛି । କେଜାଣି, ଅରଣ୍ୟର ତରୁଲତାଶ୍ରେଣୀ ଭାରତୀୟ ଭାବୁକ କାନରେ କି ନୀରବ ବାଣୀ କହୁଥିଲେ ।

**୭ । ତଳ କୋଠରିମାନଙ୍କରେ କେତୋଟି ଅକ୍ଷର ଦିଆଯାଇଛି । ପ୍ରତିଧାଡ଼ିରୁ ଅକ୍ଷରମାନଙ୍କୁ ନେଇ କେତୋଟି ଦୁଇ ଓ ତିନି ଅକ୍ଷରବିଶିଷ୍ଟ ଶବ୍ଦ ତିଆରି କର ।**

| | | | |
|---|---|---|---|
| ସା | ଧ | ବ | ନ |
| ସ୍ୱ | ନ | ଗ | ର |
| ର | ସ | ଭ୍ୟ | ମ |
| ଅ | ମ୍ପ | ର୍କ | ସ |
| ଦ | ମ | ର୍ଶ | ନ |

ଉତ୍ତର

ସାଧବ, ବନ, ସାଧନ, ବସା, ଧବ
ସ୍ୱର, ନଗର, ନର, ଗର, ସ୍ୱନ
ରସ, ସଭ୍ୟ, ମର, ସର, ସମ
ଅର୍କ, ସମ୍ପର୍କ
ଦର୍ଶନ, ମନ, ଦମ, ଦମନ, ନଦ

**୮ । ପ୍ରତି ବାକ୍ୟର କିଛି ଅଂଶ 'କ' ସ୍ତମ୍ଭରେ ଓ କିଛି ଅଂଶ 'ଖ' ସ୍ତମ୍ଭରେ ଦିଆଯାଇଅଛି । ଦୁଇ ସ୍ତମ୍ଭରେ ପରସ୍ପର ସମ୍ପର୍କ ଥିବା ବାକ୍ୟାଂଶକୁ ଏକାଠି ମିଳାଇ ଲେଖ ।**

| 'କ' | 'ଖ' |
|---|---|
| ପ୍ରକୃତି ସେମାନଙ୍କ ନିକଟରେ | ଭାରତର ବାଣୀ |
| ବନ ବାଣୀ ହିଁ | ବନପ୍ରଦେଶ ମୁଖରିତ ହେଉନାହିଁ |
| ଶତ ଶତ ଶିଷ୍ୟଙ୍କ ବେଦଧ୍ୱନିରେ | ପ୍ରାଣରେ ଅନୁଭବ କରୁଥିଲେ |
| ବନସ୍ପତିର ମାହାତ୍ମ୍ୟ | ସାଧନାପୀଠ ଥିଲା |
| ଅରଣ୍ୟ ହିଁ ସେମାନଙ୍କର | ନିର୍ଜୀବ ଏବଂ ଜଡ଼ ନୁହେଁ |

ଉ– (୧) ପ୍ରକୃତି ସେମାନଙ୍କ ନିକଟରେ ନିର୍ଜୀବ ଏବଂ ଜଡ଼ ନୁହେଁ ।
(୨) ବନବାଣୀ ହିଁ ଭାରତର ବାଣୀ ।

(୩) ଶତ ଶତ ଶିଷ୍ୟଙ୍କ ବେଦଧ୍ୱନିରେ ବନପ୍ରଦେଶ ମୁଖରିତ ହେଉନାହିଁ ।
(୪) ବନସ୍ପତିର ମାହାତ୍ମ୍ୟ ପ୍ରାଣରେ ଅନୁଭବ କରୁଥିଲେ ।
(୫) ଅରଣ୍ୟ ହିଁ ସେମାନଙ୍କର ସାଧନାପୀଠ ଥିଲା ।

୯ । **ତଳେ ଦିଆଯାଇଥିବା ଶବ୍ଦଗୁଡ଼ିକ ମଧ୍ୟରୁ ନିର୍ଭୁଲ ଶବ୍ଦଗୁଡ଼ିକୁ ବାଛି ଲେଖ ।**

(କ) ଜାତିୟ, ଜାତୀୟ, ଯାତୀୟ
(ଖ) ବିଶେଷ, ବିଷେଶ, ବିସେଷ
(ଗ) ବାଲ୍ମିକୀ, ବାଲ୍ମୀକି, ବାଲ୍ମିକି
(ଘ) ନୀର୍ଜିବ, ନିର୍ଜିବ, ନିର୍ଜୀବ

**ଉତ୍ତର**

(କ) ଜାତୀୟ (ଖ) ବିଶେଷ
(ଗ) ବାଲ୍ମୀକି (ଘ) ନିର୍ଜୀବ

**ତୁମ ପାଇଁ କାମ**

୧ । ଜଙ୍ଗଲ ସମ୍ପର୍କରେ ତୁମ ଅନୁଭୂତି ନିଜ ଭାଷାରେ ଲେଖ ।
୨ । ଗୋପବନ୍ଧୁଙ୍କ ଅନ୍ୟାନ୍ୟ ରଚନାଗୁଡ଼ିକ ସଂଗ୍ରହ କରି ପଢ଼ ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧ । **(କ) ବିପରୀତ ଶବ୍ଦ ଲେଖ ।**

ବିକାଶ – ବିନାଶ
ପବିତ୍ର – ଅପବିତ୍ର
ମିଳନ – ବିଚ୍ଛେଦ
ଜଡ଼ – ଚେତନ
ଉତ୍କୃଷ୍ଟ – ନିକୃଷ୍ଟ

**(ଖ) ପ୍ରତିଶବ୍ଦ ଲେଖ ।**

ଅରଣ୍ୟ – ବଣ, ବନାନୀ, ଜଙ୍ଗଲ
ମୁନି – ସନ୍ୟାସୀ, ତାପସ, ଋଷି
ବିହଙ୍ଗ – ବିହଗ, ବିହଙ୍ଗମ, ପକ୍ଷୀ, ଖଗ
ନଦୀ – ନଈ, ସ୍ରୋତସ୍ୱିନୀ, ତଟିନୀ

**(ଗ) ଅର୍ଥଗତ ପାର୍ଥକ୍ୟ ଲେଖ ।**

ବାଣି – ରସି/ଦଉଡ଼ି
ସୁଧା – ଅମୃତ
ଭୀତି – ଭୟ
ବାଣୀ – କଥା
ସୁଦ୍ଧା – ତଥାପି
ଭିତ୍ତି – ମୂଳଦୁଆ

୨ । **ସଂକ୍ଷେପରେ ଉତ୍ତର ଦିଅ ।**

**(କ) ଭାରତର ମହାପୁରୁଷମାନେ ଅରଣ୍ୟକୁ କେଉଁ ରୂପେ ନିରୂପଣ କରିଥିଲେ ?**

ଉ– ଭାରତର ମହାପୁରୁଷମାନେ ଅରଣ୍ୟକୁ ଆପଣାର ସାଧନା ଏବଂ ସିଦ୍ଧିର ସ୍ଥାନ ରୂପେ ନିରୂପଣ କରିଥିଲେ।

**(ଖ) ଅରଣ୍ୟ ଭାରତୀୟ ସଭ୍ୟତାର କେନ୍ଦ୍ର କିପରି ଥିଲା ?**

ଉ– ଅରଣ୍ୟ ମୁନିଋଷିଙ୍କର ସାଧନା ଓ ସିଦ୍ଧିର ସ୍ଥାନ ଥିଲା । ଭାରତୀୟ ସଭ୍ୟତାର ମୂଳଭିତ୍ତିର ଆବିର୍ଭାବ ଏ ବନପ୍ରଦେଶରେ ହିଁ ହୋଇଥିଲା । ଏହିଠାରେ ହିଁ ଋଷିଙ୍କର ପବିତ୍ର ସ୍ମୃତିପୀଠ ରହିଥିଲା । ବାଲ୍ୟାବସ୍ଥାରେ



ଭାରତର ସନ୍ତାନମାନେ ଏହିଠାରେ ଆର୍ଯ୍ୟଋଷିମାନଙ୍କ ଚରଣତଳେ ବସି ଶିକ୍ଷାଲାଭ କରୁଥିଲେ । ଏଣୁ ଅରଣ୍ୟକୁ ଭାରତୀୟ ସଭ୍ୟତାର କେନ୍ଦ୍ରରୂପେ ବିବେଚନା କରାଯାଇଥିଲା ।

**(ଗ) ରାମଚନ୍ଦ୍ରଙ୍କୁ କାହିଁକି ନାନାବିଧ ଦୁଃଖ ଦୁର୍ବିପାକ ଭୋଗ କରିବାକୁ ପଡ଼ିଥିଲା ?**

ଉ– ସଂସାରକ୍ଷେତ୍ରରେ ସମାଜର ନେତୃତ୍ୱ ନେବା ପୂର୍ବରୁ ଜୀବନର ସଂଯମ ଓ ସାଧନା ଆବଶ୍ୟକ । ସେଥିପାଇଁ ରାମଚନ୍ଦ୍ରଙ୍କୁ ଅଯୋଧ୍ୟା ସିଂହାସନରେ ବସିବା ଆଗରୁ ଅରଣ୍ୟ ପ୍ରଦେଶରେ ନାନାବିଧ ଦୁଃଖ ଦୁର୍ବିପାକ ଭୋଗ କରିବାକୁ ପଡ଼ିଥିଲା ।

**(ଘ) ଭାବୁକମାନେ ବନସ୍ପତିର ମାହାତ୍ମ୍ୟ ପ୍ରାଣରେ ଏତେ ଅନୁଭବ କରୁଥିଲେ କିପରି ?**

ଉ– ଅରଣ୍ୟର ତରୁଲତା ଶ୍ରେଣୀ ସେହି ଭାବୁକମାନଙ୍କ କାନରେ ନୀରବ ବାଣୀ କହୁଥିଲେ । ପବନର ସନ୍ ସନ ଶବ୍ଦ, ନଦୀର କଳ କଳ ନାଦ ଓ ପକ୍ଷୀମାନଙ୍କର କଳକୂଜନ ସେମାନଙ୍କ ପ୍ରାଣରେ ଅପୂର୍ବ ଭାବ ସୃଷ୍ଟି କରୁଥିଲା, ଯଦ୍ୱାରା ସେମାନେ ବନସ୍ପତିର ମାହାତ୍ମ୍ୟ ପ୍ରାଣରେ ଅନୁଭବ କରୁଥିଲେ ।

**(ଙ) ବର୍ତ୍ତମାନ ଅନେକଙ୍କ ହୃଦୟରେ କେଉଁ ଆଶା ଜାଗିଛି ?**

ଉ– କୌଣସି ବିଶେଷତ୍ୱ ଲୋପ ପାଇବା ଅର୍ଥ ସେ ଦେଶ ବା ଜାତିର ବିଲୟ । ଆମ୍ଭମାନଙ୍କର ଅନ୍ୟାନ୍ୟ ଲୁପ୍ତ ପ୍ରାୟ ଜାତୀୟ ବିଶେଷତ୍ୱ ପରି ଏ ବିଶେଷତ୍ୱ ଆଡ଼କୁ କ୍ରମେ ଚିନ୍ତା ଫେରିଅଛି ଏବଂ ଏହାର ପୁନରୁଦ୍ଧାର ଆଶା ଅନେକଙ୍କ ହୃଦୟରେ ବର୍ତ୍ତମାନ ଜାଗିଅଛି ।

୩ । **ସଂକ୍ଷେପରେ ଉତ୍ତର ଦିଅ ।**

**(କ) ରାଜ୍ୟଲାଭ ପୂର୍ବରୁ ପଞ୍ଚୁପାଣ୍ଡବଙ୍କୁ କ'ଣ କରିବାକୁ ପଡ଼ିଥିଲା ?**

ଉ– 'ମହାଭାରତ'ରେ ପଞ୍ଚୁପାଣ୍ଡବଙ୍କୁ ରାଜ୍ୟଲାଭ ପୂର୍ବରୁ ଅଜ୍ଞାତ ବନବାସରେ ଦୀର୍ଘ ସାଧନା ମଧ୍ୟଦେଇ ଯିବାକୁ ପଡ଼ିଥିଲା । କାରଣ ଏଭଳି ଅବସ୍ଥାରେ ନ ପଡ଼ିଲେ ଜୀବନର ବାସ୍ତବିକତା ସମ୍ବନ୍ଧରେ ଯଥାର୍ଥ ଜ୍ଞାନ ଜନ୍ମେ ନାହିଁ ।

**(ଖ) ଭାରତୀୟ ସଭ୍ୟତାର ବିଶେଷତ୍ୱ କ'ଣ ?**

ଉ– *'ବନବାଣୀ ହିଁ ଭାରତର ବାଣୀ'*– ଏହାହିଁ ଭାରତୀୟ ସଭ୍ୟତାର ବିଶେଷତ୍ୱ । ଭାରତର ସଭ୍ୟତା ଓ ଚିନ୍ତାଧାରା ବାହ୍ୟ ପ୍ରଭାବରେ ଯେତେ ପ୍ରଭାବିତ ହେଲେ ମଧ୍ୟ ବନପ୍ରଦେଶର ଅତୀତ ଗାଥା ଏବେ ମଧ୍ୟ ଭାରତବାସୀଙ୍କ ସ୍ମୃତିରୁ ବିଲୁପ୍ତ ହୋଇନାହିଁ ।

**(ଗ) କେଉଁମାନେ ଅରଣ୍ୟକୁ ଆପଣାର ସାଧନା ଓ ସିଦ୍ଧିର ସ୍ଥାନରୂପେ ନିରୂପଣ କରିଥିଲେ ?**

ଉ– ଅରଣ୍ୟ ଭାରତୀୟ ସଭ୍ୟତାର ପ୍ରାଣକେନ୍ଦ୍ର ଅଟେ । ଆବହମାନ କାଳରୁ ଭାରତର ମହାପୁରୁଷମାନେ ଅରଣ୍ୟକୁ ଆପଣାର ସାଧନା ଓ ସିଦ୍ଧିର ସ୍ଥାନ ରୂପେ ନିରୂପଣ କରିଥିଲେ ।

**(ଘ) କେଉଁ ସମସ୍ତ ତତ୍ତ୍ୱର ଆବିର୍ଭାବ ବନପ୍ରଦେଶରେ ଘଟିଥିଲା ?**

ଉ– ପ୍ରାଚୀନ କାଳରେ ଭାରତର ଯେଉଁ ସମସ୍ତ ତତ୍ତ୍ୱ ପୃଥିବୀକୁ ଆଲୋକିତ କରିଥିଲା, ସେସବୁର ଆବିର୍ଭାବ ବନପ୍ରଦେଶରେ ଘଟିଥିଲା । ସେହି ତତ୍ତ୍ୱସବୁ ଅଦ୍ୟାବଧି ଭାରତୀୟ ସଭ୍ୟତାର ମୂଳଭିତ୍ତି ରୂପେ ବିଦ୍ୟମାନ ।

**(ଙ) ଭାରତର କେଉଁ କାବ୍ୟ, ନାଟକ, ପୁରାଣାଦିରେ ଅରଣ୍ୟର ଗୌରବ ସନ୍ନିବେଶିତ ହୋଇଛି ?**

ଉ– ଭାରତର କାବ୍ୟ, ନାଟକ, ପୁରାଣାଦିରେ ଅରଣ୍ୟର ଗୌରବ ବିଶେଷ ଭାବେ ପ୍ରକଟିତ ହୋଇଛି । 'ଶକୁନ୍ତଳା', 'କୁମାରସମ୍ଭବ' ଓ 'ଉତ୍ତର ରାମଚରିତ' ଆଦି ଉତ୍କୃଷ୍ଟ ଓ ସୁନ୍ଦର ସାହିତ୍ୟରେ ଅରଣ୍ୟର ଗୌରବ ସୁନ୍ଦର ଭାବେ ସନ୍ନିବେଶିତ ହୋଇଛି ।

୪। ସରଳାର୍ଥ ଲେଖ।

**(କ) କୌଣସି ବିଶେଷତ୍ୱ ଲୋପପାଇବା ଅର୍ଥ ସେ ଦେଶ ବା ଜାତିର ବିଲୟ।**

ଉ – *କୌଣସି ........................ ଜାତିର ବିଲୟ।*

ଶଂସିତ ଗଦ୍ୟାଂଶଟି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ରଚିତ 'ବନବାଣୀ' ପ୍ରବନ୍ଧରୁ ସଂଗୃହୀତ। ଏଠାରେ ଲେଖକ ଦେଶ ବା ଜାତିର ବିଲୟର କାରଣ ସମ୍ପର୍କରେ ଆଲୋକପାତ କରିଛନ୍ତି।

ଭାରତୀୟ ସଭ୍ୟତା ଅନେକ ପରିମାଣରେ ବାହ୍ୟିକ ପ୍ରଭାବରେ ପରିବର୍ତ୍ତିତ ହୋଇଛି। ଏହି ସଭ୍ୟତା ଓ ଚିନ୍ତାର ଗତି ମଧ୍ୟ ବାହାର ଦେଶର ସଭ୍ୟତା ପ୍ରଭାବରେ ପ୍ରଭାବିତ ହୋଇଛି। ଆଜି ଆଉ ଅତୀତର ଋଷି ଆଶ୍ରମ ନାହିଁ। ଶିଷ୍ୟଙ୍କ ବେଦଧ୍ୱନିରେ ବନପ୍ରଦେଶ ଆଉ ପୂର୍ବପରି ମୁଖରିତ ହେଉନାହିଁ। ତଥାପି ସେହି ଅନେକ ବର୍ଷର ସ୍ମୃତି ଏବେ ମଧ୍ୟ ଭାରତବାସୀଙ୍କ ହୃଦୟରେ ଅଲିଭା ସ୍ମୃତି ହୋଇରହିଛି। ଭାରତୀୟମାନଙ୍କ ମନ ବଚନରେ ବନବାଣୀର କଥା ମୁଖରିତ ହେଉଛି। କାରଣ ଏହା ହିଁ ଏ ଦେଶ ସଭ୍ୟତାର ବିଶେଷତ୍ୱ ଅଟେ। କୌଣସି ଦେଶର ବିଶେଷତ୍ୱ ଲୋପପାଇଯିବା ଅର୍ଥ ସେ ଦେଶ ବା ଜାତିର ବିଲୟ ଘଟିବା। ତେଣୁ ଯାହା ବା କିଛି ହେଉ, ଦେଶ ନିଜର ବିଶେଷତ୍ୱକୁ ହରାଇ ସଂପୂର୍ଣ୍ଣ ରୂପେ ବିଲୁପ୍ତ ହେବ ନାହିଁ।

ବାସ୍ତବରେ ଲେଖକଙ୍କର ଏହି ଉକ୍ତି ଯେପରି ଗୁରୁତ୍ୱପୂର୍ଣ୍ଣ, ସେପରି ଯୁଗୋପଯୋଗୀ ଅଟେ।

**(ଖ) ଆବହମାନ କାଳରୁ ଭାରତର ମହାପୁରୁଷମାନେ ଅରଣ୍ୟକୁ ଆପଣାର ସାଧନା ଏବଂ ସିଦ୍ଧିର ସ୍ଥାନରୂପେ ନିରୂପଣ କରିଥିଲେ।**

ଉ – *ଆବହମାନ କାଳରୁ.........ନିରୂପଣ କରିଥିଲେ।*

ଉକ୍ତ ଗଦ୍ୟାଂଶଟି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଲିଖିତ *'ବନବାଣୀ'* ପ୍ରବନ୍ଧରୁ ଆନୀତ। ଏଠାରେ ଲେଖକ ଭାରତୀୟ ସଭ୍ୟତାର ବିକାଶ ଘଟାଇବାରେ ଅରଣ୍ୟର ଭୂମିକା ଉପରେ ଆଲୋକପାତ କରିଛନ୍ତି।

ଅରଣ୍ୟ ଭାରତୀୟ ସଭ୍ୟତାର କେନ୍ଦ୍ର। ପାଶ୍ଚାତ୍ୟ ସଭ୍ୟତାର ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କ କାର୍ଯ୍ୟକ୍ଷେତ୍ର ପ୍ରଧାନତଃ ସହର ଥିଲା। ମାତ୍ର ଭାରତର ମହାପୁରୁଷମାନେ ଅରଣ୍ୟକୁ ନିଜ ସାଧନା ଓ ସିଦ୍ଧିର ସ୍ଥାନରୂପେ ନିରୂପଣ କରିଥିଲେ। ପ୍ରାଚୀନ କାଳରେ ଯେଉଁସବୁ ତତ୍ତ୍ୱ ପୃଥିବୀକୁ ଆଲୋକ ଦେଇଥିଲା, ସେ ସମସ୍ତର ଆବିର୍ଭାବ ବନପ୍ରଦେଶରେ ଘଟିଥିଲା। ବର୍ତ୍ତମାନ ମଧ୍ୟ ସେସବୁ ଭାରତୀୟ ସଭ୍ୟତାର ମୂଳଭିତ୍ତି ରୂପେ ବିଦ୍ୟମାନ। ପ୍ରାଚୀନ କାଳର ଯୋଗୀ ଋଷିମାନଙ୍କୁ ନେଇ ଆମେ ଗର୍ବ କରିଥାଉ। ସେମାନଙ୍କର ଅଧିଷ୍ଠାନ ଓ ସାଧନାପୀଠ ଥିଲା ଅରଣ୍ୟ। ବାଲ୍ୟାବସ୍ଥାରେ ଭାରତୀୟ ସନ୍ତାନମାନେ ଅରଣ୍ୟରେ ଯୋଗୀଋଷିଙ୍କ ପାଦତଳେ ବସି ବିଦ୍ୟାଶିକ୍ଷା କରୁଥିଲେ। ରାଜା ମହାରାଜାମାନେ ମଧ୍ୟ ଜୀବନର ଶେଷଦଶାରେ ରାଜ୍ୟ ଓ ଧନସଂପଦ ଛାଡ଼ି ଅରଣ୍ୟରେ ବାସ କରିବାକୁ ଶ୍ରେୟ ମଣୁଥିଲେ। ବାସ୍ତବରେ ଅରଣ୍ୟ ଥିଲା ଭାରତୀୟ ସଭ୍ୟତାର କେନ୍ଦ୍ର।

ଉକ୍ତ ପ୍ରସଙ୍ଗରେ ଲେଖକଙ୍କ ବର୍ଣ୍ଣନା ବେଶ୍ ଭାବଗର୍ଭକ ହୋଇପାରିଛି।

**(ଗ) "ଅରଣ୍ୟ ହିଁ ସେମାନଙ୍କର ଅଧିଷ୍ଠାନ ଏବଂ ସାଧନାପୀଠ ଥିଲା।"**

ଉ – *ଅରଣ୍ୟ ହିଁ ........ ସାଧନାପୀଠ ଥିଲା।*

ଶଂସିତ ଗଦ୍ୟାଂଶଟି ଗୋପବନ୍ଧୁ ଦାସଙ୍କ ଲିଖିତ *'ବନବାଣୀ'* ପ୍ରବନ୍ଧରୁ ଗୃହୀତ। ଏଠାରେ ପ୍ରାବନ୍ଧିକ ଅରଣ୍ୟର ମହତ୍ତ୍ୱ ବର୍ଣ୍ଣନା କରିଛନ୍ତି।



ଅରଣ୍ୟ ହେଉଛି ଭାରତୀୟ ସଭ୍ୟତାର କେନ୍ଦ୍ର। ଭାରତର ଯେଉଁ ସମସ୍ତ ତତ୍ତ୍ୱ ପ୍ରାଚୀନ କାଳରେ ପୃଥିବୀକୁ ଆଲୋକ ଦେଇଥିଲା ସେ ସମସ୍ତର ଆବିର୍ଭାବ ସ୍ଥଳ ହେଉଛି ବନ ପ୍ରଦେଶ। ଯେଉଁ ଯୋଗୀ ଋଷିମାନଙ୍କର ପବିତ୍ର ସ୍ମୃତି ଭାରତ ପ୍ରାଣରେ ଜାତୀୟ ଗୌରବ ଜନ୍ମାଇଥାଏ, ଅରଣ୍ୟ ହିଁ ସେମାନଙ୍କର ଅଧିଷ୍ଠାନ ଏବଂ ସାଧନା ପୀଠ ଥିଲା।

ବାସ୍ତବରେ ଲେଖକଙ୍କର ଏହି ଉକ୍ତି ବେଶ୍ ହୃଦୟସ୍ପର୍ଶୀ ହୋଇପାରିଛି।

୫। ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ।

**(କ) କେଉଁମାନେ କାହିଁକି 'ମୁନିବନ ତରୁଛାୟା'ର ଆଶ୍ରୟ ନେଇ ଜୀବନକୁ କୃତାର୍ଥ ମଣୁଥିଲେ ?**

ଉ– ଅରଣ୍ୟ ଥିଲା ଭାରତୀୟ ସଭ୍ୟତାର ମୂଳଭିତ୍ତି। ଅରଣ୍ୟକୁ ମୁନିଋଷିମାନେ ସାଧନା ଓ ସିଦ୍ଧିର ସ୍ଥଳରୂପେ ବାଛିଥିଲେ। ବାଲ୍ୟାବସ୍ଥାରେ ଭାରତର ସନ୍ତାନମାନେ ଅରଣ୍ୟରେ ଗୁରୁକୁଳାଶ୍ରମରେ ରହି ମୁନି ଋଷିଙ୍କଠାରୁ ବିଦ୍ୟା ଶିକ୍ଷା କରୁଥିଲେ। ଏହି ଅରଣ୍ୟରୁ ହିଁ ସେ କାଳରେ ପୃଥିବୀକୁ ଆଲୋକିତ କରିଥିବା ସମସ୍ତ ତତ୍ତ୍ୱର ଆବିର୍ଭାବ ଘଟିଥିଲା। ରାଜା ମହାରାଜାମାନେ ମଧ୍ୟ ଜୀବନର ଶେଷ ଦଶାରେ ରାଜ୍ୟ, ଧନସମ୍ପଦ ପରିତ୍ୟାଗ କରି ଅରଣ୍ୟ କୋଳରେ ଆଶ୍ରୟ ନେବାକୁ ଇଚ୍ଛା ପ୍ରକାଶ କରୁଥିଲେ। ମୁନିବନ ତରୁଛାୟାର ଆଶ୍ରୟ ନେଇ ସେମାନେ ଜୀବନକୁ କୃତାର୍ଥ ମଣୁଥିଲେ।

**(ଖ) ଭାରତୀୟ ଭାବୁକମାନେ କାହିଁକି ପ୍ରକୃତିକୁ ସମସ୍ତ ପ୍ରେରଣାର ଉତ୍ସ ବୋଲି ଗ୍ରହଣ କରିଛନ୍ତି ?**

ଉ– ଭାରତର କାବ୍ୟ, ନାଟକ ଓ ପୁରାଣାଦିରେ ଅରଣ୍ୟର ଗୌରବ ବିଶେଷଭାବେ ପ୍ରକଟିତ ହୋଇଛି। 'ଶକୁନ୍ତଳା', 'କୁମାର ସମ୍ଭବ', 'ଉତ୍ତର ରାମଚରିତ' ପ୍ରଭୃତି ଲୋକପ୍ରିୟ ସାହିତ୍ୟରେ ବନପ୍ରଦେଶର ସୁନ୍ଦର ଚିତ୍ର ଓ ଘଟଣା ସକଳ ପ୍ରକାଶ ପାଇଛି। ସେସବୁ ବିନା ଏସବୁ କାବ୍ୟ ପରିପୂର୍ଣ୍ଣତା ପାଇପାରି ନଥା'ନ୍ତା। ଭାରତୀୟ କବି ଓ ଭାବୁକମାନଙ୍କ ନିକଟରେ ପ୍ରକୃତି ନିର୍ଜୀବ ଓ ଜଡ଼ ନୁହେଁ, ଏହା ଏକ ମହାଶକ୍ତି। ପ୍ରକୃତି ସହ ଘନିଷ୍ଠ ମିଳନଦ୍ୱାରା ସେମାନଙ୍କଠାରେ ବିଶ୍ୱୈକପ୍ରାଣତା ଭାବ ପ୍ରକାଶ ପାଇଥିଲା। ପ୍ରତ୍ୟେକ ସୁନ୍ଦର ସୃଷ୍ଟି ମୂଳରେ ପ୍ରକୃତିର ପ୍ରେରଣା ରହିଥିଲା। ତେଣୁ ଭାରତୀୟ ଭାବୁକମାନେ କାଳେ କାଳେ ପ୍ରକୃତିକୁ ପ୍ରେରଣାର ଉତ୍ସଭାବେ ଗ୍ରହଣ କରିଛନ୍ତି।

**(ଗ) ବନବାଣୀକୁ କାହିଁକି 'ଭାରତର ବାଣୀ' ବୋଲି କୁହାଯାଇଛି ?**

ଉ– ଭାରତୀୟ ସଭ୍ୟତାର ପ୍ରାଣକେନ୍ଦ୍ର ହେଉଛି ଅରଣ୍ୟ। ଅତୀତରେ ଭାରତୀୟ ସଂସ୍କୃତିର ମୂଳାଧାର ଥିଲା ଅରଣ୍ୟ। ସେଦିନ ଆଜି ଅବଶ୍ୟ ଆଉ ନାହିଁ। ବାହ୍ୟିକ ପ୍ରଭାବରେ ଭାରତର ସଭ୍ୟତା ଓ ଚିନ୍ତାଧାରା ଅନେକ ପରିମାଣରେ ପରିବର୍ତ୍ତିତ ହୋଇଛି। ପୂର୍ବର ସେ ଋଷି ଆଶ୍ରମ ଆଉ ନାହିଁ। ଶତ ଶତ ଶିଷ୍ୟଙ୍କ ବେଦଧ୍ୱନିରେ ବନପ୍ରଦେଶ ଆଉ ମୁଖରିତ ହେଉନାହିଁ। ତଥାପି ସେ କାଳର ସ୍ମୃତି ଏବେ ମଧ୍ୟ ଭାରତୀୟଙ୍କ ପ୍ରାଣରେ ସ୍ପନ୍ଦିତ ହେଉଛି। ସେସବୁ କେବେ ସମ୍ପୂର୍ଣ୍ଣ ଭାବେ ବିଲୁପ୍ତ ହେବ ନାହିଁ। କାରଣ ବନବାଣୀ ହିଁ ଭାରତର ବାଣୀ। ଏହାହିଁ ଏ ଦେଶ ସଭ୍ୟତାର ବିଶେଷତ୍ୱ। କୌଣସି ବିଶେଷତ୍ୱ ଲୋପ ପାଇବା ଅର୍ଥ ଜାତିର ବିଲୟ ଘଟିବା। ତେଣୁ ଏହି ବିଶେଷତ୍ୱ ଆଡ଼କୁ ଏବେ ଚିନ୍ତା ଫେରିଛି ଓ ଅଧୁନା ଅରଣ୍ୟ ସଭ୍ୟତାର ପୁନରୁଦ୍ଧାର ଆଶା ଅନେକଙ୍କ ହୃଦୟରେ ଜାଗିଅଛି।

**(ଘ) ଦ୍ୱିତୀୟ ପୃଥିବୀ ମହାସମର ପୂର୍ବରୁ ପାରଳାର ମହାରାଜାଙ୍କ ଉପରେ କେଉଁ ଭାର ଦିଆଯାଇଥିଲା ?**

ଉ– ଦ୍ୱିତୀୟ ପୃଥିବୀ ମହାସମର ପୂର୍ବରୁ ଭାରତର ପ୍ରତି ଅଞ୍ଚଳରେ ଗୋଟିଏ ଗୋଟିଏ ଇଣ୍ଡିଆନ୍ ବାଟାଲିୟନ୍ ଗଢ଼ିବାର ନିୟମ ହୋଇଥିଲା। ମାନ୍ଦ୍ରାଜର ପ୍ରତି ଜିଲ୍ଲାର ସୁସ୍ଥସବଳ ଲୋକଙ୍କୁ ବାଛି ସେଥିରେ ନାମ ଲେଖାଇବା

କାର୍ଯ୍ୟ ଆରମ୍ଭ ହୋଇଥିଲା । ଗଞ୍ଜାମରୁ ବାଳକମାନଙ୍କୁ ବାଛି ଯୁଦ୍ଧ ଶିକ୍ଷା କରିବାକୁ ପଠାଇବା ଭାର ପାରଳା ମହାରାଜାଙ୍କ ଉପରେ ଥିଲା । ସେହି କାର୍ଯ୍ୟରେ ମହାରାଜା ତତ୍ପରତା ପ୍ରକାଶ କରିଥିଲେ । ସେଥିପାଇଁ କଲେଜରେ ଏକ ବିରାଟ ସଭାରେ ମହାରାଜା ଭାଷଣ ଦେଇ ସମର ଶିକ୍ଷା କରିବାକୁ କେଉଁ ଛାତ୍ରମାନେ ଇଚ୍ଛୁକ ଅଛନ୍ତି ଜାଣିବାକୁ ଇଚ୍ଛା ,କରିଥିଲେ ।

**(ଙ) ଜନଗହଳି ସମ୍ଭାଳିବାକୁ ପୋଲିସ୍ କାହିଁକି ଅସମର୍ଥ ହେଲା ?**

ଉ– ୧୯୨୧ ମସିହାରେ ମହାତ୍ମା ଗାନ୍ଧିଙ୍କର ଆହ୍ୱାନରେ ସ୍ୱାଧୀନତା ଆନ୍ଦୋଳନ ଭାରତ ସାରା ବ୍ୟାପିଗଲା । ସ୍କୁଲ, କଲେଜ ଛାଡ଼ି ଅନେକ ଅସହଯୋଗ ଆନ୍ଦୋଳନରେ ଭାଗ ନେଲେ । ଠିକ୍ ସେହି ବର୍ଷ ମହାତ୍ମା ଗାନ୍ଧି ନିଜେ ତାଙ୍କର ପ୍ରଚାର ଉଦ୍ଦେଶ୍ୟରେ ପାରଳାଖେମୁଣ୍ଡି ଆସିଥିଲେ । ସେତେବେଳେ ବ୍ରିଟିଶ୍ ସରକାରଙ୍କ କଟକଣା ହେତୁ ତାଙ୍କୁ ସଭା କରିବାପାଇଁ ସ୍ଥାନଟିଏ ମିଳିଲା ନାହିଁ । ଦେଶପ୍ରେମୀ ସ୍ୱାଧୀନତା ସଂଗ୍ରାମୀ ଛାତ୍ରମାନେ ଜୋର୍ ଜବରଦସ୍ତ ପୁରୁଣା ମାର୍କେଟ ପଡ଼ିଆରେ ସଭା କରିବାପାଇଁ ସ୍ଥିର କଲେ । ମହାତ୍ମା ଗାନ୍ଧିଙ୍କ ଭାଷଣ ଶୁଣିବାକୁ ସମସ୍ତଙ୍କ ମନରେ ପ୍ରବଳ ଆଗ୍ରହ ଥିଲା । ତେଣୁ ବହୁ ସଂଖ୍ୟାରେ ଲୋକ ସମାଗମ ହେଲା । ଜନଗହଳି ଏତେ ଅଧିକ ହେଲା ଯେ ପୋଲିସ୍ ସେମାନଙ୍କୁ ସମ୍ଭାଳିବାକୁ ଅସମର୍ଥ ହେଲା ।



# ମୋ ଜୀବନର ଅଭୁଲାକଥା

• *ସତ୍ୟନାରାୟଣ ରାଜଗୁରୁ*
*ଜନ୍ମ : ୧୯.୮.୧୯୦୩*
*ମୃତ୍ୟୁ : ୧୧.୬.୧୯୯୭*

**ଲେଖକ ପରିଚୟ**

ସତ୍ୟନାରାୟଣ ରାଜଗୁରୁ (୧୯୦୩ - ୧୯୯୭) ପାରଳାଖେମୁଣ୍ଡିରେ ଜନ୍ମଗ୍ରହଣ କରିଥିଲେ । ଜଣେ ଐତିହାସିକ ଓ ଲିପିତତ୍ତ୍ୱବିଦ୍ ଭାବରେ ସେ ସୁପରିଚିତ । ସେ *'ଓଡ଼ିଆ ଭାଷାର ଉପଭାଷା'*, *'କଳିଙ୍ଗର ଆତ୍ମକଥା'*, *'ଗଙ୍ଗବଂଶର ଇତିହାସ'* ପ୍ରଭୃତି ପୁସ୍ତକ ରଚନା କରିଛନ୍ତି । ନିଜର ଆତ୍ମକାହାଣୀ *'ମୋ ଜୀବନ ସଂଗ୍ରାମ'* ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀଦ୍ୱାରା ପୁରସ୍କୃତ ହୋଇଛନ୍ତି ।

**ବିଷୟ ସୂଚନା**

ଉକ୍ତ ପାଠ୍ୟାଂଶଟି ଲେଖକଙ୍କର ଆତ୍ମକାହାଣୀ *'ମୋ ଜୀବନ ସଂଗ୍ରାମ'* ପୁସ୍ତକରୁ ସଂଗୃହୀତ । ଏଥିରେ ଲେଖକଙ୍କର ଜାତିର ପିତା ମହାତ୍ମା ଗାନ୍ଧିଙ୍କ ସହିତ ସାକ୍ଷାତ୍ ଓ ପିତାଙ୍କର ଆଦେଶ ପାଳନ, ତତ୍ ସହିତ ନିଜର ଲକ୍ଷ୍ୟପଥ ସ୍ଥିର କରିବା କଥା ବର୍ଣ୍ଣିତ ହୋଇଛି । ନିଜେ ଜଣେ ଭିକାରି ପିଲାକୁ ସାହାଯ୍ୟ କରିଥିବାରୁ ସେ କିପରି ସେନାବାହିନୀରେ ଲେଫ୍ଟନାଣ୍ଟ ହୋଇପାରିଲା ସେକଥା ଏଥିରେ ସ୍ଥାନ ପାଇଛି ।

**ସାରକଥା**

୧୯୨୧ ମସିହାରେ ଲେଖକ ଚତୁର୍ଥ ଶ୍ରେଣୀରେ ପଢୁଥିଲେ । ସେତେବେଳେ ସାରା ଭାରତରେ ସ୍ୱାଧୀନତା ଆନ୍ଦୋଳନ ବ୍ୟାପି ଯାଇଥାଏ । ପାରଳାଖେମୁଣ୍ଡିରେ ମଧ୍ୟ ତା'ର ପ୍ରଭାବ ପଡ଼ିଥିଲା । ସମ୍ବଲପୁରର ଜଣେ ବକ୍ତାଙ୍କ ପ୍ରଭାବରେ ବହୁ ଯୁବକ ଛାତ୍ର ପ୍ରଭାବିତ ହୋଇ ସ୍କୁଲ କଲେଜ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଭାଗ ନେଇଥିଲେ । ସେହିବର୍ଷ ମହାତ୍ମା ଗାନ୍ଧି ପ୍ରଚାର ଉଦ୍ଦେଶ୍ୟରେ ପାରଳାଖେମୁଣ୍ଡି ଆସିଥିଲେ । ବ୍ରିଟିଶ୍ ସରକାରଙ୍କର କଟକଣା ହେତୁ ସଭା କରିବାକୁ ସ୍ଥାନ ମିଳିଲା ନାହିଁ । ଲେଖକ କେତେଜଣ ଛାତ୍ରଙ୍କ ସହିତ ମିଶି ଜୋର୍‌କରି ପୁରୁଣା ମାର୍କେଟ ପଡ଼ିଆରେ (ଏବେ ଯେଉଁଠାରେ ମ୍ୟୁନିସପାଲ ରିଡ଼ିଙ୍ଗରୁମ୍ ତିଆରି ହୋଇଛି) ସଭା କରିବାକୁ ସ୍ଥିର କଲେ । ମହାତ୍ମା ଗାନ୍ଧିଙ୍କୁ ଦେଖିବାକୁ ଓ ତାଙ୍କର ବକ୍ତୃତା ଶୁଣିବାକୁ ପ୍ରବଳ ଜନଗହଳି ହେଲା । ପୋଲିସ୍ ତାକୁ ସମ୍ଭାଳିବାକୁ ଅସମର୍ଥ ହେଲା । ଲେଖକ କେତେଜଣ ଛାତ୍ରଙ୍କ ସହିତ ମିଶି ଚକ୍ରାକାରରେ ଘେରକରି ହାତକୁ ହାତ ଛନ୍ଦି ମଝିରେ ମହାତ୍ମାଙ୍କୁ ରଖି ସେହି ଜନଗହଳି ଭିତରେ ମଞ୍ଚ ଉପରକୁ ନେବାକୁ ଚେଷ୍ଟାକଲେ । ଲେଖକ ଠିକ୍ ମହାତ୍ମାଙ୍କର ପଛପଟେ ଚାଲିଥା'ନ୍ତି । ଜନତାର ଚାପ ଏତେ ବଢ଼ିଗଲା ଯେ ସେ ଆଉ ସମ୍ଭାଳି ନପାରି ମହାତ୍ମାଙ୍କର ପିଠି ଆଡ଼କୁ ଠେଲି ହୋଇଗଲେ । ମହାତ୍ମା ଲେଖକଙ୍କୁ ଅନାଇ ଟିକେ ହସିଦେଇ ହିନ୍ଦୀରେ କହିଲେ, *"ଆରେ ପିଲା ! ତୁ ନିଜକୁ ନିଜେ ତ ସମ୍ଭାଳି ପାରୁନାହୁଁ, ମୋତେ ସମ୍ଭାଳିବୁ କିପରି ?"*

ଏତିକି କହି ସେ ସେହି ଭିଡ଼ରୁ ବାହାରି କିପରି ଲୋକମାନଙ୍କ ଭିତରେ ଗଳି-ଗଳି ମଞ୍ଚ ଉପରକୁ ଚାଲିଗଲେ ତାହା କେହି ଜାଣିପାରିଲେ ନାହିଁ । ସେଦିନ ସେ ଯେଉଁ ଭାଷଣ ଦେଲେ, ସେଥିରେ ଜାତୀୟତାର ବୀଜ ଲେଖକ ତଥା ଅନ୍ୟମାନଙ୍କ ହୃଦୟରେ ପୋତି ଦେଲେ । ତାହା ପରେ ଲେଖକଙ୍କୁ ବେଶ୍ ପ୍ରଭାବିତ କରିଥିଲା । ସଭାରୁ ଫେରି ଲେଖକ ନିଜର ନାମ ସ୍କୁଲରୁ କାଟିଦେଇ ରାଜନୀତିରେ ମାତିଲେ । ତାଙ୍କର ବାପା ଜ୍ଞାନ ପରିପକ୍ୱ ନ ହେଲା ଯାଏ କର୍ମ କରିବାକୁ ଶକ୍ତି ମିଳିବ ନାହିଁ ବୋଲି ବୁଝାଇ ତାଙ୍କୁ ସେଥିରୁ ନିବୃତ୍ତ କରାଇଥିଲେ ।

ବାପାଙ୍କର ଏହି ଆଦେଶକୁ ସେ ଲଙ୍ଘନ କରି ନ ଥିଲେ । ବହୁ ଚିନ୍ତା ପରେ ସେ ସର୍ବପ୍ରଥମେ ଉତ୍କଳ ଜନନୀଙ୍କର ସେବା କରିବାକୁ ଠିକ୍ କଲେ । ସେ ମଧୁବାବୁ ଓ ଉତ୍କଳମଣି ଗୋପବନ୍ଧୁଙ୍କୁ ଅନୁସରଣ କରି ନିଜ ଜୀବନର ଲକ୍ଷ୍ୟ ସାଧନରେ ଅଗ୍ରସର ହେଲେ ।

ଦିନେ ଲେଖକ କେତେଜଣ ଛାତ୍ରଙ୍କ ସହିତ ବସି ନିଜ ଘରର ବାରଣ୍ଡାରେ ଗପ କରୁଥିଲେ । ଏତିକିବେଳେ ଗୋଟିଏ ଗରିବ ବାଳକ ଭିକ୍ଷା ପାଇବା ଆଶାରେ ତାଙ୍କ ପାଖକୁ ଆସିଲା । ଅନାଥ ପିଲାଟିର ନାମ ବ୍ରହ୍ମଚାରୀ ମୁଇଁ, ଆଉ ତା'ର ଘର ଖଲ୍ଲିକୋଟରେ । ତା'ର ବୟସ ବାରବର୍ଷ । ତାକୁ ସାହାଯ୍ୟ କଲେ ସେ ପାଠ ପଢ଼ିବ କି ନାହିଁ ବୋଲି ଲେଖକ ପଚାରିଲେ । ସେକଥା ଶୁଣି ତା'ର ମୁହଁ ଉତ୍‌ଫୁଲ୍ଲ ଦେଖାଗଲା । ଲେଖକ ନିଜର ସାଙ୍ଗମାନଙ୍କୁ ପ୍ରସ୍ତାବ ଦେଲେ ଯେ ସମସ୍ତେ ମିଶି ଚାନ୍ଦା କରି ତାକୁ ପାଠ ପଢ଼ାଇ ମଣିଷ କରାଇବେ ।

ତାଙ୍କ କଥାରେ ସାଙ୍ଗମାନେ ଉତ୍ସାହିତ ହୋଇ ସାହାଯ୍ୟ କଲେ । ଲେଖକ ତା'ର ଖିଆପିଆର ବନ୍ଦୋବସ୍ତ ରାଧାକାନ୍ତ ମଠର ମହନ୍ତଙ୍କୁ ଅନୁରୋଧ କରି କରାଇଲେ । ତା'ର ଦରମା ପାଇଁ ସ୍କଲାରସିପ୍‌ର ବ୍ୟବସ୍ଥା କରିଦେଲେ । ନିଜର ବାପାଙ୍କୁ କହି ବ୍ରହ୍ମଚାରୀ ପାଇଁ ଏକ ଅବୈତନିକ ସ୍ଥାନ ଯୋଗାଡ଼ କଲେ । ବ୍ରହ୍ମଚାରୀ ଅଧ୍ୟବସାୟ ବଳରେ ଅଳ୍ପକାଳ ମଧ୍ୟରେ ତୃତୀୟ ଶ୍ରେଣୀ ପାସ୍ କଲା । ବ୍ରହ୍ମଚାରୀ ଅଧିକ ପାଠ ନ ପଢ଼ି ଯୁଦ୍ଧଶିକ୍ଷା କରିବା ନିମିତ୍ତ ମହାରାଜାଙ୍କ ସୁପାରିସରେ ମାନ୍ଦ୍ରାଜ ଚାଲିଗଲା ।

୧୯୪୩ ମସିହାରେ ଲେଖକ ପୁରୀରୁ ପାରଳାଖେମୁଣ୍ଡି ଫେରୁଥିଲେ । ଖୋର୍ଦ୍ଧା ଷ୍ଟେସନରେ ମାନ୍ଦ୍ରାଜ ମେଲ୍‌କୁ ସେ ଅପେକ୍ଷା କରିଥିଲେ । ଏତିକିବେଳେ ଏକ ସ୍ୱତନ୍ତ୍ର ମିଲିଟାରୀ ଗାଡ଼ି ଆସି ଖୋର୍ଦ୍ଧାରେ ପହଞ୍ଚିଲା । ସେହି ଗାଡ଼ିର ଏକ ସ୍ୱତନ୍ତ୍ର ବଗିରୁ ଜଣେ ସାହେବ ଓହ୍ଲାଇ ପଡ଼ି ଲେଖକଙ୍କ ହାତକୁ ଧରି ନମସ୍କାର କଲେ । ନିଜର ପରିଚୟ ଦେଇ ସେ କହିଥିଲେ ଯେ ସେ ସେହି ବ୍ରହ୍ମଚାରୀ ମୁଇଁ । ତାଙ୍କ ଦୟାରୁ ଆଜି ଲେଫ୍‌ଟନାଣ୍ଟ ପଦବୀରେ ନିଯୁକ୍ତ ହୋଇ ଦେଶ ମାଆର ସେବାରେ ଉଚ୍ଚତମ ସ୍ଥାନ ଅଧିକାର କରିଛି । ତାଙ୍କ ଉଦ୍ୟମରୁ ଯେଉଁ ପିଲାଟି ସ୍କୁଲରେ ନାମ ଲେଖାଇ ପାରିଥିଲା, ଆଜି ସେ ଭାଗ୍ୟ ବଳରେ କେତେ ଉଚ୍ଚକୁ ଉଠିପାରିଛି । ତେଣୁ ସୁବିଧା ଓ ପାରିପାର୍ଶ୍ୱିକ ଅବସ୍ଥା ହିଁ ମଣିଷକୁ ଉଚ୍ଚ ବା ନୀଚ କରିଥାଏ ।

### କଠିନ ଶବ୍ଦାର୍ଥ

ଆହ୍ୱାନ – ଡାକରା । ବକ୍ତା – ଯିଏ କହିପାରେ । ଚକ୍ରାକାର – ଗୋଲାକାର । ସ୍ମିତହାସ୍ୟ – ଅଳ୍ପ ହସି । ନାତିଦୀର୍ଘ – ଯାହା ବେଶି ବଡ଼ ନୁହେଁ । ବୀଜ – ମଞ୍ଜି । ରୋପଣ – ପୋତିବା । ଅଙ୍କୁରିତ – ମଞ୍ଜିରୁ ଗଛ ହେବା । ନନା – ବାପା । ସହ୍ୟ – ସହିବାର ଯୋଗ୍ୟ । ପନ୍ଥା – ବାଟ । ନିବୃତ୍ତ କଲେ – ଅଟକାଇଲେ । ପରିପକ୍ୱ – ପୂର୍ଣ୍ଣରୂପେ ପରିଣତିପ୍ରାପ୍ତ । ଲଙ୍ଘନ – କାଟିବା । ବଳିଷ୍ଠ – ସର୍ବାଧିକ ବଳୁଆ । ଉତ୍କଳ ସମ୍ମିଳନୀ – ବିଚ୍ଛିନ୍ନ ଓଡ଼ିଶାକୁ ଏକତ୍ରିତ କରି ଗଢ଼ି ତୋଳିବାପାଇଁ ଗଠିତ ହୋଇଥିବା ସଭାର ନାମ । ପିତାମହ – ଜେଜେମାଆ । ଚୁକୁଟା – ଗଣ୍ଠିଲି । ଗୌରବର୍ଣ୍ଣ – ଗୋରା ରଙ୍ଗର । ଅନାହାରକ୍ଳିଷ୍ଟ – କିଛିଦିନ ଧରି ଖାଇନାହିଁ । ଶୁଷ୍କ – ଶୁଖିଲା । ଅନାଥ – ଯାହାର କେହି ନାହିଁ । ସ୍କଲାରସିପ୍ – ବୃତ୍ତି । ମହାରାଜା – ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି । ଅନୁଗ୍ରହ – ଦୟା । ମେଧାବୀ – ବୁଦ୍ଧିମାନ୍ । ଅବୈତନିକ – ଯେଉଁଥିରେ ଦରମା ଦେବାକୁ ପଡ଼େ ନାହିଁ । ଅଧ୍ୟବସାୟ – ଅବିରାମ ପରିଶ୍ରମ । ଭାର – ଦାୟିତ୍ୱ । ଅନୁଗତ – ଆଶ୍ରିତ । ସ୍ପେଶାଲ – ସ୍ୱତନ୍ତ୍ର । ମଣ୍ଡିତ – ପିନ୍ଧିଥିବା । ହ୍ୟାଟ୍ – ଟୋପି । ମହନ୍ତ – ମଠର ମୁଖ୍ୟ ।



## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ଲେଖକ ଚତୁର୍ଥ ଶ୍ରେଣୀରେ ପଢୁଥିବାବେଳେ ଦେଶର ଅବସ୍ଥା କିପରି ଥିଲା ?**

ଉ – ଲେଖକ ଚତୁର୍ଥ ଶ୍ରେଣୀରେ ପଢୁଥିବାବେଳେ ମହାତ୍ମା ଗାନ୍ଧିଙ୍କର ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନ ସାରା ଦେଶରେ ବ୍ୟାପି ଯାଇଥିଲା ।

**(ଖ) ୧୯୨୧ ମସିହାରେ ଭାରତରେ ହୋଇଥିବା ଆନ୍ଦୋଳନର ନାମ କ'ଣ ?**

ଉ – ୧୯୨୧ ମସିହାରେ ଭାରତରେ ହୋଇଥିବା ଆନ୍ଦୋଳନର ନାମ ଅସହଯୋଗ ଆନ୍ଦୋଳନ ।

**(ଗ) ମହାତ୍ମା ଗାନ୍ଧି ପାରଳାଖେମୁଣ୍ଡି ଆସି କ'ଣ କଲେ ?**

ଉ – ମହାତ୍ମା ଗାନ୍ଧି ପ୍ରଚାର ଉଦ୍ଦେଶ୍ୟରେ ପାରଳାଖେମୁଣ୍ଡି ଆସି ସଭା କଲେ ଓ ସେହି ସଭାରେ ଜାତୀୟତାର ବୀଜ ଲୋକମାନଙ୍କ ହୃଦୟରେ ରୋପଣ କରିଦେଲେ ।

**(ଘ) ଛାତ୍ରମାନେ ଗାନ୍ଧିଜୀଙ୍କୁ କିପରି ସୁରକ୍ଷା ଦେଇଥିଲେ ?**

ଉ – ଛାତ୍ରମାନେ ଚକ୍ରାକାରରେ ଘେର କରି ହାତକୁ ହାତ ଛନ୍ଦି ମଝିରେ ମହାତ୍ମାଙ୍କୁ ରଖି ଜନଗହଳି ମଧ୍ୟରେ ମଞ୍ଚ ଉପରକୁ ନେବାକୁ ଚେଷ୍ଟା କଲେ ।

**(ଙ) ଗାନ୍ଧିଜୀ ଲେଖକଙ୍କୁ କ'ଣ କହିଥିଲେ ?**

ଉ – ଜନତାର ଚାପକୁ ସମ୍ଭାଳି ନପାରି ଲେଖକ ମହାତ୍ମାଙ୍କର ପିଠି ଆଡ଼କୁ ଠେଲି ହୋଇଯାଇଥିଲେ । ଗାନ୍ଧିଜୀ ଏପରି ଅବସ୍ଥାରେ ତାଙ୍କ ଆଡ଼କୁ ଚାହିଁ ଟିକେ ହସିଦେଇ ହିନ୍ଦୀରେ କହିଥିଲେ, *"ଆରେ ପିଲା ! ତୁ ନିଜକୁ ନିଜେ ତ ସମ୍ଭାଳି ପାରୁନାହୁଁ, ମୋତେ ସମ୍ଭାଳିବୁ କିପରି ?"*

୨ । ଉତ୍ତର ଲେଖ ।

**(କ) ଲେଖକ କାହାକୁ ନିଜର ପିତାମହୀ ଓ କାହାକୁ ଜନନୀ ବୋଲି କହିଛନ୍ତି ?**

ଉ – ଲେଖକ ଭାରତମାତାକୁ ନିଜର ପିତାମହୀ ଓ ଉତ୍କଳକୁ ଜନନୀ ବୋଲି କହିଛନ୍ତି ।

**(ଖ) ଗରିବ ବାଳକଟିର ବେଶଭୂଷା କିପରି ଥିଲା ?**

ଉ – ଗରିବ ବାଳକଟି ଛିଣ୍ଡାଲୁଗା ଖଣ୍ଡେ ପିନ୍ଧିଥିଲା । ମଇଳା ଚୁକୁଟାଟିଏ ହାତରେ ଧରିଥିଲା । ତା'ର ବର୍ଣ୍ଣ ଗୋରା । ସେ ସୁସ୍ଥସବଳ ଥିଲା । ମାତ୍ର ବହୁତଦିନ ଧରି ନ ଖାଇଥିବାରୁ ତା'ର ମୁହଁ ଶୁଖିଲା ଦେଖାଯାଉଥିଲା ।

**(ଗ) ଲେଖକ ପିଲାଟିକୁ କିପରି ସାହାଯ୍ୟ କଲେ ?**

ଉ – ଲେଖକ ପିଲାଟି ସହ କଥାବାର୍ତ୍ତାରୁ ଜାଣିଲେ ଯେ ତା'ର ପଢ଼ିବାର ଆଗ୍ରହ ଅଛି । ତେଣୁ ଲେଖକ ତା'ର ବହିପତ୍ର, ଜାମା- ଲୁଗା, ଖାଇବା ପିଇବା, ଦରମା ପାଇଁ ସ୍କଲାରସିପ୍‌ର ବ୍ୟବସ୍ଥା କରି ପିଲାଟିର ପାଠ ପଢ଼ିବାର ବନ୍ଦୋବସ୍ତ କରିଦେଇଥିଲେ ।

**(ଘ) ଉକ୍ତ ପିଲାଟି ସହ ଲେଖକଙ୍କର ପୁଣି କେଉଁ ପରିସ୍ଥିତିରେ ସାକ୍ଷାତ୍ ହେଲା ?**

ଉ – ୧୯୪୩ ମସିହାରେ ଲେଖକ ପୁରୀରୁ ପାରଳାଖେମୁଣ୍ଡି ଫେରୁଥିଲେ । ଖୋର୍ଦ୍ଧା ଷ୍ଟେସନରେ ସେ ମାନ୍ଦ୍ରାଜ ମେଲ୍‌କୁ ଅପେକ୍ଷା କରିଥିଲେ । ଏହି ସମୟରେ ଗୋଟିଏ ସ୍ୱତନ୍ତ୍ର ମିଲିଟାରୀ ଗାଡ଼ି ମାନ୍ଦ୍ରାଜରୁ ଆସି ଖୋର୍ଦ୍ଧାରେ

ପହଞ୍ଚିଲା । ପ୍ଲାଟଫର୍ମରେ ଛିଡ଼ା ହୋଇଥିବାବେଳେ ସେହି ପିଲାଟି ନିଜେ ସେହି ଗାଡ଼ିର ସ୍ୱତନ୍ତ୍ର ବଗିରୁ ଓହ୍ଲାଇ ଆସି ଲେଖକଙ୍କୁ ନମସ୍କାର କଲା । ଏହିପରି ଭାବରେ ଲେଖକଙ୍କର ସେହି ପିଲାଟି ସହ ସାକ୍ଷାତ୍ ହେଲା ।

**(ଙ) ମିଲିଟାରୀ ପୋଷାକ ପିନ୍ଧିଥିବା ସେଇ ଯୁବକଙ୍କର ନାଆଁ କ'ଣ ?**

ଉ – ମିଲିଟାରୀ ପୋଷାକ ପିନ୍ଧିଥିବା ସେହି ଯୁବକଙ୍କର ନାମ ବ୍ରହ୍ମଚାରୀ ମୁଇଁ ।

**୩ । କେଉଁ ପ୍ରସଙ୍ଗରେ କୁହାଯାଇଛି ?**

**(କ) ''ତୁ ନିଜକୁ ନିଜେ ତ ସମ୍ଭାଳି ପାରୁନାହୁଁ, ମୋତେ ସମ୍ଭାଳିବୁ କିପରି ?''**

ଉ – ଯେତେବେଳେ ଲେଖକ ଜନତାର ଭିଡ଼ ମଧ୍ୟରେ ଚାପିହୋଇ ସମ୍ଭାଳି ନ ପାରି ମହାତ୍ମାଙ୍କ ପିଠି ଆଡ଼କୁ ଠେଲି ହୋଇଗଲେ, ସେହି ସମୟରେ ଗାନ୍ଧିଜୀ ଲେଖକଙ୍କୁ ଏକଥା କହିଥିଲେ ।

**(ଖ) ''ମନୁଷ୍ୟର ଜ୍ଞାନ ଓ କର୍ମ ଏକା ସ୍ତରରେ ରହିବା ଆବଶ୍ୟକ । ତୁମର ଜ୍ଞାନ ପରିପକ୍ୱ ହେଲେ ଦେଶ ପାଇଁ କର୍ମ କରିବାକୁ ଶକ୍ତି ପାଇବ ।''**

ଉ – ମହାତ୍ମା ଗାନ୍ଧିଙ୍କ ଭାଷଣରେ ପ୍ରଭାବିତ ହୋଇ ଲେଖକ ଯେତେବେଳେ ସ୍କୁଲରୁ ନିଜର ନାମକୁ କାଟି ରାଜନୀତିରେ ମାତିଲେ, ସେହି ପ୍ରସଙ୍ଗରେ ତାଙ୍କର ନାନା ତାଙ୍କୁ ସେହି ବାଟରୁ ଓହରିଯିବାକୁ ପରାମର୍ଶ ଦେଇ ଏକଥା କହିଥିଲେ ।

**(ଗ) ''ସୁବିଧା ଓ ପାରିପାର୍ଶ୍ୱିକ ଅବସ୍ଥା ହିଁ ମନୁଷ୍ୟକୁ ଉଚ୍ଚ କିମ୍ବା ନୀଚ କରିଥାଏ ।''**

ଉ – ଲେଖକଙ୍କ ଉଦ୍ୟମ ବଳରେ ଭିକାରି ବ୍ରହ୍ମଚାରୀ ମୁଇଁ ସେନାବାହିନୀର ଲେଫ୍‌ଟନାଣ୍ଟ୍ ହୋଇପାରିଥିଲା । ଲେଖକଙ୍କ ଉଦ୍ୟମ ଓ ନିଜ ଭାଗ୍ୟ ବଳରେ ପିଲାଟି ଏତେ ଉଚ୍ଚକୁ ଉଠିପାରିଲା । ଏହାକୁ ଲକ୍ଷ୍ୟକରି ଲେଖକ ଏହିକଥା କହିଛନ୍ତି ।

**୪ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ ବ୍ୟବହାର କରି ବାକ୍ୟ ଗଢ଼ ।**

ବକ୍ତୃତା, ମହାତ୍ମା, ବୀଜ, ଅଧ୍ୟବସାୟ, ପରିପକ୍ୱ

ଉ – **ବକ୍ତୃତା** – ହରି ସଭାରେ <u>ବକ୍ତୃତା</u> ଦେଲା ।

**ମହାତ୍ମା** – ଗୋପବନ୍ଧୁ ଓଡ଼ିଶାବାସୀଙ୍କ ପାଇଁ ଜଣେ <u>ମହାତ୍ମା</u> ଥିଲେ ।

**ବୀଜ** – ପିଲାଟି <u>ବୀଜ</u> ରୋପଣ କରୁଛି ।

**ଅଧ୍ୟବସାୟ** – କଠିନ <u>ଅଧ୍ୟବସାୟ</u>ର ଫଳ ବ୍ୟର୍ଥ ହୁଏ ନାହିଁ ।

**ପରିପକ୍ୱ** – ଜ୍ଞାନ <u>ପରିପକ୍ୱ</u> ହେଲେ କର୍ମ କରିବାର ଶକ୍ତି ମିଳେ ।

**୫ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଲେଖ ।**

**(କ) ଅସହଯୋଗ ଆନ୍ଦୋଳନ ସମୟରେ ଲେଖକ କିପରି ସ୍ୱାଧୀନତା ସଂଗ୍ରାମ ସହିତ ସଂଶ୍ଳିଷ୍ଟ ଥିଲେ ?**

ଉ – ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ ଦେଶବ୍ୟାପି ଚାଲିଥିଲା । ସେହି ବର୍ଷ ମହାତ୍ମା ଗାନ୍ଧି ପାରଳାଖେମୁଣ୍ଡି ଆସିଥିଲେ । ମାତ୍ର ତାଙ୍କୁ ସଭା କରିବାକୁ ସ୍ଥାନ ମିଳି ନ ଥିଲା । ଲେଖକ ଓ ଅନ୍ୟ ଛାତ୍ରମାନେ ପୁରୁଣା ମାର୍କେଟ ପଡ଼ିଆରେ ଜୋର୍ କରି ସଭା କରିବାକୁ ସ୍ଥିର କଲେ । ଗାନ୍ଧିଜୀଙ୍କୁ ଲୋକଙ୍କ ଗହଳିରୁ ରକ୍ଷାକରି ସଭାମଞ୍ଚକୁ ନେବାର ଦାୟିତ୍ୱ ଲେଖକ ଅନ୍ୟ ଛାତ୍ରମାନଙ୍କ ସହିତ ଗ୍ରହଣ କରିଥିଲେ । ମହାତ୍ମା ଗାନ୍ଧିଙ୍କ ଭାଷଣରେ ଲେଖକ ବେଶ୍ ପ୍ରଭାବିତ ହୋଇଥିଲେ । ଫଳରେ ସଭାରୁ ଫେରି ସ୍କୁଲରୁ ନିଜର ନାମ କାଟି ରାଜନୀତିରେ ମାତିଥିଲେ । ପିତାଙ୍କ ହସ୍ତକ୍ଷେପ ଯୋଗୁଁ ସେ ସେଥିରୁ ନିବୃତ୍ତ ହେଲେ । ବହୁ ଚିନ୍ତାକରି ସେ ମଧୁବାବୁ, ଗୋପବନ୍ଧୁଙ୍କ ଆଦର୍ଶ ଅନୁସରଣ କରି ଉତ୍କଳ ଜନନୀର ସେବା କରିବାକୁ ସ୍ଥିର କଲେ । ଜନ୍ମଭୂମିର ସେବାକୁ ନିଜର ପ୍ରଥମ କର୍ତ୍ତବ୍ୟ ଭାବରେ ସେ ଗ୍ରହଣ କଲେ ।



**(ଖ) 'ବ୍ରହ୍ମଚାରୀ ମୁଇଁ'ର ଭବିଷ୍ୟତ ଗଠନରେ ଲେଖକ କିପରି ସହାୟକ ହେଲେ ?**

ଉ – କୌଣସି ଏକ ଦିନ ଲେଖକ ନିଜର ସାଙ୍ଗମାନଙ୍କ ସହ ଘରର ବାରଣ୍ଡାରେ ବସି ଗପ କରୁଥିଲେ । ଏତିକିବେଳେ ଜଣେ ଭିକାରି ବାଳକ ତାଙ୍କ ପାଖକୁ ଭିକ୍ଷା ପାଇବା ଆଶାରେ ଆସିଲା । ପିଲାଟି ଛିଣ୍ଡା ଲୁଗା ପିନ୍ଧିଥିଲା ଓ ଅନାହାରକ୍ଲିଷ୍ଟ ଥିଲା । ଲେଖକ ତା'ର ପରିଚୟ ବୁଝିଲେ । ସାହାଯ୍ୟ କଲେ ସେ ପାଠ ପଢ଼ିବ କି ନାହିଁ ବୋଲି ତାକୁ ପଚାରିଲେ । ତା'ର ପଢ଼ିବାରେ ଆଗ୍ରହ ଥିବା ଜାଣିପାରି ସାଙ୍ଗମାନଙ୍କଠାରୁ ଚାନ୍ଦାକରି ପିଲାଟିକୁ ପଢ଼ାଇବାକୁ ସ୍ଥିର କଲେ । ତାକୁ ତାଙ୍କର ସାଙ୍ଗମାନେ ବହିପତ୍ର ଓ ଜାମାଲୁଗା ଦେଲେ । ଲେଖକ ତା'ର ଖିଆପିଆ ଓ ପାଠପଢ଼ା ପାଇଁ ସ୍କଲାର୍‌ସିପ୍ ବ୍ୟବସ୍ଥା କରାଇଦେଲେ । ବାପାଙ୍କୁ କହି ତା'ପାଇଁ ଗୋଟିଏ ଅବୈତନିକ ସ୍ଥାନ ଯୋଗାଡ଼ କରିଦେଲେ । ଏହିଭଳି ଭାବରେ ଲେଖକ ବ୍ରହ୍ମଚାରୀ ମୁଇଁର ଭବିଷ୍ୟତ ଗଠନରେ ସହାୟକ ହେଲେ ।

**(ଗ) ପିଲାଟିର ଲେଖକଙ୍କ ପ୍ରତି ଥିବା କୃତଜ୍ଞତା କିପରି ପ୍ରମାଣିତ ହେଲା ?**

ଉ – ପୁରୀରୁ ପାରଳାଖେମୁଣ୍ଡି ଯିବା ବାଟରେ ଖୋର୍ଦ୍ଧା ଷ୍ଟେସନ୍‌ରେ ମାନ୍ଦ୍ରାଜ ମେଲ୍‌କୁ ଅପେକ୍ଷା କରି ଲେଖକ ସେଠାରେ ଥିବା ପ୍ଲାଟ୍‌ଫର୍ମରେ ଠିଆ ହୋଇଥିଲେ । ଏତିକିବେଳେ ଏକ ସ୍ୱତନ୍ତ୍ର ମିଲିଟାରୀ ଗାଡ଼ି ମାନ୍ଦ୍ରାଜରୁ ଆସି ଖୋର୍ଦ୍ଧା ଷ୍ଟେସନ୍‌ରେ ପହଞ୍ଚିଲା । ସେହି ଗାଡ଼ିରୁ ଏକ ସ୍ୱତନ୍ତ୍ର ବଗିରୁ ଓହ୍ଲାଇପଡ଼ି ମିଲିଟାରୀ ପୋଷାକ ପିନ୍ଧା ଜଣେ ଉଚ୍ଚ କର୍ମଚାରୀ ଲେଖକଙ୍କୁ ନମସ୍କାର କଲା ଏବଂ ସେ ବ୍ରହ୍ମଚାରୀ ମୁଇଁ ବୋଲି ନିଜର ପରିଚୟ ଦେଲା । ଲେଖକଙ୍କର କରୁଣାରୁ ସେ ଯେ ଆଜି ସେହି ଲେଫ୍‌ଟନାଣ୍ଟ୍ ପଦବୀରେ ନିଯୁକ୍ତ ହୋଇପାରିଛି, ତାହା ମଧ୍ୟ ଲେଖକଙ୍କୁ ଜଣାଇଥିଲା । ଏହି କଥାରୁ ପିଲାଟିର ଲେଖକଙ୍କ ପ୍ରତି ଥିବା କୃତଜ୍ଞତା ପ୍ରମାଣିତ ହୋଇ ପାରିଥିଲା ।

**୬ । ପ୍ରଭାବ ଶବ୍ଦର ବିଶେଷଣ ଯେପରି ପ୍ରଭାବିତ, ସେଇଭଳି ନିମ୍ନ ବିଶେଷ୍ୟ ପଦଗୁଡ଼ିକର ବିଶେଷଣ କ'ଣ ହେବ ଲେଖ ।**

ପରିଚୟ, ନିର୍ବାଚନ, ଆମୋଦ, ପୁଲକ

ଉ –

| ବିଶେଷ୍ୟ | ବିଶେଷଣ |
|---|---|
| ପରିଚୟ | ପରିଚିତ |
| ନିର୍ବାଚନ | ନିର୍ବାଚିତ |
| ଆମୋଦ | ଆମୋଦିତ |
| ପୁଲକ | ପୁଲକିତ |

**୭ । ଲିଙ୍ଗ ପରିବର୍ତ୍ତନ କରି ଲେଖ ।**

ପିତାମହୀ, ଜନନୀ, ଛାତ୍ର, ମହାରାଜା, ପିତା, ଭିକାରି

ଉ –

| | |
|---|---|
| ପିତାମହୀ | ପିତାମହ |
| ଜନନୀ | ଜନକ |
| ଛାତ୍ର | ଛାତ୍ରୀ |
| ମହାରାଜା | ମହାରାଣୀ |
| ପିତା | ମାତା |
| ଭିକାରି | ଭିକାରୁଣୀ |

୮। **ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ଶୂନ୍ୟସ୍ଥାନ ପୂରଣ କର ।**

(କ) ୧୯୨୧ ମସିହାରେ ମହାତ୍ମା ଗାନ୍ଧି ପ୍ରଚାର ଉଦ୍ଦେଶ୍ୟରେ ____ କୁ ଆସିଥିଲେ ।
(ସମ୍ବଲପୁର, ପାରଳାଖେମୁଣ୍ଡି, ଖୋର୍ଦ୍ଧା, କଟକ)

(ଖ) କଠିନ ____ ବଳରେ ସେ ଅଳ୍ପକାଳ ମଧ୍ୟରେ ତୃତୀୟ ଶ୍ରେଣୀ ପାଶ୍ କରିଥିଲା ।
(ଅଧ୍ୟବସାୟ, ଶକ୍ତି, ବକ୍ତୃତା)

ଉ – (କ) ପାରଳାଖେମୁଣ୍ଡି (ଖ) ଅଧ୍ୟବସାୟ ।

୯। **ଏକଥା କିଏ କାହାକୁ କହିଛନ୍ତି ?**

(କ) **''ତୁମ ଜ୍ଞାନ ପରିପକ୍ୱ ହେଲେ ଦେଶପାଇଁ କାମ କରିବାକୁ ଶକ୍ତି ପାଇବ ।''**

ଉ – ଏକଥା ଲେଖକଙ୍କର ନନା ଲେଖକଙ୍କୁ କହିଥିଲେ ।

(ଖ) **''ମୋର କେହି ନାହାନ୍ତି । ବୁଢ଼ୀ ମା' ଥିଲେ, ମରିଗଲେ ।''**

ଉ – ଏକଥା ବ୍ରହ୍ମଚାରୀ ମୁଇଁ (ଭିକାରି ବାଳକ) ଲେଖକଙ୍କୁ କହିଛି ।

(ଗ) **''ଆପଣଙ୍କ କରୁଣାରୁ ମୁଁ ଆଜି ଏହି ଲେଫ୍ଟନାଣ୍ଟ ପଦବୀରେ ନିଯୁକ୍ତ ହୋଇପାରିଛି ।''**

ଉ – ଏକଥା ବ୍ରହ୍ମଚାରୀ ମୁଇଁ ଲେଖକଙ୍କୁ କହିଛି ।

୧୦। **ଉପଯୁକ୍ତ ବିରାମଚିହ୍ନ ଦେଇ ତଳଲିଖିତ ଗଦ୍ୟାଂଶଟିକୁ ଲେଖ ।**

ସେ ମୋ ଆଡ଼େ ଚାହିଁ ସ୍ମିତହାସ୍ୟ କରି ହିନ୍ଦୀରେ କହିଲେ ଆରେ ପିଲା ତୁ ନିଜକୁ ନିଜେ ତ ସମ୍ଭାଳି ପାରୁନାହୁଁ ମୋତେ ସମ୍ଭାଳିବୁ କିପରି

ଉ – ସେ ମୋ ଆଡ଼େ ଚାହିଁ ସ୍ମିତହାସ୍ୟ କରି ହିନ୍ଦୀରେ କହିଲେ, ''ଆରେ ପିଲା ! ତୁ ନିଜକୁ ନିଜେ ତ ସମ୍ଭାଳି ପାରୁନାହୁଁ, ମୋତେ ସମ୍ଭାଳିବୁ କିପରି ?''

## ତୁମ ପାଇଁ କାମ

୧। ଲେଖକ ସତ୍ୟନାରାୟଣ ରାଜଗୁରୁଙ୍କ ଆତ୍ମଜୀବନୀ 'ମୋ ଜୀବନ ସଂଗ୍ରାମ' ସଂଗ୍ରହ କରି ପଢ଼ ।

୨। ନିଜ ଘର ପାଖରେ କେହି ଗରିବ ଅଥଚ ମେଧାବୀ ପିଲା ଥିଲେ, ତା'ର ପଢ଼ିବା ସକାଶେ କିଛି ସାହାଯ୍ୟ ବନ୍ଦୋବସ୍ତ କରିବାକୁ ନିଜର ଅଭିଭାବକଙ୍କୁ ଅନୁରୋଧ କର ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧। **ଲିଙ୍ଗ ପରିବର୍ତ୍ତନ କର ।**

ସହାୟକ – ସହାୟିକା
ଲେଖକ – ଲେଖିକା
ସଭାପତି – ସଭାନେତ୍ରୀ
ଛାତ୍ର – ଛାତ୍ରୀ
ଶିକ୍ଷକ – ଶିକ୍ଷିକା/ଶିକ୍ଷୟିତ୍ରୀ



୨। **ସଂକ୍ଷେପରେ ଉତ୍ତର ଦିଅ ।**

(କ) **ରାଜନୀତିରେ ଭାଗ ନେବାର ଦେଖି ଲେଖକଙ୍କ ନନା ଲେଖକଙ୍କୁ କ'ଣ କହିଥିଲେ ?**

ଉ– ରାଜନୀତିରେ ଭାଗ ନେବାର ଦେଖି ଲେଖକଙ୍କ ନନା ଆଦୌ ସହ୍ୟ କରିପାରିଲେ ନାହିଁ । ସେ ତାଙ୍କୁ ଏହି ମାର୍ଗରୁ ନିବୃତ୍ତ କରାଇ କହିଲେ, *''ମନୁଷ୍ୟର ଜ୍ଞାନ ଓ କର୍ମ ଏକା ସ୍ତରରେ ରହିବା ଆବଶ୍ୟକ । ତୁମର ଜ୍ଞାନ ପରିପକ୍ୱ ହେଲେ ଦେଶପାଇଁ କର୍ମ କରିବାକୁ ଶକ୍ତି ପାଇବ । ସେତେବେଳଯାଏ ତୁମେ ଅପେକ୍ଷା କରିବା ଆବଶ୍ୟକ ।''*

(ଖ) **ଲେଖକଙ୍କର ମତରେ ପ୍ରଥମ କର୍ତ୍ତବ୍ୟଟି କ'ଣ ?**

ଉ– ଲେଖକଙ୍କ ମତରେ ଉତ୍କଳ ଜନନୀଙ୍କର ସେବା କରିବା ହେଉଛି ପ୍ରଥମ କର୍ତ୍ତବ୍ୟ ।

(ଗ) **ଦ୍ୱିତୀୟ ପୃଥିବୀ ମହାସମର ପୂର୍ବରୁ ମହାରାଜାଙ୍କ ଉପରେ କେଉଁ ଭାର ଦିଆଗଲା ?**

ଉ– ଦ୍ୱିତୀୟ ପୃଥିବୀ ମହାସମର ପୂର୍ବରୁ ଗୋଟିଏ ଗୋଟିଏ ଇଣ୍ଡିଆନ୍ ବାଟାଲିୟନ୍ ଭାରତର ପ୍ରତି ଅଞ୍ଚଳରେ ଗଢ଼ିବା ନିୟମ ଥାଏ । ମାନ୍ଦ୍ରାଜର ପ୍ରତି ଜିଲ୍ଲାରୁ ସୁସ୍ଥସବଳ ଲୋକଙ୍କୁ ବାଛି ସେଥିରେ ନାମ ଲେଖାଇବା କାର୍ଯ୍ୟ ଚାଲିଥାଏ । ଗଞ୍ଜାମରୁ ବାଳକମାନଙ୍କୁ ବାଛି ଯୁଦ୍ଧଶିକ୍ଷା କରିବାକୁ ପଠାଇବାପାଇଁ ମହାରାଜାଙ୍କ ଉପରେ ଭାର ଦିଆଗଲା ।

(ଘ) **ବ୍ରହ୍ମଚାରୀ ମୁଇଁକୁ ଯୁଦ୍ଧଶିକ୍ଷାରେ ଭାଗ ନେବାର ଦେଖି ଲେଖକ କ'ଣ ଭାବିଲେ ?**

ଉ– ବ୍ରହ୍ମଚାରୀ ମୁଇଁକୁ ଯୁଦ୍ଧଶିକ୍ଷାରେ ଭାଗ ନେବାର ଦେଖି ଲେଖକ ବେଶ୍ ବିବ୍ରତ ହୋଇପଡ଼ିଲେ । କାରଣ ସେ ଶ୍ରେଣୀରେ ଭଲ ପଢ଼ୁଥିଲା । ତାଙ୍କର ସାଥୀହୋଇ ସବୁ କାମ କରୁଥିଲା । ତାଙ୍କର ଅନୁଗତ ହୋଇ ରହିଥିଲା । ଏଥିରେ ଭାଗନେଲେ ଏସବୁ ଆଉ ହୋଇପାରିବ ନାହିଁ ବୋଲି ଲେଖକ ଭାବିଲେ ।

(ଙ) **ଲେଖକ କାହାକୁ ଜନନୀ ଓ କାହାକୁ ପିତାମହୀ ବୋଲି କହିଛନ୍ତି ?**

ଉ– ଲେଖକ ଜନ୍ମଭୂମି ଉତ୍କଳକୁ ନିଜର ଜନନୀ ଏବଂ ଭାରତମାତାକୁ ପିତାମହୀ ବୋଲି କହିଛନ୍ତି । ସେ ନିଜ ଜନନୀ ଉତ୍କଳର ସେବାକୁ ପ୍ରଥମ କର୍ତ୍ତବ୍ୟ ଭାବେ ସ୍ଥିର କରିଛନ୍ତି ।

(ଚ) **ବ୍ରହ୍ମଚାରୀ ମୁଇଁ ଯୁଦ୍ଧଶିକ୍ଷାରେ ଭାଗନେବା ଦେଖି ଲେଖକ କାହିଁକି ବିବ୍ରତ ହେଲେ ?**

ଉ– ବ୍ରହ୍ମଚାରୀ ମୁଇଁ ଭଲ ପାଠ ପଢୁଥିଲା, ଲେଖକଙ୍କ ସହ ସାଥୀ ହୋଇ ସବୁ କାମ କରୁଥିଲା ଓ ତାଙ୍କର ଏକାନ୍ତ ଅନୁଗତ ଥିଲା । ଯୁଦ୍ଧଶିକ୍ଷାରେ ଭାଗ ନେଲେ ଏସବୁ ହୋଇପାରିବ ନାହିଁ ଭାବି ଲେଖକ ବିବ୍ରତ ହେଲେ ।

(ଛ) **ଲେଖକଙ୍କ ମନରେ କାହିଁକି ଗର୍ବ ସଞ୍ଚାର ହେଲା ?**

ଉ– ଲେଖକଙ୍କ ସାହାଯ୍ୟ ଫଳରେ ବ୍ରହ୍ମଚାରୀ ମୁଇଁ ପରି ଜଣେ ଭିକାରି ପିଲା ଆଜି ଲେଫ୍ଟନାଣ୍ଟ ପଦବୀରେ ନିଯୁକ୍ତ ହୋଇପାରିଛି– ଏକଥା ଚିନ୍ତା କରି ଲେଖକଙ୍କ ମନରେ ଗର୍ବ ସଞ୍ଚାର ହେଲା ।

(ଜ) **ମହାତ୍ମା ଗାନ୍ଧିଙ୍କୁ ସଭା କରିବାକୁ ସ୍ଥାନ ମିଳିଲା ନାହିଁ କାହିଁକି ?**

ଉ– ମହାତ୍ମା ଗାନ୍ଧି ୧୯୨୧ ମସିହାରେ ଆନ୍ଦୋଳନର ପ୍ରଚାର ନିମନ୍ତେ ପାରଳାଖେମୁଣ୍ଡି ଆସିଥିଲେ । ସେତେବେଳେ ବ୍ରିଟିଶ ସରକାରଙ୍କ କଟକଣା ହେତୁ ତାଙ୍କୁ ସଭା କରିବାକୁ ସ୍ଥାନ ମିଳିଲା ନାହିଁ ।

୩। ସରଳାର୍ଥ ଲେଖ।

**(କ) "ସେଥିମଧ୍ୟରୁ ପ୍ରଥମ କର୍ତ୍ତବ୍ୟଟି ହେଉଛି ଜନ୍ମଭୂମି ମା'ଙ୍କର ସେବା"**

ଉ – *"ସେଥିମଧ୍ୟରୁ ........................ସେବା"।*

ଶଂସିତ ଗଦ୍ୟାଂଶଟି 'ମୋ ଜୀବନର ଅଭୁଲା କଥା' ଶୀର୍ଷକ ପ୍ରବନ୍ଧରୁ ଆନୀତ। ଉକ୍ତ ପ୍ରସଙ୍ଗରେ ଲେଖକ ସତ୍ୟନାରାୟଣ ରାଜଗୁରୁ ନିଜର କର୍ତ୍ତବ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି।

ଲେଖକଙ୍କ ମନରେ ମାତୃଭୂମି ପ୍ରତି ଏକ ଦୃଢ଼ ଆକର୍ଷଣ ଥିଲା। ଉତ୍କଳ ସମ୍ମିଳନୀର ନେତୃତ୍ୱବର୍ଗ ଓଡ଼ିଆ ଭାଷୀମାନଙ୍କର ଏକତ୍ରୀକରଣ ପାଇଁ ଯେଉଁ ଡାକରା ଦେଇଥିଲେ ତହିଁରେ ଅନୁପ୍ରାଣିତ ହୋଇ ଲେଖକ ଅନୁଭବ କରିଥିଲେ ଯେ ତାଙ୍କର ପ୍ରଥମ କର୍ତ୍ତବ୍ୟ ହେଉଛି ଜନ୍ମଭୂମି ମା'ଙ୍କର ସେବା।

ବାସ୍ତବରେ ପ୍ରସଙ୍ଗଟି ଶିକ୍ଷାମୂଳକ ଅଟେ।

**(ଖ) ଭାରତମାତା ମୋର ପିତାମହୀ; କିନ୍ତୁ ଉତ୍କଳ ମୋର ଜନନୀ।**

ଉ – *ଭାରତମାତା ................. ମୋର ଜନନୀ।*

ଶଂସିତ ଗଦ୍ୟାଂଶଟି ସତ୍ୟନାରାୟଣ ରାଜଗୁରୁଙ୍କ ଲିଖିତ *'ମୋ ଜୀବନର ଅଭୁଲା କଥା'* ପ୍ରବନ୍ଧରୁ ଆସିଅଛି। ଏଠାରେ ଲେଖକ ଉତ୍କଳ ଜନନୀର ସେବାକୁ ନିଜ ଜୀବନର ବ୍ରତ ଭାବେ ଗ୍ରହଣ କରିନେଇଥିବା କଥା ବର୍ଣ୍ଣନା କରିଛନ୍ତି।

ଲେଖକ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଭାରତୀୟ ରାଜନୀତିରେ ଭାଗ ନେବାକୁ ଆଗ୍ରହୀ ହୋଇଥିଲେ। ବହୁ ଚିନ୍ତା ପରେ ସେ ସ୍ଥିର କଲେ ଯେ ଭାରତୀୟ ରାଜନୀତିରେ ଭାଗନେବାକୁ ହେଲେ ପ୍ରଥମେ ନିଜକୁ ଓ ନିଜ ଜନ୍ମଭୂମି ଉତ୍କଳକୁ ବଳିଷ୍ଠ କରି ଗଢ଼ିବାକୁ ହେବ। ସେତେବେଳେ ଉତ୍କଳ ସମ୍ମିଳନୀର ନେତୃବର୍ଗମାନେ ଓଡ଼ିଆଭାଷୀମାନଙ୍କ ଏକତ୍ରୀକରଣ ନିମନ୍ତେ ଆହ୍ୱାନ ଦେଇଥା'ନ୍ତି। ସେଥିରେ ଅନୁପ୍ରାଣିତ ହୋଇ ସେ ଉତ୍କଳମାତାର ସେବା କରିବାକୁ ସ୍ଥିର କଲେ। ତାଙ୍କ ମତରେ, ଭାରତମାତା ତାଙ୍କର ପିତାମହୀ; ମାତ୍ର ଉତ୍କଳ ତାଙ୍କର ଜନନୀ। ଯଦିଓ ଉଭୟଙ୍କ ସେବା ତାଙ୍କର କର୍ତ୍ତବ୍ୟ, ତଥାପି ପ୍ରଥମ କର୍ତ୍ତବ୍ୟ ହେଲା ଜନନୀ ଉତ୍କଳର ସେବା। ତେଣୁ ସେ ମଧୁବାବୁ, ଉତ୍କଳମଣି ଗୋପବନ୍ଧୁଙ୍କ ଭଳି ଉତ୍କଳ ଜନନୀଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ।

ଉକ୍ତ ପ୍ରସଙ୍ଗଟି ବେଶ୍ ଶିକ୍ଷାପ୍ରଦ ହୋଇପାରିଛି।

**(ଗ) ସେଦିନ ସେ ଯେଉଁ ନୀତିଦୀର୍ଘ ଭାଷଣରେ ଜାତୀୟତାର ବୀଜ ଆମମାନଙ୍କ ହୃଦୟରେ ରୋପଣ କଲେ, ତାହା କାଳକ୍ରମେ ଅଙ୍କୁରିତ ହୋଇ ତାଙ୍କର ଆଶୀର୍ବାଦ ତୁଲ୍ୟ ଆମକୁ ଯଥେଷ୍ଟ ପ୍ରଭାବିତ କଲା କହିଲେ ଚଳେ।**

ଉ – *ସେଦିନ ସେ .................. କହିଲେ ଚଳେ।*

ଉକ୍ତ ଗଦ୍ୟାଂଶଟି ସତ୍ୟନାରାୟଣ ରାଜଗୁରୁଙ୍କ ରଚିତ *'ମୋ ଜୀବନର ଅଭୁଲା କଥା'* ପ୍ରବନ୍ଧରୁ ଆନୀତ। ଏଠାରେ ଲେଖକ ଗାନ୍ଧିଜୀଙ୍କ ଭାଷଣ ପାରଳାଖେମୁଣ୍ଡିର ଲୋକମାନଙ୍କୁ କିପରି ପ୍ରଭାବିତ କରିଥିଲା ତା'ଉପରେ ଆଲୋକପାତ କରିଛନ୍ତି।



୧୯୨୧ ମସିହାରେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଦେଶସାରା ଅସହଯୋଗ ଆନ୍ଦୋଳନ ଚାଲିଥିଲା। ସେହିବର୍ଷ ପ୍ରଚାର ଉଦ୍ଦେଶ୍ୟରେ ଗାନ୍ଧିଜୀ ପାରଳାଖେମୁଣ୍ଡି ଆସିଥିଲେ। ତାଙ୍କ ଭାଷଣ ଶୁଣିବାକୁ ହଜାର ହଜାର ଲୋକ ଆସିଥିଲେ। ଜନଗହଳିରେ ସଭାସ୍ଥଳଟି ମୁଖରିତ ହୋଇ ଉଠିଥିଲା। ସେଦିନ ଗାନ୍ଧିଜୀ ସେଠାରେ ଯେଉଁ ନୀତିଦୀର୍ଘ ଭାଷଣ ଦେଇଥିଲେ, ତାହା ଲୋକମାନଙ୍କୁ ଜାତୀୟତା ଭାବନାରେ ଉଦ୍‌ବୁଦ୍ଧ କରିଥିଲା। ନିଜେ ଲେଖକ ଏହାଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ। ଛାତ୍ରାବସ୍ଥାରୁ ସେ ସ୍ୱାଧୀନତା ସଂଗ୍ରାମରେ ଝାସଦେବାକୁ ଚାହିଁଥିଲେ। ପରବର୍ତ୍ତୀ ସମୟରେ ସେ ନିଜକୁ ଉତ୍କଳ ଜନନୀର ସେବାରେ ନିୟୋଜିତ କରିଥିଲେ।

ଏଠାରେ ଲେଖକଙ୍କ ବର୍ଣ୍ଣନା ବେଶ୍ ଭାବଦ୍ୟୋତକ ହୋଇଛି।

**(ଘ) "ମନୁଷ୍ୟର ଜ୍ଞାନ ଓ କର୍ମ ଏକା ସ୍ତରରେ ରହିବା ଆବଶ୍ୟକ।"**

ଉ – *ମନୁଷ୍ୟର ଜ୍ଞାନ..................ଆବଶ୍ୟକ।*

ଉକ୍ତ ଗଦ୍ୟାଂଶଟି ସତ୍ୟନାରାୟଣ ରାଜଗୁରୁଙ୍କ ଲିଖିତ *'ମୋ ଜୀବନର ଅଭୁଲା କଥା'* ପ୍ରବନ୍ଧରୁ ଉଦ୍ଧୃତ। ଏଠାରେ ଲେଖକଙ୍କୁ ଅଳ୍ପ ବୟସରୁ ରାଜନୀତିରେ ନ ମାତିବାକୁ ତାଙ୍କ ନନା ଦେଇଥିବା ପରାମର୍ଶ କଥା ବର୍ଣ୍ଣନା କରାଯାଇଛି।

୧୯୨୧ ମସିହାରେ ମହାତ୍ମା ଗାନ୍ଧି ପାରଳାଖେମୁଣ୍ଡି ଆସି ଏକ ପ୍ରଚାର ସଭା କରିଥିଲେ। ସେହି ସଭାରେ ସେ ଦେଇଥିବା ଭାଷଣ ଅଞ୍ଚଳବାସୀଙ୍କ ହୃଦୟରେ ଜାତୀୟତାର ବୀଜ ରୋପଣ କରିଥିଲା। ଲେଖକ ମଧ୍ୟ ସେହି ଭାଷଣଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ। ସେ ସଭାରୁ ଫେରିଆସି ସ୍କୁଲରୁ ନାଁ କାଟି ରାଜନୀତିରେ ମାତିଲେ। ତାଙ୍କ ନନା ଏହା ସହ୍ୟ କରିପାରିଲେ ନାହିଁ। ସେ ଲେଖକଙ୍କୁ ଏହି ପନ୍ଥାରୁ ନିବୃତ୍ତ କରାଇଥିଲେ। ସେ କହିଥିଲେ ଯେ ମନୁଷ୍ୟର ଜ୍ଞାନ ଓ କର୍ମ ଏକା ସ୍ତରରେ ରହିବା ଆବଶ୍ୟକ। ଏତେ ଅଳ୍ପ ବୟସରୁ ଦେଶସେବା ଭଳି କାମରେ ହାତଦେବା ଠିକ୍ ନୁହେଁ। ବୟସ ବଢ଼ିବା ସହ ଜ୍ଞାନ ପରିପକ୍ୱ ହେଲେ ଦେଶ ପାଇଁ କର୍ମ କରିବାକୁ ଶକ୍ତି ମିଳିବ। ଲେଖକ ମଧ୍ୟ ପିତାଙ୍କ ସୁପରାମର୍ଶକୁ ଗ୍ରହଣ କରିଥିଲେ।

ଏହି ପ୍ରସଙ୍ଗଟି ବାସ୍ତବରେ ବେଶ୍ ଶିକ୍ଷଣୀୟ ହୋଇଛି।

**(ଙ) "ତାହା କାଳକ୍ରମେ ଅଙ୍କୁରିତ ହୋଇ ତାଙ୍କର ଆଶୀର୍ବାଦ ତୁଲ୍ୟ ଆମକୁ ଯଥେଷ୍ଟ ପ୍ରଭାବିତ କଲା।"**

ଉ – *"ତାହା କାଳକ୍ରମେ ............. ପ୍ରଭାବିତ କଲା।*

ଶଂସିତ ଉଦ୍ଧୃତାଂଶଟି ସତ୍ୟନାରାୟଣ ରାଜଗୁରୁଙ୍କ ଲିଖିତ *'ମୋ ଜୀବନର ଅଭୁଲା କଥା'* ପ୍ରବନ୍ଧରୁ ଗୃହୀତ। ଏଠାରେ ପ୍ରାବନ୍ଧିକ ମହାତ୍ମାଗାନ୍ଧୀଙ୍କ ଭାଷଣର ପ୍ରଭାବ ବିଷୟରେ ଆଲୋଚନା କରିଛନ୍ତି।

୧୯୨୧ ମସିହାରେ ମହାତ୍ମାଗାନ୍ଧି ଭାରତବ୍ୟାପୀ ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନ ଦେଇଥିଲେ। ନିଜେ ପ୍ରଚାର ଉଦ୍ଦେଶ୍ୟରେ ପାରଳାଖେମୁଣ୍ଡି ଆସିଥିଲେ। ବ୍ରିଟିଶ ସରକାରଙ୍କ କଟକଣା ସତ୍ତ୍ୱେ ସଭା ହୋଇଥିଲା ଏବଂ ହଜାର ହଜାର ଲୋକ ତାଙ୍କର ବକ୍ତୃତା ଶୁଣି ପ୍ରଭାବିତ ହୋଇଥିଲେ। ଲେଖକ ନିଜେ ସେ ସମୟରେ ସେହି ଭାଷଣ ଶୁଣି ଜାତୀୟତାରେ ଉଦ୍‌ବୁଦ୍ଧ ହୋଇଥିଲେ। ଗାନ୍ଧୀଙ୍କର ସେହି ପ୍ରଭାବ କାଳକ୍ରମେ ଅଙ୍କୁରିତ ହୋଇ ଲେଖକଙ୍କୁ ଆଶୀର୍ବାଦ ତୁଲ୍ୟ ପ୍ରଭାବିତ କଲା।

ବାସ୍ତବରେ ପ୍ରାବନ୍ଧିକଙ୍କ ଏହି ଉକ୍ତିଟି ଜାତୀୟଭାବମୂଳକ ଅଟେ।

୪ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।

**(କ) ଦ୍ୱିତୀୟ ପୃଥିବୀ ମହାସମର ପୂର୍ବରୁ ପାରଳାର ମହାରାଜାଙ୍କ ଉପରେ କେଉଁ ଭାର ଦିଆଯାଇଥିଲା ?**

ଉ– ଦ୍ୱିତୀୟ ପୃଥିବୀ ମହାସମର ପୂର୍ବରୁ ଭାରତର ପ୍ରତି ଅଞ୍ଚଳରେ ଗୋଟିଏ ଗୋଟିଏ ଇଣ୍ଡିଆନ୍ ବାଟାଲିୟନ୍ ଗଢ଼ିବାର ନିୟମ ହୋଇଥିଲା । ମାନ୍ଦ୍ରାଜର ପ୍ରତି ଜିଲ୍ଲାର ସୁସ୍ଥସବଳ ଲୋକଙ୍କୁ ବାଛି ସେଥିରେ ନାମ ଲେଖାଇବା କାର୍ଯ୍ୟ ଆରମ୍ଭ ହୋଇଥିଲା । ଗଞ୍ଜାମରୁ ବାଳକମାନଙ୍କୁ ବାଛି ଯୁଦ୍ଧ ଶିକ୍ଷା କରିବାକୁ ପଠାଇବା ଭାର ପାରଳା ମହାରାଜାଙ୍କ ଉପରେ ଥିଲା । ସେହି କାର୍ଯ୍ୟରେ ମହାରାଜା ତତ୍ପରତା ପ୍ରକାଶ କରିଥିଲେ । ସେଥିପାଇଁ କଲେଜରେ ଏକ ବିରାଟ ସଭାରେ ମହାରାଜା ଭାଷଣ ଦେଇ ସମର ଶିକ୍ଷା କରିବାକୁ କେଉଁ ଛାତ୍ରମାନେ ଇଚ୍ଛୁକ ଅଛନ୍ତି ଜାଣିବାକୁ ଇଚ୍ଛା କରିଥିଲେ ।

**(ଖ) ଜନଗହଳି ସମ୍ଭାଳିବାକୁ ପୋଲିସ୍ କାହିଁକି ଅସମର୍ଥ ହେଲା ?**

ଉ– ୧୯୨୧ ମସିହାରେ ମହାତ୍ମା ଗାନ୍ଧିଙ୍କର ଆହ୍ୱାନରେ ସ୍ୱାଧୀନତା ଆନ୍ଦୋଳନ ଭାରତ ସାରା ବ୍ୟାପିଗଲା । ସ୍କୁଲ, କଲେଜ ଛାଡ଼ି ଅନେକ ଅସହଯୋଗ ଆନ୍ଦୋଳନରେ ଭାଗ ନେଲେ । ଠିକ୍ ସେହି ବର୍ଷ ମହାତ୍ମା ଗାନ୍ଧି ନିଜେ ତାଙ୍କର ପ୍ରଚାର ଉଦ୍ଦେଶ୍ୟରେ ପାରଳାଖେମୁଣ୍ଡି ଆସିଥିଲେ । ସେତେବେଳେ ବ୍ରିଟିଶ୍ ସରକାରଙ୍କ କଟକଣା ହେତୁ ତାଙ୍କୁ ସଭା କରିବାପାଇଁ ସ୍ଥାନଟିଏ ମିଳିଲା ନାହିଁ । ଦେଶପ୍ରେମୀ ସ୍ୱାଧୀନତା ସଂଗ୍ରାମୀ ଛାତ୍ରମାନେ ଜୋର୍ ଜବରଦସ୍ତ ପୁରୁଣା ମାର୍କେଟ ପଡ଼ିଆରେ ସଭା କରିବାପାଇଁ ସ୍ଥିର କଲେ । ମହାତ୍ମା ଗାନ୍ଧିଙ୍କ ଭାଷଣ ଶୁଣିବାକୁ ସମସ୍ତଙ୍କ ମନରେ ପ୍ରବଳ ଆଗ୍ରହ ଥିଲା । ତେଣୁ ବହୁ ସଂଖ୍ୟାରେ ଲୋକ ସମାଗମ ହେଲା । ଜନଗହଳି ଏତେ ଅଧିକ ହେଲା ଯେ ପୋଲିସ୍ ସେମାନଙ୍କୁ ସମ୍ଭାଳିବାକୁ ଅସମର୍ଥ ହେଲା ।



# କ'ଣ ଶିଖିବା

• ଗୋଲୋକବିହାରୀ ଧଳ
ଜନ୍ମ : ୧୪.୧୨.୧୯୨୧
ମୃତ୍ୟୁ : ୨୧.୬.୧୯୭୪

## ଲେଖକ ପରିଚୟ

ଅଧ୍ୟାପକ ଗୋଲୋକବିହାରୀ ଧଳ (୧୯୨୧-୧୯୭୪) ଢେଙ୍କାନାଳର ଗଞ୍ଜେଇଡ଼ିହ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଜଣେ ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଓ ଭ୍ରମଣ କାହାଣୀ ଲେଖକ ଭାବରେ ସେ ଓଡ଼ିଆ ସାହିତ୍ୟରେ ବେଶ୍ ସୁପରିଚିତ । ତାଙ୍କ ରଚିତ ପୁସ୍ତକଗୁଡ଼ିକ ମଧ୍ୟରେ *'ଓଡ଼ିଆ କେବେ' 'ପେଟର ପବନ ପାଟିର କଥା', 'ଗଙ୍ଗାରୁ ଗୋଦାବରୀ', 'ଲଣ୍ଡନ ଚିଠି', 'ଅମର ମଣିଷ', 'ଅମରଯାତ୍ରୀ', 'ଆମେରିକା ଅନୁଭୂତି', 'ଧ୍ୱନି ବିଜ୍ଞାନ'* (ହିନ୍ଦୀ) ଆଦି ପ୍ରଧାନ । ଇଂରାଜୀ ଓ ହିନ୍ଦୀ ଭାଷାରେ ଲିଖିତ ଅନେକ ବହିର ସେ ଓଡ଼ିଆ ଅନୁବାଦ କରିଛନ୍ତି ।

## ବିଷୟ ସୂଚନା

ଲେଖକ ଉଚ୍ଚ ଶିକ୍ଷାପାଇଁ ଆମେରିକାରେ କିଛିଦିନ ରହିଥିଲେ । ସେହି ସମୟରେ ସେ ଯେଉଁ ଅନୁଭୂତି ଅର୍ଜନ କରିଥିଲେ, ତାହା ତାଙ୍କର *'ଆମେରିକା ଅନୁଭୂତି'* ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ପଠିତ ପାଠ୍ୟାଂଶଟି *'ଆମେରିକା ଅନୁଭୂତି'* ପୁସ୍ତକରୁ ନିଆଯାଇଛି । ଉକ୍ତ ପାଠ୍ୟାଂଶରେ ଆମେରିକାବାସୀଙ୍କର ଶାରୀରିକ ପରିଶ୍ରମର ମୂଲ୍ୟ ସମ୍ବନ୍ଧୀୟ ଜ୍ଞାନ ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ସେଠାକାର ଚାକିରିଆମାନେ କିପରି ଅବସର ସମୟରେ ଶାରୀରିକ ପରିଶ୍ରମ କରନ୍ତି, ତାହା ଏଥିରେ ସ୍ଥାନ ପାଇଛି । ସେମାନେ ଅନ୍ୟର ପ୍ରଶଂସା କରନ୍ତି । ସେମାନେ ଖୁବ୍ ପ୍ରଶଂସାମୁଖର ଜାତି । ଏହା ଏହି ବିଷୟରେ ବର୍ଣ୍ଣିତ ହୋଇଛି ।

## ସାରକଥା

ଲେଖକଙ୍କ ମତରେ, ଆମେରିକାର ସବୁଠୁଁ ଭଲ କୌଣସି ଆଶ୍ଚର୍ଯ୍ୟଜନକ ବସ୍ତୁ ନୁହେଁ, ବରଂ ଶାରୀରିକ ପରିଶ୍ରମର ମୂଲ୍ୟ । ପରିଶ୍ରମକୁ ସମ୍ମାନ ଦେଖାଇବା ପାଇଁ ସେ ଜାତି ଶିଖିଛି । କାମ କରିବାକୁ କେହି ଲଜ୍ଜିତ ହୁଏନି । କଲ୍‌ଗେଟ୍ ବିଶ୍ୱବିଦ୍ୟାଳୟର ଇଂରାଜୀ ପ୍ରଫେସର ମଧ୍ୟ ମୂଲିଆଙ୍କ ସହିତ ମିଶି ମାଟି ଚକଟୁଥିବାର ଲେଖକ ଦେଖିଥିଲେ । ହାତଯାକ କାଦୁଅ ହୋଇଥିବାରୁ ସେ ଲେଖକଙ୍କ ସହିତ କରମର୍ଦ୍ଦନ କରିପାରିବେ ନାହିଁ ବୋଲି କହି କ୍ଷମା ମାଗିଥିଲେ । ଗ୍ରୀଷ୍ମଛୁଟିରେ ଜଣେ ଶିକ୍ଷକ ନିଜେ ଦୋକାନରେ ପରିବା ବିକନ୍ତି ବା କ୍ଷେତରେ ଆଳୁ ଖୋଳନ୍ତି । ଅଥଚ ଆମ ଦେଶରେ ଥରେ ଯେ ଦି'ଅକ୍ଷର ପଢ଼ିଛି, ସେ ମାଟିକୁ ଭୁଲିଯାଏ । ଶିକ୍ଷିତ ବଡ଼ଲୋକ ଶାରୀରିକ ପରିଶ୍ରମର ମର୍ଯ୍ୟାଦା ନ ବୁଝିଲା ପର୍ଯ୍ୟନ୍ତ କେବଳ ଅଧାପେଟିଆ ଦୁର୍ବଳ ମୂଲିଆ ହାତରେ ଦେଶ ଉଠିପାରିବ ନାହିଁ ।

ଜଣେ ଅବସରପ୍ରାପ୍ତ ପଦାର୍ଥ ବିଜ୍ଞାନ ଶିକ୍ଷକ ଦୁଇବର୍ଷକାଳ କେବଳ ଶନିବାର ରବିବାର ଛୁଟିରେ ଲାଗି ଲାଗି ନିଜ ହାତରେ ଗୋଟିଏ ଘର ତିଆରି କରିଛନ୍ତି । ଛ'ସ୍ତରି ବର୍ଷର ବୁଢ଼ା ଛୋଟ ଟ୍ରାକ୍ଟର ଓ ବୁଲ୍‌ଡୋଜର୍ ସାହାଯ୍ୟରେ ବଡ ବଡ଼ ପଥର ଗଡ଼ାଇ କେମିତି ସେ କାମ କରିଛନ୍ତି ତାହା କହିଲାବେଳେ ତାଙ୍କ ଆଖିରେ ଯୁବସୁଲଭ ଜ୍ୟୋତି ଫୁଟିଉଠିଥିଲା । ଆମ ଦେଶର କୌଣସି ଶିକ୍ଷିତ ଯୁବକ ପକ୍ଷେ ଏସବୁ କାର୍ଯ୍ୟ କରିବା ଅସମ୍ଭବ ।

ଆମ ଦେଶରେ ଥରେ ବଡ଼ଦିନ ଛୁଟିରେ ଜଣେ ଅଧ୍ୟାପକ ଓ ତାଙ୍କ ସ୍ତ୍ରୀ ଘରକୁ ଚାଲିଯାଇ ଥାଆନ୍ତି । ତାଙ୍କ ଭଣଜା ଜଣେ ବି.ଏ. ଅନର୍ସ ଛାତ୍ର ତାଙ୍କ ଘରେ ଥା'ନ୍ତି । ତାଙ୍କୁ ତାଙ୍କ ଖାଇବା ବିଷୟରେ ଲେଖକ ପଚାରିବାରୁ ତାଙ୍କ ମୁହଁରେ ନୈରାଶ୍ୟର ଛାୟା ଖେଳିଗଲା । ସେ ଏତେ ପାଠ ପଢ଼ି ମଧ୍ୟ ନିଜ ହାତରେ ନିଜ କାମ କରିବା ଶିଖିନାହାନ୍ତି । ଏପରି ଲୋକ ନିଜକୁ ଭଲ ବୋଲି ଡିଣ୍ଡିମ ପିଟିବାରେ କିଛି ଲାଭ ନାହିଁ ।

ମିଷ୍ଟର ବେକର୍ ଆମେରିକାର ଜଣେ ଅବସରପ୍ରାପ୍ତ ଇଞ୍ଜିନିୟର । ବୁଢ଼ା ବୟସରେ ସେ କୋଡ଼ି ଶାବଳ ଧରି କାମ କରନ୍ତି । ସେ କାମ କରନ୍ତି ଜୀବନ ଉପଭୋଗ କରିବା ପାଇଁ । କାମ ବିନା ଆମେରିକାନ୍ ଜୀବନରେ ସୁଖ କଳ୍ପନା ଅସମ୍ଭବ । ସେଠାରେ ପୁଅଝିଅମାନେ ମଧ୍ୟ ପରିଶ୍ରମ କରନ୍ତି । ଥରେ ଡେଭିଡ୍‌ର ପରିବାର ସହ ଲେଖକ ସହର ଅଭିମୁଖେ ଯାଉଥିବାବେଳେ ପ୍ରବଳ ବର୍ଷା ହେଲା । ହଠାତ୍ ମଟରର ପଛ ଚକାଟା ଫାଟିଗଲା । ବର୍ଷାରେ ଭିଜି ପନ୍ଦର ବର୍ଷର ପୁଅ ଡେଭିଡ୍ ରାସ୍ତା ଉପରେ ପାଣିରେ ଶୋଇ ଅଧଘଣ୍ଟାରେ ନୂଆ ଚକଟାଏ ମଟରରେ ଲଗାଇଥିଲା ।

ଆମେରିକାର ଲୋକେ ଅନେକ ଦିନଯାଏ ଏକୁଟିଆ ହୋଇ ଚଳୁଥିଲେ । ପୃଥିବୀ ରାଜନୀତି ସହିତ ସେମାନଙ୍କର ବିଶେଷ ସମ୍ପର୍କ ନଥିଲା । ଗତ ବିଶ୍ୱଯୁଦ୍ଧରୁ ସେମାନେ ପୃଥିବୀ କ୍ଷେତ୍ରରେ ଆଗୁଆ ହେବାରେ ଲାଗିଛନ୍ତି । ବିଶ୍ୱ ଶାସନ ଓ ବିଶ୍ୱମୈତ୍ରୀ ପାଇଁ ସେମାନେ ବର୍ତ୍ତମାନ ବଡ଼ ଉତ୍କଣ୍ଠିତ । ଆନ୍ତର୍ଜାତିକ ଭାବ ବିନିମୟ ଲାଗି ଆମେରିକୀୟମାନେ ଖୁବ୍ ବ୍ୟାକୁଳ ।

ଆମେରିକାର ଲୋକେ ଅନ୍ୟକୁ ପ୍ରଶଂସା କରନ୍ତି । ଯିଏ ଯାହା କରୁ ପଛେ ଲୋକେ ତା'ର ପ୍ରଶଂସା କରନ୍ତି । ଆମପରି ସେଠାରେ ଖୁବ୍ କମ୍ ଲୋକ *"କାମଗୁଡ଼ା ବେକାର କାହିଁକି କରୁଛି ?"* ବୋଲି କହନ୍ତି । ଭାରତୀୟମାନଙ୍କୁ ଆଦର ଅଭ୍ୟର୍ଥନାରେ ସେମାନେ ପେଟ ପୂରାଇଦିଅନ୍ତି ।

ବେଳ ଆସିଛି, ମାଛି ନହୋଇ ମହୁମାଛି ହେବା, ଘାଆରେ ନ ବସି ଫୁଲରେ ବସିବା । ଦେଶ ଓ ଜାତିର ମୁକ୍ତିପଥ ଖୋଜିବା ।

### କଠିନ ଶବ୍ଦାର୍ଥ

ବରାବର – ସବୁବେଳେ । କରମର୍ଦ୍ଦନ – ହାତ ମିଳାଇବା । ଯୁବସୁଲଭ – ଯୁବକ ପରି । ନୈରାଶ୍ୟ – ଆଶାଶୂନ୍ୟ । କଣ୍ଟାବାଡ଼ରେ ଲୁଗା ପକାଇବା – ଅକାରଣରେ କଳି କରିବା । ପର ଉପରକୁ କାଦୁଅ ଫିଙ୍ଗିବା – ପର ନିନ୍ଦା କରିବା । ବ୍ୟତିରେକେ – ବିନା । ଲୁକ୍କାୟିତ – ଲୁଚିକରି । ଇତସ୍ତତଃ – ଏଣେତେଣେ । କୃତକୃତ୍ୟ – ଧନ୍ୟ । ବିଶ୍ୱମୈତ୍ରୀ – ସମଗ୍ର ପୃଥିବୀବାସୀଙ୍କୁ ନିଜର ବନ୍ଧୁ ବୋଲି ଭାବିବା ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ଲେଖକ ମଣିଷର ଦୋଷ ଓ ଗୁଣ ସମ୍ପର୍କରେ କ'ଣ କହିଛନ୍ତି ?**

ଉ– ଦୋଷଗୁଣ ତ ସମସ୍ତଙ୍କର ଅଛି । ହେଲେ ଆମର କଥା ହେଉଛି *'ଦୋଷକୁ ଛାଡ଼ି ଗୁଣ ଶିଖିବା'* । ଲେଖକ ମଣିଷର ଦୋଷ ଓ ଗୁଣ ସମ୍ପର୍କରେ ଏହା କହିଛନ୍ତି ।

**(ଖ) ଲେଖକଙ୍କ ମତରେ ଆମେରିକାର ସବୁଠୁ ଭଲ କଥାଟି କ'ଣ ?**

ଉ– ଲେଖକଙ୍କର ମତରେ ଆମେରିକାର ସବୁଠୁ ଭଲ କଥାଟି ହେଲା ଶାରୀରିକ ପରିଶ୍ରମର ମୂଲ୍ୟ ଜ୍ଞାନ ।

**(ଗ) ଆମେରିକୀୟମାନଙ୍କର କେଉଁ ଗୁଣଟି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ?**

ଉ– ପରିଶ୍ରମକୁ ସମ୍ମାନ ଦେଖାଇବା ପାଇଁ ଆମେରିକୀୟମାନେ କେମିତି ଶିଖିଛନ୍ତି, ତାହା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ।



**(ଘ) ଲେଖକ ବନ୍ଧୁଙ୍କୁ ଦେଖି ସେ କିଏ ବୋଲି ଭାବିଲେ ?**

ଉ– ଲେଖକ ବନ୍ଧୁଙ୍କୁ ଦେଖି ଭାବିଲେ ସାଇ ପଡ଼ିଶାର କେହି ଜଣେ ଚିହ୍ନା କୁଲି ହୋଇଥିବ ।

୨ । ଦୁଇ ବା ତିନୋଟି ବାକ୍ୟରେ ଉତ୍ତର ଲେଖ ।

**(କ) ମର୍ଗାନ୍ କାହିଁକି ଲେଖକଙ୍କ ପାଖରେ କ୍ଷମା ମାଗିଲେ ?**

ଉ– ଲେଖକ ମର୍ଗାନ୍‌ଙ୍କ ପାଖକୁ ଯିବାବେଳକୁ ତାଙ୍କର ହାତଯାକ କାଦୁଅ ହୋଇଥିଲା । ସେ ଲେଖକଙ୍କ ସହିତ କରମର୍ଦ୍ଦନ କରିପାରିବେ ନାହିଁ ବୋଲି କହି କ୍ଷମା ମାଗିଲେ ।

(ପୁସ୍ତକସ୍ଥ ପ୍ରଶ୍ନରେ ତ୍ରୁଟି ଅଛି– 'ମର୍ଗାନ୍' ବଦଳରେ 'କଲଗେଟ୍ ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ' ହେବ)

**(ଖ) ବୁଢ଼ା ବୟସରେ ବେକର୍ କୋଡ଼ି ଶାବଳ ଧରି ଏତେ କାମ କରିବାର ଉଦ୍ଦେଶ୍ୟ କ'ଣ ?**

ଉ– ବେକର୍‌ଙ୍କ ବୁଢ଼ା ବୟସରେ କାମ କରିବାର ଉଦ୍ଦେଶ୍ୟ ହେଲା ଜୀବନକୁ ଉପଭୋଗ କରିବା । କାମ ଭିତରେ ଯେଉଁ ଆନନ୍ଦ ଲୁଚି ରହିଛି, ତାହାକୁ ଯିଏ ଥରେ ଚାଖିଛି ସେ ଆଉ ଛାଡ଼ିପାରିବ ନାହିଁ ।

**(ଗ) ଆମେରିକା ଲୋକଙ୍କଠାରୁ ଶିଖିବା ଭଳି ସବୁଠୁଁ ବଡ଼ କଥାଟି କ'ଣ ?**

ଉ– ଆମେରିକା ଲୋକଙ୍କଠାରୁ ଶିଖିବା ଭଳି ସବୁଠୁ ବଡ଼କଥାଟି ହେଲା ଅନ୍ୟର ପ୍ରଶଂସା କରିବା । ଯିଏ ଯାହା କରୁ, ଲୋକେ ତା'ର ପ୍ରଶଂସା କରନ୍ତି । ଯିଏ ଘାସ କାଟୁଛି, ଲୋକେ *'ବଢ଼ିଆ ଘାସକଟାଳି'* ବୋଲି କହି ତା'ର ପ୍ରଶଂସା କରିଥା'ନ୍ତି ।

**(ଘ) ଆମେରିକାର ଲୋକେ କ'ଣ ପାଇଁ ଅଧିକ ବ୍ୟସ୍ତ ?**

ଉ– ଆନ୍ତର୍ଜାତିକ ଭାବ ବିନିମୟ ଲାଗି ଆମେରିକୀୟମାନେ ଖୁବ୍ ବ୍ୟସ୍ତ । ବିଶ୍ୱଶାସନ ଓ ବିଶ୍ୱମୈତ୍ରୀ ପାଇଁ ସେମାନେ ଖୁବ୍ ବ୍ୟାକୁଳ । ସେଥିପାଇଁ ସେମାନଙ୍କର ପ୍ରତ୍ୟେକ ସହରରେ ଆନ୍ତର୍ଜାତିକ ଅନୁଷ୍ଠାନ ଦେଖିବାକୁ ମିଳେ ।

**(ଙ) ଲେଖକଙ୍କ ମତରେ ଆମେ ଦେଶ ଓ ଜାତି ପାଇଁ କ'ଣ କରିବା ଉଚିତ ?**

ଉ– ଲେଖକଙ୍କ ମତରେ ଆମେ ଦେଶ ଓ ଜାତିର ମୁକ୍ତିପଥ ଖୋଜିବା, ମାଛି ନ ହୋଇ ମହୁମାଛି ହେବା । ଘାଆରେ ନ ବସି ଫୁଲରେ ବସିବା । ଉଚ୍ଚମନା ହେବା ।

୩ । ସରଳ ଭାଷାରେ ବୁଝାଇ ଲେଖ ।

**(କ) ଶିକ୍ଷିତ ବଡ଼ଲୋକ ଶାରୀରିକ ପରିଶ୍ରମର ମର୍ଯ୍ୟାଦା ନ ବୁଝିଲା ପର୍ଯ୍ୟନ୍ତ କେବଳ ଅଧାପେଟିଆ ଦୁର୍ବଳ ମୂଲିଆ ହାତରେ ଦେଶ ଉଠିପାରିବ ନାହିଁ ।**

ଉ – *ଶିକ୍ଷିତ ବଡ଼ଲୋକ .......................... ଉଠିପାରିବ ନାହିଁ ।*

ଶଂସିତ ଗଦ୍ୟାଂଶଟି ଗୋଲୋକବିହାରୀ ଧଳଙ୍କ ରଚିତ *'କ'ଣ ଶିଖିବା'* ପ୍ରବନ୍ଧରୁ ଉଦ୍ଧୃତ ।

ଏଠାରେ ଲେଖକ ଆମ ଦେଶର ଶିକ୍ଷିତ ଲୋକଙ୍କର ଶାରୀରିକ ପରିଶ୍ରମ ପ୍ରତି ଥିବା ହୀନମନ୍ୟତା ଭାବ ସମ୍ପର୍କରେ ଆଲୋକପାତ କରିଛନ୍ତି ।

ଆମେରିକାର ଲୋକେ ପରିଶ୍ରମକୁ ସମ୍ମାନ ଦିଅନ୍ତି । କାମ କରିବାକୁ କେହି ଲଜ୍ଜାବୋଧ କରନ୍ତି ନାହିଁ । ଏ ପ୍ରସଙ୍ଗରେ ଲେଖକ ଜଣେ ଇଂରାଜୀ ପ୍ରଫେସରଙ୍କ ଉଦାହରଣ ଦେଇଛନ୍ତି । ଦିନେ କଲ୍‌ଗେଟ୍ ବିଶ୍ୱବିଦ୍ୟାଳୟର ଇଂରାଜୀ ପ୍ରଫେସର

ହାତରେ ମାଟି ଚକଟୁଥିବାର ଲେଖକ ଦେଖିଥିଲେ । ସେହିପରି ଗ୍ରୀଷ୍ମଛୁଟିରେ ଶିକ୍ଷକମାନେ ଦୋକାନରେ ପରିବା ବିକନ୍ତି କିମ୍ବା ନିଜ କ୍ଷେତରେ ଆଳୁ ଖୋଳୁଥା'ନ୍ତି । ଅଥଚ ଆମ ଦେଶର ଶିକ୍ଷିତ ଲୋକେ ମାଟିକୁ ଭୁଲି ଯାଆନ୍ତି । ସେମାନେ ଶାରୀରିକ ପରିଶ୍ରମ କରିବାକୁ ନାକ ଟେକନ୍ତି । ଆମ ଦେଶର ଏହି ତଥାକଥିତ ଶିକ୍ଷିତ ବଡ଼ଲୋକମାନେ ଯେ ପର୍ଯ୍ୟନ୍ତ ଶାରୀରିକ ପରିଶ୍ରମର ମର୍ଯ୍ୟାଦା ବୁଝିନାହାନ୍ତି, ସେ ପର୍ଯ୍ୟନ୍ତ ଦେଶର ଉନ୍ନତି ହୋଇପାରିବ ନାହିଁ । କେବଳ ଅଧାପେଟ ଖାଇ ଦୁର୍ବଳ ଦିଶୁଥିବା ମୂଲିଆ କେବେହେଲେ ଦେଶକୁ ପ୍ରଗତି ପଥରେ ଆଗେଇ ନେଇପାରିବେ ନାହିଁ । ଅର୍ଥାତ୍ ଆମେରିକା ପରି ଆମ ଦେଶର ଶିକ୍ଷିତ ଲୋକେ ଶାରୀରିକ ପରିଶ୍ରମକୁ ମର୍ଯ୍ୟାଦା ଦେଲେ ହିଁ ଦେଶର ଉନ୍ନତି ହେବ ।

ବାସ୍ତବରେ ଲେଖକଙ୍କର ଏହି ଉକ୍ତି ଯଥାର୍ଥ ଅଟେ ।

**(ଖ) କାମ ବ୍ୟତିରେକେ ଆମେରିକାନ୍ ଜୀବନରେ ସୁଖ କଳ୍ପନା ଅସମ୍ଭବ ।**

ଉ – *କାମ ବ୍ୟତିରେକେ ................................ ଅସମ୍ଭବ ।*

ଶଂସିତ ଗଦ୍ୟାଂଶଟି ଗୋଲୋକବିହାରୀ ଧଳଙ୍କ ରଚିତ *'କ'ଣ ଶିଖିବା'* ପ୍ରବନ୍ଧରୁ ସଂଗୃହୀତ ।

ଏଠାରେ ଲେଖକ ଆମେରିକୀୟମାନେ କିପରି କାମ ବିନା ଜୀବନରେ ଅନ୍ୟକିଛି ସୁଖ ଆଶା କରନ୍ତି ନାହିଁ, ସେ ସମ୍ପର୍କରେ ଆଲୋକପାତ କରିଛନ୍ତି ।

ଥରେ ସକାଳେ ଶ୍ରୀମତୀ ବେକର୍ ଓ ଲେଖକ ଗାଡ଼ିଧରି ସଭାକୁ ଗଲାବେଳେ ଦେଖିଲେ ଶ୍ରୀ ବେକର୍ ନିଜର ଗାଡ଼ିରେ ଟାଙ୍ଗିଆ, କୋଡ଼ି, ଶାବଳ ଧରି ଚାଲିଛନ୍ତି । ସେ ଆମେରିକାର ଜଣେ ଅବସରପ୍ରାପ୍ତ ଇଞ୍ଜିନିୟର । ପର୍ବତ ଭାଙ୍ଗି ପଡ଼ିଆ କରି ସେଠାରେ ଘର କରିବା ତାଙ୍କର ଲକ୍ଷ୍ୟ । ଏପରି ପରିଣତ ବୟସରେ କୋଡ଼ି ଶାବଳ ପ୍ରତି ସଉକି ଥିବାର ଦେଖି ଲେଖକ ଖୁବ୍ ଆଶ୍ଚର୍ଯ୍ୟ ହୋଇଛନ୍ତି । ତାଙ୍କର ଏପରି ସଉକି ବିଷୟରେ ଲେଖକ ତାଙ୍କୁ ପଚାରିବାରୁ ସେ କହିଥିଲେ, ଆମେରିକା ଜୀବନର ମୂଳଦର୍ଶନ ହେଲା କାମରୁ ଆନନ୍ଦ ଉପଭୋଗ କରିବା । ଜୀବନକୁ ଉପଭୋଗ କରିବା ପାଇଁ ସେ କାମ କରିଥା'ନ୍ତି । କାମ ଭିତରେ ଯେଉଁ ଆନନ୍ଦ ଲୁଚିରହିଛି, ତାହାକୁ ଯିଏ ଥରେ ଚାଖିଛି, ସେ ଆଉ ଛାଡ଼ିପାରିବ ନାହିଁ । ତେଣୁ କାମକୁ ଛାଡ଼ି ଆମେରିକୀୟମାନଙ୍କର ଜୀବନରେ ସୁଖ କଳ୍ପନା ଅସମ୍ଭବ ଅଟେ । ସେହି କାମରୁ ହିଁ ସେମାନେ ଆନନ୍ଦ ଲାଭ କରିଥା'ନ୍ତି ।

ବାସ୍ତବରେ ଆମେରିକୀୟମାନଙ୍କର ଏଇ ଆଦର୍ଶ ପୃଥିବୀରେ ବିରଳ ଅଟେ ।

**(ଗ) ମାଛି ନ ହୋଇ ମହୁମାଛି ହେବା, ଘାଆରେ ନ ବସି ଫୁଲରେ ବସିବା ।**

ଉ – *ମାଛି ନ ହୋଇ ................................ ଫୁଲରେ ବସିବା ।*

ଶଂସିତ ଗଦ୍ୟାଂଶଟି ପଠିତ ସାହିତ୍ୟ ବହିର *'କ'ଣ ଶିଖିବା'* ପ୍ରବନ୍ଧରୁ ଉଦ୍ଧୃତ । ଏଠାରେ ଲେଖକ ଗୋଲୋକବିହାରୀ ଧଳ ଆମ ଦେଶବାସୀଙ୍କର କାର୍ଯ୍ୟଧାରା ସମ୍ପର୍କରେ ଯେଉଁ ଉଦାହରଣ ଦେଇଛନ୍ତି, ତାହା ଉପରେ ଆଲୋକପାତ କରାଯାଇଛି ।

ଆମେରିକାର ଲୋକେ ଅନ୍ୟର ପ୍ରଶଂସା କରନ୍ତି । ପ୍ରତ୍ୟେକ କାର୍ଯ୍ୟରେ ମୂଲ୍ୟ ଅଛି । ଏହା ଭାବି ସେମାନେ ଘାସକଟାଳିର ମଧ୍ୟ ପ୍ରଶଂସା କରି *'ବଢ଼ିଆ ଘାସକଟାଳି'* ବୋଲି କହିଥା'ନ୍ତି । ଆମ ଦେଶପରି ନିରୁତ୍ସାହିତ କରୁଥିବା ଲୋକଙ୍କ ସଂଖ୍ୟା ସେଠାରେ ଖୁବ୍ କମ୍ । କାରଣ ସେମାନେ ଜାଣିଛନ୍ତି, ପରିଶ୍ରମୀ ମଣିଷର ପରିଶ୍ରମକୁ ପ୍ରଶଂସା କଲେ ସେ ଅଧିକ କାମ କରିବ । ତାକୁ ପ୍ରଶଂସା ନ କଲେ ସେ ନିରୁତ୍ସାହିତ ହେବ । ତେଣୁ ଆମ୍ଭେମାନେ ମଧ୍ୟ ସେମାନଙ୍କ ପରି ଅନ୍ୟର କାମକୁ ଦେଖି ପ୍ରଶଂସା କରିବାକୁ ଲେଖକ ପରାମର୍ଶ ଦେଇଛନ୍ତି । ସେ ମାଛି ଆଉ ମହୁମାଛିର ଉଦାହରଣ ଦେଇଛନ୍ତି । ମାଛି ଯେପରି ଘାଆରେ ବସେ, ସେହିପରି ହୀନମନାମାନେ ଅନ୍ୟର ଦୋଷ ଦେଖନ୍ତି । ମହୁମାଛିମାନେ ଫୁଲରେ ବସିଲାପରି ଉଚ୍ଚମନାମାନେ ଅନ୍ୟର ପ୍ରଶଂସା କରନ୍ତି । ତେଣୁ ଆମ୍ଭେମାନେ ଆମେରିକୀୟମାନଙ୍କର ଏହି ଭଲଗୁଣ ଶିକ୍ଷାକରିବା ଓ ଦେଶ ଜାତିର ମୁକ୍ତିପଥ ଖୋଜିବା ।



୪ । **ଆବଶ୍ୟକ ସ୍ଥଳେ ବିରାମ ଚିହ୍ନ ଦିଅ ।**

(କ) ସେହି ମୂଲିଆମାନଙ୍କ ଭିତରୁ ଜଣେ ପାଟିକରି ଅଭିବାଦନ ଜଣାଉଛି ହାଏ ମର୍ଗାନ୍ ହାଓ ଆର୍ ଇଉ ଭାବିଲି ସାଇପଡ଼ିଶାର କେହି ଜଣେ ଚିହ୍ନା କୁଲି ହୋଇଥିବ ମାତ୍ର ନିକଟକୁ ଗଲାରୁ ପ୍ରଫେସର ମର୍ଗାନ୍ ତାଙ୍କୁ କଲ୍‌ଗେଟ୍ ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ ବୋଲି ମୋ ସହିତ ପରିଚିତ କରାଇଦେଲେ ।

(ଖ) ମଣିଷ ଜୀବନରେ ଯେତେ କାମ ଅଛି ଘାସକଟାରୁ ଘୋଡ଼ାଚଢ଼ା ପର୍ଯ୍ୟନ୍ତ ସବୁ ବିଜ୍ଞାନ ଛାଞ୍ଚରେ ପକାଇ ଦିଆଯାଇଛି ପ୍ରତ୍ୟେକ କାର୍ଯ୍ୟର ମୂଲ୍ୟ ଅଛି ତେଣୁ ଯେ ଘାସ କାଟୁଛି ଲୋକେ ତାକୁ ବି ପ୍ରଶଂସା କରି କହନ୍ତି ସେ ଗୋଟାଏ ବଢ଼ିଆ ଘାସକଟାଳି ।

ଉ – (କ) ସେହି ମୂଲିଆମାନଙ୍କ ଭିତରୁ ଜଣେ ପାଟିକରି ଅଭିବାଦନ ଜଣାଉଛି, ''ହାଏ ମର୍ଗାନ୍, ହାଓ ଆର୍ ଇଉ ?'' ଭାବିଲି ସାଇପଡ଼ିଶାର କେହି ଜଣେ ଚିହ୍ନା କୁଲି ହୋଇଥିବ; ମାତ୍ର ନିକଟକୁ ଗଲାରୁ ପ୍ରଫେସର ମର୍ଗାନ୍ ତାଙ୍କୁ କଲ୍‌ଗେଟ୍ ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ ବୋଲି ମୋ ସହିତ ପରିଚିତ କରାଇଦେଲେ ।

(ଖ) ମଣିଷ ଜୀବନରେ ଯେତେ କାମ ଅଛି, ଘାସକଟାରୁ ଘୋଡ଼ାଚଢ଼ା ପର୍ଯ୍ୟନ୍ତ ସବୁ ବିଜ୍ଞାନ ଛାଞ୍ଚରେ ପକାଇ ଦିଆଯାଇଛି । ପ୍ରତ୍ୟେକ କାର୍ଯ୍ୟର ମୂଲ୍ୟ ଅଛି । ତେଣୁ ଯେ ଘାସ କାଟୁଛି, ଲୋକେ ତାକୁ ବି ପ୍ରଶଂସା କରି କହନ୍ତି, ''ସେ ଗୋଟାଏ ବଢ଼ିଆ ଘାସକଟାଳି ।''

୫ । **'କ' ସ୍ତମ୍ଭରେ ଦିଆଯାଇଥିବା ଶବ୍ଦ ସହିତ 'ଖ' ସ୍ତମ୍ଭରେ ଥିବା ଶବ୍ଦ ମିଳାଇ ନୂଆ ତିଆରି କର ।**

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ଶାରୀରିକ | ଜ୍ଞାନ |
| ବୁଢ଼ା | ସମ୍ପତ୍ତି |
| ଧନ | ପରିଶ୍ରମ |
| ଦାୟିତ୍ୱ | ବୟସ |
| | ଘାସକଟା |

ଉ – ଶାରୀରିକ୍ ପରିଶ୍ରମ
ବୁଢ଼ା ବୟସ
ଧନ ସମ୍ପତ୍ତି
ଦାୟିତ୍ୱ ଜ୍ଞାନ

୬ । **'ସାଇପଡ଼ିଶା' – ଏହିପରି ଆଉ ୩ଟି ଯୁଗ୍ମ ଶବ୍ଦ ପଠିତାଂଶରୁ ବାଛି ଲେଖ ।**

ଉ – ଭାବଭଙ୍ଗୀ, ଟଙ୍କାସୁନା, ଅଳ୍ପବହୁତ ।

୭ । **ନିମ୍ନଲିଖିତ ବାକ୍ୟାଂଶକୁ ବ୍ୟବହାର କରି ବାକ୍ୟ ଗଠନ କର ।**

କଣ୍ଟାବାଡ଼ରେ ଲୁଗା ପକାଇବା, ପର ଉପରକୁ କାଦୁଅ ଫିଙ୍ଗିବା, ଲହୁ-ଲୁହ

ଉ – **କଣ୍ଟାବାଡ଼ରେ ଲୁଗା ପକାଇବା – କଣ୍ଟାବାଡ଼ରେ ଲୁଗା ପକାଇ କଳି କରିବା ସବିତାର ଅଭ୍ୟାସ ।**

**ପର ଉପରକୁ କାଦୁଅ ଫିଙ୍ଗିବା – ପର ଉପରକୁ କାଦୁଅ ଫିଙ୍ଗିବା ନୀତି ନ ଛାଡ଼ିଲେ ନିଜର ଉନ୍ନତି ଅସମ୍ଭବ ।**

**ଲହୁ-ଲୁହ – ଲୋକଟି ନିଜର ଲହୁ-ଲୁହ ଢାଳି ସମ୍ପତ୍ତି ଅର୍ଜନ କରିଛି ।**

୮ । **ଯେପରି 'ପଦାର୍ଥ' ଶବ୍ଦ ପୂର୍ବରୁ 'ଅ' ଯୋଗହେଲେ 'ଅପଦାର୍ଥ' ହୁଏ, ସେହିପରି ପୂର୍ବରୁ 'ଅ' ଯୋଗକରି ଆଉ ୪ଟି ଶବ୍ଦ ଲେଖ ।**

ଉ – ଅଯୋଗ୍ୟ, ଅସୁନ୍ଦର, ଅସଭ୍ୟ, ଅଦମନୀୟ ।

୯ । ପଠିତ ପ୍ରବନ୍ଧରୁ ଉପଯୁକ୍ତ ଶବ୍ଦ ବାଛି ଶୂନ୍ୟସ୍ଥାନ ପୂରଣ କର ।

(କ) ''ଉଚ୍ଚମନା ଉଚ୍ଚେ ______ ଲଭଇ, ______ ଲଭେ ବିଷ ।''

(ଖ) କାମ ହିଁ ଆମେରିକା ଜୀବନର ______ ।

(ଗ) ବେଳ ଆସିଛି ମାଛି ନ ହୋଇ ______ ହେବା, ଘାଆରେ ନ ବସି ______ରେ ବସିବା ।

ଉ – (କ) ''ଉଚ୍ଚମନା ଉଚ୍ଚେ ଅମୃତ ଲଭଇ, ନୀଚମନା ଲଭେ ବିଷ ।''

(ଖ) କାମ ହିଁ ଆମେରିକା ଜୀବନର ମୂଳମନ୍ତ୍ର ।

(ଗ) ବେଳ ଆସିଛି ମାଛି ନ ହୋଇ ମହୁମାଛି ହେବା, ଘାଆରେ ନ ବସି ଫୁଲରେ ବସିବା ।

**୧୦ । 'ଜ୍ଞାନ' ସହିତ 'ସାପେକ୍ଷ' ମିଶି ନୂତନ ଶବ୍ଦଟି ହେଉଛି 'ଜ୍ଞାନସାପେକ୍ଷ' । ଏହିପରି 'ସାପେକ୍ଷ' ବ୍ୟବହାର କରି ଆଉ ଦୁଇଟି ନୂଆ ଶବ୍ଦ ଲେଖ ।**

ଉ – ବ୍ୟୟସାପେକ୍ଷ, କାର୍ଯ୍ୟସାପେକ୍ଷ ।

## ତୁମ ପାଇଁ କାମ

୧ । ଲେଖକଙ୍କ 'ଆମେରିକା ଅନୁଭୂତି' ପୁସ୍ତକଟି ସଂଗ୍ରହ କରି ପଢ଼ ।

୨ । ଲେଖକଙ୍କର 'ଲଣ୍ଡନ ଚିଠି', 'ତାଜମହଲର ଦେଶେ' ଇତ୍ୟାଦି ଅନ୍ୟ ଭ୍ରମଣ କାହାଣୀ ପୁସ୍ତକ ସଂଗ୍ରହ କରି ପଢ଼ ଓ ସାଙ୍ଗସାଥୀଙ୍କ ସହ ଆଲୋଚନା କର ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

**୧ । 'ଛନ୍ଦାଛନ୍ଦି' – ପରି ଆଉ ୩ଟି ଯୁଗ୍ମଶବ୍ଦ ଲେଖ ।**

ଉ – ଲଗାଲଗି, ଲେଖାଲେଖି, ପିଟାପିଟି

**୨ । ବିପରୀତ ଶବ୍ଦ ଲେଖ ।**

ପ୍ରଶଂସା – ନିନ୍ଦା

ଶାରୀରିକ – ମାନସିକ

ସାପେକ୍ଷ – ନିରପେକ୍ଷ

ଆଦର – ଅନାଦର/ହତାଦର

**୩ । ସଂକ୍ଷେପରେ ଉତ୍ତର ଦିଅ ।**

**(କ) ଅବସରପ୍ରାପ୍ତ ପଦାର୍ଥ ବିଜ୍ଞାନ ଶିକ୍ଷକଙ୍କ କେଉଁ କାର୍ଯ୍ୟ ଦେଖି ଲେଖକ ଆଶ୍ଚର୍ଯ୍ୟ ହେଲେ ?**

ଉ– ଅବସରପ୍ରାପ୍ତ ପଦାର୍ଥ ବିଜ୍ଞାନ ଶିକ୍ଷକ ଜଣକ ଛଅସ୍ତରି ବର୍ଷର ବୁଢ଼ା, ମୁହଁର ଚମ ଓହଳି ପଡ଼ିଲାଣି । ସେ ଦୁଇବର୍ଷ ଧରି ଶନିବାର ଓ ରବିବାର ଛୁଟିରେ ଲାଗି ନିଜ ହାତରେ ଘର ତିଆରି କରିଛନ୍ତି । ଛୋଟ ଟ୍ରାକ୍ଟର ଓ ବୁଲଡ଼ୋଜର ସାହାଯ୍ୟରେ ବଡ଼ ବଡ଼ ପଥର ଗଡ଼ାଇ ସେ କାମ କରିଛନ୍ତି । ଏହି କାର୍ଯ୍ୟ ଦେଖି ଲେଖକ ଆଶ୍ଚର୍ଯ୍ୟ ହେଲେ ।



**(ଖ) ଆମ ଦେଶ କାହିଁକି ଉଠିପାରୁ ନାହିଁ ?**

ଉ– ଆମ ଦେଶ ଉଠି ନ ପାରିବାର ମୂଳ କାରଣ ହେଲା ଆମ ଦେଶର ଶିକ୍ଷିତ ବଡ଼ଲୋକମାନେ ଶାରୀରିକ ପରିଶ୍ରମର ମର୍ଯ୍ୟାଦା ବୁଝିନାହାନ୍ତି । ସେମାନେ ମାଟିକୁ ଭୁଲି ଯାଉଛନ୍ତି । ସେମାନେ ଶାରୀରିକ ପରିଶ୍ରମର ମର୍ଯ୍ୟାଦା ନ ବୁଝିଲା ପର୍ଯ୍ୟନ୍ତ, କେବଳ ଅଧାପେଟିଆ ଦୁର୍ବଳ ମୂଲିଆ ହାତରେ ଦେଶ ଉଠିପାରିବ ନାହିଁ ।

**(ଗ) ଡେଭିଡ୍‌ର କେଉଁ କାର୍ଯ୍ୟ ଦେଖି ସମସ୍ତେ କୃତକୃତ୍ୟ ହେଲେ ?**

ଉ– ଲେଖକ ଏକଦା ଡେଭିଡ୍ ଓ ତା' ବାପାବୋଉଙ୍କ ସହ ସହର ଅଭିମୁଖେ ଯାଉଥିବାବେଳେ ପ୍ରବଳ ବର୍ଷା ହେଲା । ତାଙ୍କ ମଟରଗାଡ଼ିର ପଛ ଚକଟା ଫାଟିଗଲା । ପନ୍ଦର ବର୍ଷର ପୁଅ ଡେଭିଡ୍ ବର୍ଷାରେ ରାସ୍ତାରେ ପାଣି ଭିତରେ ଶୋଇ ଅଧଘଣ୍ଟା ଭିତରେ ମଟରର ପଛ ଚକା ବଦଳାଇ ନୂଆ ଚକଟାଏ ଲଗାଇଦେଲା । ଏହା ଦେଖି ସମସ୍ତେ କୃତକୃତ୍ୟ ହେଲେ ।

**୪ । ସରଳାର୍ଥ ଲେଖ ।**

**(କ) ''ଆମ ଦେଶରେ ଥରେ ଯେ ଦି'ଅକ୍ଷର ପଢ଼ିଛି, ସେ ମାଟିକୁ ଭୁଲିଯାଏ ।''**

ଉ – *''ଆମ ଦେଶରେ ............................ ଭୁଲିଯାଏ ।''*

ଶଂସିତ ଗଦ୍ୟାଂଶଟି 'କ'ଣ ଶିଖିବା' ଶୀର୍ଷକ ପ୍ରବନ୍ଧରୁ ଆନୀତ । ଏହି ପ୍ରସଙ୍ଗରେ ପ୍ରାବନ୍ଧିକ ଗୋଲୋକ ବିହାରୀ ଧଳ ଆଜିର ଶିକ୍ଷିତମାନଙ୍କର ପରିଶ୍ରମ କାତର ବିଷୟରେ ସୂଚନା ଦେଇଛନ୍ତି ।

ଲେଖକ ଆମେରିକା ଯିବା ଅବସରରେ ସେମାନଙ୍କର ପରିଶ୍ରମକୁ ସମ୍ମାନ ଦେଖାଇବା ଘଟଣାକୁ ଲକ୍ଷ୍ୟ କରିଛନ୍ତି । ସେମାନେ ଯେତେ ଉଚ୍ଚଶିକ୍ଷିତ ହେଲେ ମଧ୍ୟ ଯେକୌଣସି କାର୍ଯ୍ୟ କରିବାରେ କୁଣ୍ଠାବୋଧ କରନ୍ତି ନାହିଁ । କିନ୍ତୁ ଆମ ଦେଶରେ ଯିଏ ଦି'ଅକ୍ଷର ପାଠ ପଢ଼ିଛି ଯେ ମାଟିକୁ ଭୁଲିଯାଏ । ଅର୍ଥାତ୍ ଆଦୌ ଶାରୀରିକ ଶ୍ରମ କରେ ନାହିଁ ।

ବାସ୍ତବରେ ପ୍ରସଙ୍ଗଟି ବାସ୍ତବଧର୍ମୀ ଅଟେ ।

**(ଖ) ଆମେରିକାର ଯେକୌଣସି ସହରକୁ ଗଲେ ଆନ୍ତର୍ଜାତିକ କୌଣସି ନା କୌଣସି ଅନୁଷ୍ଠାନ ଦେଖିବାକୁ ପାଇବ ।**

ଉ – *ଆମେରିକାର................ଦେଖିବାକୁ ପାଇବ ।*

ଶଂସିତ ଗଦ୍ୟାଂଶଟି ଗୋଲୋକବିହାରୀ ଧଳଙ୍କ ଲିଖିତ *'କ'ଣ ଶିଖିବା'* ବିଷୟରୁ ଉଦ୍ଧୃତ । ଏଠାରେ ଆମେରିକୀୟମାନଙ୍କର ପୃଥିବୀ କ୍ଷେତ୍ରରେ ନେତୃତ୍ୱ ନେବାର ଆଗ୍ରହ ବିଷୟରେ ବର୍ଣ୍ଣିତ ହୋଇଛି ।

ଆମେରିକା ଲୋକେ ବହୁତ ଦିନ ପର୍ଯ୍ୟନ୍ତ ଏକୁଟିଆ ହୋଇ ରହୁଥିଲେ । ବିଶ୍ୱ ରାଜନୀତି ସହ ସେମାନଙ୍କର କୌଣସି ସମ୍ପର୍କ ନଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ସେମାନେ ପୃଥିବୀ କ୍ଷେତ୍ରରେ ଆଗୁଆ ହେବାରେ ଲାଗିଛନ୍ତି । ବିଶ୍ୱଶାନ୍ତି ଓ ବିଶ୍ୱମୈତ୍ରୀ ପାଇଁ ସେମାନେ ଏବେ ବଡ଼ ଉତ୍କଣ୍ଠିତ ଓ ଆଗ୍ରହୀ । ଆମେରିକାର ଯେ କୌଣସି ସହରକୁ ଗଲେ ଆନ୍ତର୍ଜାତିକ କୌଣସି ନା କୌଣସି ଅନୁଷ୍ଠାନ ଦେଖିବାକୁ ମିଳିବ । ଆନ୍ତର୍ଜାତିକ ଭାବ ବିନିମୟ ପାଇଁ ଆମେରିକୀୟମାନେ ଖୁବ୍ ବ୍ୟାକୁଳ । ସେମାନେ ପୃଥିବୀର ପ୍ରତ୍ୟେକ ଦେଶ ସହ ସମ୍ପର୍କ ପ୍ରତିଷ୍ଠା କରିବାପାଇଁ ଉଦ୍ୟମ କରୁଛନ୍ତି । ଏବେ ଆମେରିକୀୟମାନେ ପୃଥିବୀର ପ୍ରତ୍ୟେକ କ୍ଷେତ୍ରରେ ନେତୃତ୍ୱ ନେବାରେ ଲାଗିଛନ୍ତି ।

ଉକ୍ତ ପ୍ରସଙ୍ଗଟି ବାସ୍ତବିକ ବେଶ୍ ଶିକ୍ଷାପ୍ରଦ ହୋଇପାରିଛି ।

୫ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।

**(କ) ଲେଖକଙ୍କ ମତରେ ଆମେ ଦେଶ ଓ ଜାତି ପାଇଁ କ'ଣ କରିବା ଉଚିତ ?**

ଉ– ଆମ ଦେଶର ଶିକ୍ଷିତ ବଡ଼ଲୋକ ଶାରୀରିକ ପରିଶ୍ରମର ମର୍ଯ୍ୟାଦା ନ ବୁଝିଲା ପର୍ଯ୍ୟନ୍ତ, କେବଳ ଅଧାପେଟିଆ ଦୁର୍ବଳ ମୂଲିଆଙ୍କ ହାତରେ ଦେଶ ଉଠିପାରିବ ନାହିଁ । ଶ୍ରମକୁ ମର୍ଯ୍ୟାଦା ଦେବା ଯେଉଁ ଜାତି ନ ଶିଖିଛି, ସେ ଜାତିର ଉନ୍ନତି ସମ୍ଭବ ନୁହେଁ । ଆମେରିକାର ଲୋକମାନେ ଶ୍ରମର ମୂଲ୍ୟ ବୁଝିଥିବାରୁ ସେ ଦେଶ ଆଜି ଏତେ ଉନ୍ନତ । ତେଣୁ ଆମ ସମସ୍ତଙ୍କୁ ଶ୍ରମକୁ ମର୍ଯ୍ୟାଦା ଦେବା ଶିକ୍ଷା କରିବାକୁ ହେବ । ଏହା ବ୍ୟତୀତ ଆମେ ପ୍ରତ୍ୟେକଙ୍କ ଦୋଷକୁ ଛାଡ଼ି ଗୁଣ ଦେଖିବା ଉଚିତ । ଆମେ ପରିଶ୍ରମକୁ ସମ୍ମାନ ଦେବା ଉଚିତ ଏବଂ ପରିଶ୍ରମ କରୁଥିବା ବ୍ୟକ୍ତିକୁ ପ୍ରଶଂସା କରିବା ଉଚିତ । ଲେଖକଙ୍କ ମତରେ ବେଳ ଆସିଛି, ମାଛି ନ ହୋଇ ମହୁମାଛି ହେବା, ଘାଆରେ ନ ବସି ଫୁଲରେ ବସିବା – ଦେଶ ଓ ଜାତିର ମୁକ୍ତିପଥ ଖୋଜିବା ।

**(ଖ) ଆମେରିକା ଲୋକେ କ'ଣ ପାଇଁ ଅଧିକ ବ୍ୟସ୍ତ ?**

ଉ– ଆମେରିକା ଲୋକେ ଅନେକ ଦିନ ପର୍ଯ୍ୟନ୍ତ ଏକୁଟିଆ ହୋଇ ଚଳୁଥିଲେ । ପୃଥିବୀ ରାଜନୀତି ସହିତ ସେମାନଙ୍କର କୌଣସି ବିଶେଷ ସମ୍ପର୍କ ନଥିଲା । ଗତ ବିଶ୍ୱଯୁଦ୍ଧରୁ ସେମାନେ ପୃଥିବୀ କ୍ଷେତ୍ରରେ ଆଗୁଆ ହେବାରେ ଲାଗିପଡ଼ିଛନ୍ତି । ଏବେ ବିଶ୍ୱମୈତ୍ରୀ ଓ ବିଶ୍ୱଶାସନ ପାଇଁ ସେମାନେ ବଡ଼ ଉତ୍କଣ୍ଠିତ । ଆମେରିକାର ଯେକୌଣସି ସହରରେ କୌଣସି ନା କୌଣସି ଆନ୍ତର୍ଜାତିକ ଅନୁଷ୍ଠାନ ଦେଖିବାକୁ ମିଳିଥାଏ । କାରଣ ଆନ୍ତର୍ଜାତିକ ଭାବ-ବିନିମୟ ପାଇଁ ଆମେରିକୀୟମାନେ ବଡ଼ ବ୍ୟାକୁଳ ।

**(ଗ) ଅବସରପ୍ରାପ୍ତ ପଦାର୍ଥ ବିଜ୍ଞାନ ଶିକ୍ଷକଙ୍କ କେଉଁ କାର୍ଯ୍ୟ ଦେଖି ଲେଖକ ଆଶ୍ଚର୍ଯ୍ୟ ହେଲେ ?**

ଉ– ଅବସରପ୍ରାପ୍ତ ପଦାର୍ଥ ବିଜ୍ଞାନ ଶିକ୍ଷକ ଜଣକ ଛଅସ୍ତରି ବର୍ଷର ବୁଢ଼ା । ତାଙ୍କ ମୁହଁର ଚମ ଓହଳି ପଡ଼ିଲାଣି । ସେ ଦୁଇବର୍ଷ କାଳ କେବଳ ଶନିବାର ରବିବାର ଛୁଟିରେ ଲାଗି ଲାଗି ନିଜ ହାତରେ ଗୋଟିଏ ଘର ତିଆରି କରିଛନ୍ତି । ଛୋଟ ଟ୍ରାକ୍ଟର ଓ ବୁଲ୍‌ଡୋଜର୍ ସାହାଯ୍ୟରେ ବଡ଼ ବଡ଼ ପଥର ଗଡ଼ାଇ ସେ କେମିତି କାମ କରିଛନ୍ତି କହିଲାବେଳେ ତାଙ୍କ ଆଖିରେ ଯୁବସୁଲଭ ଜ୍ୟୋତି ଫୁଟି ଉଠୁଥିଲା । ମାତ୍ର ଆମ ଦେଶର ଜଣେ ଯୁବକ ପକ୍ଷେ ପଟା ଖଣ୍ଡେ କେମିତି ଯୋଡ଼ିବ, ପଥର ଖଣ୍ଡେ କେମିତି ଉଠାଇବ ଭାବିବାକୁ ବୁଦ୍ଧି ପାଏନା । ଆମ ଦେଶର ଯୁବକ ବ୍ୟକ୍ତି ପକ୍ଷରେ ଯାହା କରିବା ସମ୍ଭବ ନୁହେଁ, ଛଅସ୍ତରି ବର୍ଷର ବୁଢ଼ା ଜଣେ ତାହା କରିପାରୁଥିବା ଦେଖି ଲେଖକ ଆଶ୍ଚର୍ଯ୍ୟ ହୋଇଥିଲେ ।

**(ଘ) ମର୍ଗାନ୍‌ଙ୍କ ବନ୍ଧୁ କାହିଁକି ଲେଖକଙ୍କୁ କ୍ଷମା ମାଗିଲେ ?**

ଉ– ଦିନେ ପ୍ରଫେସର ମର୍ଗାନ୍ ଲେଖକଙ୍କୁ ତାଙ୍କର ଜଣେ ବନ୍ଧୁଙ୍କ ଘରକୁ ନେଇଗଲେ । ସେ ବନ୍ଧୁ ଜଣକ କଲଗେଟ୍ ବିଶ୍ୱବିଦ୍ୟାଳୟର ଜଣେ ଇଂରେଜୀ ପ୍ରଫେସର । ଗୋଟିଏ ଅଧାତିଆରି ଘର ପାଖରେ ମଟରଗାଡ଼ି ଛିଡ଼ା ହେଲା । ଲେଖକ ଗାଡ଼ିରୁ ଓହ୍ଲାଇ ଦେଖିଲେ କେତେଜଣ ଲୋକ ରବର ବୁଟ୍ ପିନ୍ଧି, ଛିଣ୍ଡାକୋତରା କାମିଜ ପିନ୍ଧି ମାଟି ଚକଟୁଛନ୍ତି । ସେମାନଙ୍କ ଭିତରୁ ଜଣେ ମର୍ଗାନ୍‌ଙ୍କୁ ସମ୍ଭାଷଣ ଜଣାଇଲେ । ଲେଖକ ଭାବିଲେ ସାଇପଡ଼ିଶାର କେହି କୁଲି ହୋଇଥିବ ବୋଧେ । କିନ୍ତୁ ମର୍ଗାନ୍ ସେହି ବ୍ୟକ୍ତି ଜଣଙ୍କୁ କଲଗେଟ୍ ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ ବୋଲି ଲେଖକଙ୍କ ସହିତ ପରିଚୟ କରାଇଦେଲେ । ତାଙ୍କ ହାତଯାକ କାଦୁଅ ଲାଗିଥିବାରୁ ସେ କରମର୍ଦ୍ଦନ କରିପାରିବେ ନାହିଁ ବୋଲି କହି କ୍ଷମା ମାଗିଲେ ।



# ସଡ଼କ ସୁରକ୍ଷା ଜୀବନ ରକ୍ଷା

## ପୃଷ୍ଠଭୂମି

କ୍ଷୁଦ୍ରାତିକ୍ଷୁଦ୍ର କୀଟପତଙ୍ଗଠାରୁ ପ୍ରାରମ୍ଭକରି ଶ୍ରେଷ୍ଠଜୀବ ମନୁଷ୍ୟ ପର୍ଯ୍ୟନ୍ତ ପ୍ରତ୍ୟେକଙ୍କର ଜୀବନ ବା ପ୍ରାଣ ରହିଛି । ତେଣୁ ପ୍ରତ୍ୟେକ ଗୋଟିଏ ଗୋଟିଏ ପ୍ରାଣୀ । ଆମ୍ଭମାନଙ୍କ ନିକଟର ନିଜର ପ୍ରାଣର ସୁରକ୍ଷା ସର୍ବାଦୌ ପ୍ରଥମ କର୍ତ୍ତବ୍ୟ । ଜୀବନକୁ ବଞ୍ଚାଇବା ରଖିବାପାଇଁ ଆମେ ବିଭିନ୍ନ ପ୍ରକାର କାର୍ଯ୍ୟରେ ଲିପ୍ତରହୁ । କର୍ତ୍ତବ୍ୟ ନିମିତ୍ତ ଆମ୍ଭମାନଙ୍କୁ ସ୍ଥାନାନ୍ତର ହେବାକୁ ପଡ଼ିଥାଏ । ସ୍ଥାନାନ୍ତର ପ୍ରକ୍ରିୟା ବିଭିନ୍ନ ଉପାୟରେ ସମ୍ପାଦିତ ହୋଇଥାଏ । ପ୍ରାଣୀମାନଙ୍କର ଗମନାଗମନ ଏକାନ୍ତ ଅପରିହାର୍ଯ୍ୟ । ଗମନାଗମନ ସମୟରେ ଅନେକ ପ୍ରତିବନ୍ଧକ ବା ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଜଳପଥ, ସ୍ଥଳପଥ ଓ ଆକାଶପଥରେ ଗମନାଗମନ କାର୍ଯ୍ୟ କରାଯାଇଥାଏ । ଗମନାଗମନ ଓ ପରିବହନ ପାଇଁ ଜଳପଥରେ ଜାହାଜ, ଆକାଶପଥରେ ଉଡ଼ାଜାହାଜ ଓ ସ୍ଥଳପଥରେ ସାଇକେଲଠାରୁ ଆରମ୍ଭକରି ରେଳଗାଡ଼ି ପର୍ଯ୍ୟନ୍ତ ବ୍ୟବହାର କରାଯାଇଥାଏ । ପ୍ରତ୍ୟେକ ଗମନାଗମନ କାର୍ଯ୍ୟରେ ବିପଦ ରହିଛି । ବିପଦକୁ ଏଡ଼ାଇବା ନିମିତ୍ତ ବିହିତ ପ୍ରତିକାର ବା ତା'ର ସୁରକ୍ଷା ଗ୍ରହଣ କରିବା ଏକାନ୍ତ ଆବଶ୍ୟକ । ତେଣୁ ସ୍ଥଳପଥରେ ସଡ଼କର ସୁରକ୍ଷା କରିପାରିଲେ ଜୀବନର ସୁରକ୍ଷା ହୋଇପାରିବ ।

## ବିଷୟର ସାରକଥା

ଦିନ ରାତି ୨୪ ଘଣ୍ଟା ଅନବରତ ତଥା ଅବିଶ୍ରାନ୍ତ ଗତିରେ ଯାନବାହନଦ୍ୱାରା ଯିବାଆସିବା ଓ ଜିନିଷପତ୍ର ନେବାଆଣିବା କାର୍ଯ୍ୟ ଚାଲିଛି । ଗ୍ରାମଠାରୁ ସହର ପର୍ଯ୍ୟନ୍ତ ପ୍ରତ୍ୟେକ ରାସ୍ତାରେ ଗମନାଗମନ କାର୍ଯ୍ୟ ଲାଗିରହିଛି । କେତେବେଳେ ଆମ୍ଭେମାନେ ଚାଲିକରି ଯାଉ ତ ଆଉ କେତେବେଳେ ଯିବାଆସିବା ପାଇଁ ମୋଟରଗାଡ଼ି ବ୍ୟବହାର କରୁ । ପ୍ରତ୍ୟେକ କ୍ଷେତ୍ରରେ ଆମ୍ଭମାନଙ୍କୁ ସତର୍କତା ଅବଲମ୍ବନ କରିବାକୁ ପଡ଼ିଥାଏ । ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ନିକଟରେ ଥିବା ବିଦ୍ୟାଳୟକୁ ଚାଲିକରି ଯାଇଥା'ନ୍ତି । ଦୂରବର୍ତ୍ତୀ ବିଦ୍ୟାଳୟ ହୋଇଥିଲେ ମୋଟରରେ ଯିବା ଆସିବା କରିଥା'ନ୍ତି ! ବର୍ତ୍ତମାନର ପ୍ରତ୍ୟେକ ଛାତ୍ରଛାତ୍ରୀ ଆମ ଦେଶର ଭବିଷ୍ୟତ । ସଡ଼କପଥରେ ଯିବା ସମୟରେ କେତେକ ନିୟମ ପାଳନ କରିବାକୁ ପଡ଼ିଥାଏ । ରାସ୍ତାର ଡାହାଣପାର୍ଶ୍ୱରେ ଯିବା ଆସିବା କରିବା ହେଉଛି ପ୍ରଥମ ମୌଳିକ ନିୟମ । ବାମ ଓ ଡାହାଣ ଉଭୟ ପଟୁ ଗାଡ଼ିମଟର ଦେଖି ରାସ୍ତା ଅତିକ୍ରମ କରିବା ଉଚିତ । ବଡ଼ ବଡ଼ ସହରମାନଙ୍କରେ ସ୍ୱତନ୍ତ୍ର ପାଦଚଲା ରାସ୍ତା ରହିଥାଏ । ଛକ ଜାଗାମାନଙ୍କରେ ଟ୍ରାଫିକ୍ ପୋଲିସ୍‌ର ନିର୍ଦ୍ଦେଶ ମାନି ଗତି କରିବାକୁ ପଡ଼ିଥାଏ । ନିଜର ଯାନକୁ ନିଜ ନିୟନ୍ତ୍ରଣରେ ରଖିବାର ଦକ୍ଷତା ନିହାତି ଆବଶ୍ୟକ । ସେ ସାଇକେଲ ହେଉ ବା ମଟରଗାଡ଼ି ହେଉ, ପ୍ରତ୍ୟେକର ନିୟନ୍ତ୍ରଣରେ ରଖିବା ଦକ୍ଷତା ଆମର ଦରକାର । ଗାଡ଼ିଚାଳନା ସମୟରେ ରାସ୍ତାରେ ଥିବା ଚିହ୍ନ ପ୍ରତି ଦୃଷ୍ଟି ରଖିବା ବିଧେୟ । ଗାଡ଼ି ଚଳାଇବା ସମୟରେ ମୋବାଇଲ ବ୍ୟବହାର କରିବା ଅନୁଚିତ । କାରଣ ଏହା ଯୋଗୁଁ ଦୁର୍ଘଟଣାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଆଗ ଓ ପଛକୁ ଚାହିଁ ରାସ୍ତାରେ ଗାଡ଼ି ବୁଲାଇବା ଦରକାର । ଟ୍ରାଫିକ୍ ପୋଲିସ୍‌ର ସଙ୍କେତ ମାନି ଗାଡ଼ି ଚଳାଇଲେ ବିପଦର ସାମନା କରିବାକୁ ପଡ଼େ ନାହିଁ । ମଟରଗାଡ଼ିରେ ଦୁଇଜଣରୁ ଅଧିକ ଯିବା ଆସିବା ବିପଦଜନକ ଅଟେ । ଏଥିପ୍ରତି ପ୍ରତ୍ୟେକ ସତର୍କ ରହିବା ଉଚିତ । ଗାଡ଼ିରେ ଅଧିକ ଜିନିଷ ବୋହିନେବ ମଧ୍ୟ ବିପଦଜନକ ଅଟେ । କାରଣ ଓଜନ ଯୋଗୁଁ ଗାଡ଼ିର ଭାରସାମ୍ୟ ଠିକ୍ ରହେନାହିଁ । ଗାଡ଼ିରେ ଦୁଇଜଣ ଯାଉଥିବାବେଳେ ଗପସପ କରି ଯିବା ଅନୁଚିତ । ଏହାଦ୍ୱାରା କଥାବାର୍ତ୍ତାରେ ଅନ୍ୟମନସ୍କ ହେବା ଯୋଗୁଁ ଦୁର୍ଘଟଣା ଘଟିବାର ବିଶେଷ ସମ୍ଭାବନା

ଥାଏ । ରାସ୍ତାର ନିୟମକୁ ସଠିକ୍‌ଭାବେ ପାଳନ କରିପାରିଲେ ଆମେ ବିପଦରୁ ରକ୍ଷା ପାଇବା ଓ ଜୀବନର ସୁରକ୍ଷା ହୋଇପାରିବ ।

**କଠିନ ଶବ୍ଦାର୍ଥ**

ଅବଲମ୍ବନ – ଅନୁସରଣ । ଆବଶ୍ୟକ – ଦରକାର । ହାନି – କ୍ଷତି । ଅକଳନ – ଯାହା କଳନା କରାଯାଇ ନପାରେ । ଏଡ଼ାଇଦେବା – ଦୂରେଇଦେବା । ସତର୍କତା – ସାବଧାନତା । ସମାନାପଟୁ – ଆଗଆଡୁ । ନିରାପଦ – ବିପଦଶୂନ୍ୟ । ଆଶଙ୍କା – ଭୟ । ପରିବର୍ତ୍ତନ – ବଦଳାଇବା । ସୂଚନା – ସଙ୍କେତ । ସର୍ବାଦୌ – ସର୍ବପ୍ରଥମେ । ଭାରସାମ୍ୟ – ନିୟନ୍ତ୍ରଣ, ସନ୍ତୁଳନ । ଦ୍ରୁତଗାମୀ – ଅତି ବେଗରେ ଯାଉଥିବା । ପ୍ରତିବାଦ – ବିରୋଧ । ସଚେତନ – ଜାଗ୍ରତ, ଚେଇଁ ରହିବା । ଚାଳକ – ଯେ ଚଳାଏ । ସହଯାତ୍ରୀ – ସାଙ୍ଗରେ ଯାଉଥିବା ଲୋକ । ପ୍ରଭୂତ – ବହୁତ, ଅନେକ । ପାର୍ଶ୍ୱରେ – ପାଖରେ । ଅନ୍ୟମନସ୍କ – ମନରେ ଅନ୍ୟ ଚିନ୍ତାକରି ଲକ୍ଷ୍ୟପଥରେ ଯିବା । ଯାତାୟାତ – ଯିବାଆସିବା ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) କ'ଣ କଲେ ଆମେ ସଡ଼କ ଦୁର୍ଘଟଣାକୁ ଏଡ଼ାଇପାରିବା ?**

ଉ – ଆମ୍ଭେମାନେ ରାସ୍ତାର ନିୟମ ମାନି ଗାଡ଼ି ଚଳାଇଲେ ସଡ଼କ ଦୁର୍ଘଟଣାକୁ ଏଡ଼ାଇପାରିବା ।

**(ଖ) ଇଞ୍ଜିନ୍‌ଚାଳିତ ଗାଡ଼ି ଚଲାଇବାପାଇଁ ଚାଳକର ସର୍ବନିମ୍ନ ବୟସସୀମା କେତେ ?**

ଉ – ଇଞ୍ଜିନ୍‌ଚାଳିତ ଗାଡ଼ି ଚଳାଇବାପାଇଁ ଚାଳକର ସର୍ବନିମ୍ନ ବୟସ ୧୮ ବର୍ଷ ହେବା ବିଧେୟ ।

**(ଗ) ନାଗରିକର କର୍ତ୍ତବ୍ୟ ମଧ୍ୟରୁ କେଉଁ ନିୟମ ଜାଣିବା ତା' ପାଇଁ ଗୁରୁତ୍ୱପୂର୍ଣ୍ଣ ?**

ଉ – ନାଗରିକର କର୍ତ୍ତବ୍ୟ ମଧ୍ୟରୁ ରାସ୍ତାର ସମସ୍ତ ନିୟମ ମାନି ଗାଡ଼ି ଚଳାଇବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

**(ଘ) ପାଦରେ ଚାଲି ଗଲାବେଳେ ରାସ୍ତାରେ କେଉଁ ପାଖେ ଚାଲିବ ?**

ଉ – ପାଦରେ ଚାଲି ଚାଲି ଗଲାବେଳେ ନିଜର ଡାହାଣ ପାଖରେ ଚାଲିବ ।

**(ଙ) ଦ୍ରୁତଗାମୀ ଗାଡ଼ିର ଚାଳକକୁ ମୋବାଇଲ ବ୍ୟବହାର କାହିଁକି ମନା ?**

ଉ – ଦ୍ରୁତଗାମୀ ଗାଡ଼ି ଚଳାଇବାବେଳେ ମୋବାଇଲ ବ୍ୟବହାର କଲେ ଅନ୍ୟମନସ୍କ ହେବାକୁ ପଡ଼େ ଓ ଭାରସାମ୍ୟ ହରାଇ ଦୁର୍ଘଟଣାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ତେଣୁ ଦ୍ରୁତଗାମୀ ଗାଡ଼ିଚାଳକକୁ ମୋବାଇଲ ବ୍ୟବହାର କରିବା ମନା ।

୨ । ଦୁଇ ବା ତିନୋଟି ବାକ୍ୟରେ ଉତ୍ତର ଲେଖ ।

**(କ) ରାସ୍ତା ଦୁର୍ଘଟଣାଦ୍ୱାରା କି କ୍ଷତି ହୁଏ ?**

ଉ – ରାସ୍ତାରେ ଗାଡ଼ି ଚଳାଇବାବେଳେ ଅନ୍ୟମନସ୍କ ଓ ଅସାବଧାନତା ଯୋଗୁଁ ଦୁର୍ଘଟଣା ଘଟିଥାଏ । କେତେକ କ୍ଷେତ୍ରରେ ଜୀବନ ଚାଲିଯାଏ ଓ ଅନ୍ୟ କେତେକ କ୍ଷେତ୍ରରେ ଗୋଡ଼ହାତ ଭାଙ୍ଗି ମନୁଷ୍ୟ ପଙ୍ଗୁ ପାଲଟିଯାଏ । ବହୁ ଧନ ମଧ୍ୟ ବ୍ୟୟ ହୋଇଥାଏ ।

**(ଖ) ପାଦଚଲା ରାସ୍ତାରେ କେଉଁପଟେ କାହିଁକି ଯିବା ?**

ଉ – ପାଦରେ ଚାଲି ଚାଲି ଗଲାବେଳେ ଗାଁ କି ସହରରେ ନିଜର ଡାହାଣ ପଟେ ଯିବା ଉଚିତ । ଏହାଦ୍ୱାରା ସାମ୍ନା ପଟୁ ଆସୁଥିବା ଗାଡ଼ିମଟରକୁ ଦୂରରୁ ଦେଖିହେବ ଓ ଦ୍ରୁତଗାମୀ ଗାଡ଼ିକୁ ବାଟ ଛାଡ଼ି ନିରାପଦରେ ଆଗକୁ ଯାଇହେବ । ଏଥିପ୍ରତି ଅସାବଧାନ ହେଲେ ଦୁର୍ଘଟଣାରେ ସାମ୍ନା ହେବାକୁ ପଡ଼ିବ ।



**(ଗ) ଛକମାନଙ୍କରେ ପାର ହେବାକୁ କ'ଣ କରିବାକୁ ହେବ ?**

ଉ – ଛକ ଜାଗାମାନଙ୍କରେ ରାସ୍ତା ବଦଳାଇବା ବା ପାର ହେବାକୁ ଥିଲେ ସେଠାରେ ଥିବା ଧଳାଦାଗ ଭଳି ଚିହ୍ନିତ ସ୍ଥାନକୁ ବ୍ୟବହାର କରିବା ଦରକାର । ଏପରି ସାବଧାନତା ଅବଲମ୍ବନ କଲେ ଦୁର୍ଘଟଣାକୁ ଏଡ଼ାଇ ଦେଇ ପାରିବା ।

**(ଘ) ସାଇକେଲ ଚଳାଇବାବେଳେ କି ପ୍ରକାର ସାବଧାନତା ଅବଲମ୍ବନ କରିବା ଉଚିତ ?**

ଉ – ରାସ୍ତାରେ ସାଇକେଲ୍ ଚଳାଇବାବେଳେ ରାସ୍ତା ଓ ଏହାର ପାର୍ଶ୍ୱରେ ଥିବା ଚିହ୍ନ ପ୍ରତି ଧ୍ୟାନ ଦେଇ ଆଗକୁ ଯିବା ଉଚିତ । ରାସ୍ତା ଉପରେ ଉଦ୍ଦିଷ୍ଟ ସ୍ଥାନରେ ଦିଆଯାଇଥିବା ସଂକେତ ପ୍ରତି ସତର୍କ ରହିବାକୁ ହେବ । ନାଲି ଆଲୁଅ ଜଳୁଥିଲେ ଅଟକିବା ଓ ସବୁଜ ଆଲୁଅ ଜଳିବାବେଳେ ଆଗକୁ ଯିବା ଦରକାର ।

**(ଙ) ଦୁଇଚକିଆ ଯାନର ପଛରେ ବସିଲେ କି ପ୍ରକାର ସତର୍କ ହେବାକୁ ପଡ଼ିବ ?**

ଉ – ଜଣକ ମଟର ସାଇକେଲ ପଛରେ ବସି ଗଲାବେଳେ ମଧ୍ୟ ସତର୍କ ହୋଇ ଯିବାକୁ ପଡ଼ିଥାଏ । ପଛରେ ବସି ଗପକରିବା, ଚାଳକକୁ ଅନ୍ୟମନସ୍କ କରିବା, ହାତଗୋଡ଼ ହଲାଇ ଭାରସାମ୍ୟ ନଷ୍ଟ କରିବା ଅନୁଚିତ । କାରଣ ଏପରି କଲେ ଦୁର୍ଘଟଣା ବା ବିପଦର ସମ୍ମୁଖୀନ ହେବାକୁ ପଡ଼ିଥାଏ ।

୩ । ପୂର୍ବାପର ସମ୍ପର୍କ ସହ ସରଳଭାଷାରେ ବୁଝାଇ ଲେଖ ।

**(କ) ଏହାଦ୍ୱାରା ନିଜର ଓ ଦେଶର ଧନଜୀବନ ସୁରକ୍ଷିତ ହୋଇପାରିବ ।**

ଉ – *ଏହାଦ୍ୱାରା ନିଜର ................................ ହୋଇପାରିବ ।*

''ଉଲ୍ଲିଖିତ ପଂକ୍ତିଟି ଆମ ପଠିତ ସାହିତ୍ୟ ବହିର ''ସଡ଼କ ସୁରକ୍ଷା ଜୀବନ ରକ୍ଷା'' ପ୍ରବନ୍ଧରୁ ଉଦ୍ଧୃତ । ଏଠାରେ ଲେଖକ ଜୀବନ ଓ ଧନର ସୁରକ୍ଷା ବିଷୟରେ ସତର୍କ ରହିବାକୁ ପରାମର୍ଶ ଦେଇଛନ୍ତି ।

ଏବେ ଗାଁଠାରୁ ସହରଯାଏ ସବୁଆଡ଼େ ଗାଡ଼ିମଟର ବ୍ୟବହାର ବହୁ ପରିମାଣରେ ବଢ଼ିଯାଇଛି । ଗାଡ଼ିଚାଳକମାନଙ୍କ ଅନ୍ୟମନସ୍କତା ଓ ଅସାବଧାନତା ହେତୁ ପ୍ରତିଦିନ ଦୁର୍ଘଟଣା ଘଟି ବହୁ ଧନଜୀବନ ନଷ୍ଟ ହେଉଛି । ଫଳସ୍ୱରୂପ ନିଜର, ପରିବାରର ତଥା ଦେଶର ଅକଳନ କ୍ଷତି ଘଟୁଛି । ତେଣୁ ରାସ୍ତାରେ ଚାଲି ଚାଲି ଗଲାବେଳେ କିମ୍ବା ଗାଡ଼ିମଟରରେ ଯିବାବେଳେ ଆମକୁ ସତର୍କତା ଅବଲମ୍ବନ କରିବାକୁ ହେବ । ଗାଡ଼ି ଚଲାଇବା ସମୟରେ ରାସ୍ତା ଓ ଏହାର ପାର୍ଶ୍ୱରେ ଥିବା ବିଭିନ୍ନ ସଂକେତ ପ୍ରତି ସତର୍କ ରହିବା ଆବଶ୍ୟକ । ବିଶେଷତଃ ଛକଜାଗାମାନଙ୍କର ଟ୍ରାଫିକ୍ ସଙ୍କେତମାନି ଗାଡ଼ଇ ଚଳାଇବା ଉଚିତ । ଆମେ ରାସ୍ତାରେ ଯିବା ଆସିବା କଲାବେଳେ ଯଦି ସତର୍କରହିବା ଓ ରାସ୍ତାର ନିୟମ ମାନିବା, ତେବେ ଦୁର୍ଘଟଣାକୁ ଏଡ଼ାଇ ପାରିବା । ଏହାଦ୍ୱାରା ନିଜର ତଥା ଦେଶର ଧନଜୀବନ ସୁରକ୍ଷିତ ହୋଇପାରିବ ।

**(ଖ) ଆମେ ସମସ୍ତେ ସଚେତନ ଓ ସତର୍କ ହେଲେ, ଆମର ଓ ଆମ ଦେଶର ମଙ୍ଗଳ ସାଧିତ ହେବ ।**

ଉ – *ଆମେ ସମସ୍ତେ ................................ ସାଧିତ ହେବ ।*

ଉଲ୍ଲିଖିତ ପଂକ୍ତିଟି ଆମ ପଠିତ ସାହିତ୍ୟ ବହିର ''ସଡ଼କ ସୁରକ୍ଷା ଜୀବନ ରକ୍ଷା'' ପ୍ରବନ୍ଧରୁ ଆନୀତ । ଏଠାରେ ପ୍ରାବନ୍ଧିକ ଦେଶର ମଙ୍ଗଳ ସାଧନ ନିମନ୍ତେ ସଚେତନ ଓ ସତର୍କତା ବିଷୟରେ ଦୃଷ୍ଟିପାତ କରିଛନ୍ତି ।

ଆମ୍ଭମାନେ ରାସ୍ତାରେ ଯିବାଆସିବା କରିବା ସମୟରେ ସଚେତନତା ଓ ସତର୍କତା ଅବଲମ୍ବନ କରିବା ଉଚିତ । ଏହାଦ୍ୱାରା ଆମ୍ଭେମାନେ ଦୁର୍ଘଟଣା ବା ବିପଦକୁ ଏଡ଼ାଇଯାଇ ପାରିବା । ଏଥିପାଇଁ ଆମ ଦେଶରେ ସୁନ୍ଦର ନିୟମମାନ ପ୍ରଣୟନ କରାଯାଇଛି । ରାସ୍ତା ଉପରେ ଓ ପାର୍ଶ୍ୱରେ ଅନେକ ସଙ୍କେତର ବ୍ୟବସ୍ଥା କରାଯାଇଛି । ଆମ୍ଭେମାନେ ନିରାପଦ ରହିବା ଦେଶର ଆପଦ ଦୂରେଇ ଯିବ । ସେସବୁର ଧାରଣା ରଖିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ । ଦେଶର ମଙ୍ଗଳ ସାଧନ ନିମିତ୍ତ ପ୍ରତ୍ୟେକ ନାଗରିକ ସତର୍କ ଓ ସଚେତନ ରହିବା ଆବଶ୍ୟକ । ଆମ୍ଭେମାନେ ସୁସ୍ଥ ଜୀବନଯାପନ କଲେ ଦେଶକୁ ସୁସ୍ଥ ରଖିପାରିବା ଓ ଦେଶର ମଙ୍ଗଳ ସାଧିତ ହେବ ।

୪ । ତଳେ ଦିଆଯାଇଥିବା ଶବ୍ଦଗୁଡ଼ିକୁ ନେଇ ବାକ୍ୟ ଗଠନ କର । (ପ୍ରଶ୍ନ ସହ ଉତ୍ତର)

**ସଚେତନ** – ପ୍ରତ୍ୟେକ ନାଗରିକ ନିଜ ସ୍ୱାସ୍ଥ୍ୟ ପ୍ରତି **ସଚେତନ** ରହିବା ଉଚିତ ।

**ଦୁର୍ଘଟଣା** – ରାସ୍ତାରେ ଗଲାବେଳେ ସତର୍କତା ଅବଲମ୍ବନ କଲେ ଓ ରାସ୍ତାର ନିୟମ ମାନିଲେ **ଦୁର୍ଘଟଣା** କୁ ଏଡ଼ାଇ ଯାଇ ପାରିବା ।

**ଦ୍ରୁତଗାମୀ** – **ଦ୍ରୁତଗାମୀ** ଗାଡ଼ିଚାଳକ ଟିକିଏ ଅସତର୍କ ହେଲେ ଦୁର୍ଘଟଣାର ସମ୍ମୁଖୀନ ହୋଇଥାଏ ।

**ଅନ୍ୟମନସ୍କ** – ଶ୍ରେଣୀରେ **ଅନ୍ୟମନସ୍କ** ରହୁଥିବା ଛାତ୍ର ପାଠ ବୁଝି ପାରେ ନାହିଁ ।

**ଗପସପ** – ରାସ୍ତାରେ ଗାନଇ ଚଳାଇ ଗଲାବେଳେ ପଛରେ ବସିଥିବା ଲୋକ ସହିତ **ଗପସପ** କରିଯିବାଦ୍ୱାରା ଦୁର୍ଘଟଣା ଘଟିପାରେ ।

୫ । ତଳ ଶବ୍ଦଗୁଡ଼ିକର ବିପରୀତ ଅର୍ଥ ବୁଝାଉଥିବା ଶବ୍ଦ ଲେଖ । (ପ୍ରଶ୍ନ ସହ ଉତ୍ତର)

ସାମାନ୍ୟ – ଅସାମାନ୍ୟ
ହାନି – ଲାଭ
ନିୟମ – ବେନିୟମ
ବିପଦ – ସମ୍ପଦ
କର୍ତ୍ତବ୍ୟ – ଅକର୍ତ୍ତବ୍ୟ

୬ । ପାଠରୁ ବାଛି ଶୂନ୍ୟସ୍ଥାନ ପୂରଣ କର ।

(କ) ଆଜିର ପିଲା ଆସନ୍ତା କାଲିର ____________ ।
ଉ – ନାଗରିକ

(ଖ) ବଡ଼ ବଡ଼ ସହରରେ ପାଦରେ ଚାଲିବାକୁ ____________ ବ୍ୟବସ୍ଥା ଥାଏ ।
ଉ – ସ୍ୱତନ୍ତ୍ର ପାଦଚଲା ରାସ୍ତାର

(ଗ) ସାଇକେଲ ସିଟ୍ ଉପରେ ବସିଲେ ____________ ରାସ୍ତାକୁ ଛୁଇଁ ପାରୁଥିବ ।
ଉ – ଦୁଇଗୋଡ଼ ଆଙ୍ଗୁଳି

(ଘ) ____________ ଆଲୁଅ ଜଳିଲେ ଆଗକୁ ଯିବାପାଇଁ ସୂଚନା ମିଳେ ।
ଉ – ସବୁଜ

(ଙ) ମଟରସାଇକେଲ ଇତ୍ୟାଦି ଦୁଇଚକିଆ ଯାନରେ ____________ ରୁ ଅଧିକ ସଂଖ୍ୟକ ଲୋକ ଯାତାୟାତ କରିବା ଉଚିତ ନୁହେଁ ।
ଉ – ଦୁଇ

୭ । 'କ' ସ୍ତମ୍ଭର ସଙ୍କେତ ସହିତ 'ଖ' ସ୍ତମ୍ଭର ସମ୍ପର୍କିତ ଉକ୍ତିକୁ ଗାରଟାଣି ଯୋଡ଼ ।

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
|  | ଏଠାରେ ଯାନବାହନ ରଖିବା ମନା |
|  | ଆଗରେ ହମ୍ପସ୍ ଅଛି |
|  | ପଦଚାରୀଙ୍କ ରାସ୍ତାପାର ହେବା ସ୍ଥାନ (ଜେବ୍ରା କ୍ରସିଂ) |
|  | ଅଟକନ୍ତୁ |
|  | ହର୍ଣ୍ଣ ବଜାଇବା ମନା |



## ତୁମ ପାଇଁ କାମ

୧ । ବହିରେ ଦିଆଯାଇଥିବା ଟ୍ରାଫିକ୍ ସଙ୍କେତ ବ୍ୟତୀତ ଅନ୍ୟ ସଙ୍କେତଗୁଡ଼ିକୁ ଅନ୍ୟମାନଙ୍କୁ ପଚାରି ବୁଝ ଓ ଅଙ୍କନ କର । ସେଗୁଡ଼ିକର ବ୍ୟବହାର ସମ୍ପର୍କରେ ଲେଖ ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

**୧ । ଯାନବାହନର ଆବଶ୍ୟକତା କ'ଣ ?**

ଉ – କୌଣସି କାମରେ ଦୂରସ୍ଥାନକୁ ଆମ୍ଭେମାନେ ଚାଲିକରି ଗଲେ ବହୁତ ସମୟ ଲାଗିବ ଓ ଶରୀର ପୀଡ଼ା ମଧ ହେବ । କେବଳ ଯିବା ଆସିବାପାଇଁ ଅଧିକ ସମୟ ନଷ୍ଟହେବ । ଫଳରେ କାମ କରିବା ପାଇଁ ସମୟ ନିଅଣ୍ଟ ହେବ । ଯାନଦ୍ୱାରା ଗଲେ ଆମେ ଠିକଣା ସ୍ଥାନରେ ଶୀଘ୍ର ପହଞ୍ଚି ପାରିବା ଓ ଠିକ୍ ସମୟରେ କାର୍ଯ୍ୟଯି ଶେଷ କରିପାରିବା । ତେଣୁ ଯାନବାହନର ଏକାନ୍ତ ଆବଶ୍ୟକତା ରହିଛି ।

**୨ । ସଡ଼କ ସୁରକ୍ଷାର କି ଆବଶ୍ୟକତା ରହିଛି ?**

ଉ – ଆଜିକାଲି ଯାନବାହନର ବହୁଳ ବ୍ୟବହାର ହେତୁ ସାମାନ୍ୟ ଅସାବଧାନତା ହେତୁ ଦୁର୍ଘଟଣାମାନ ଘଟି ବହୁ ଧନଜୀବନ ହାନି ଘଟୁଛି । ଫଳରେ ବ୍ୟକ୍ତି, ପରିବାର ଓ ରାଷ୍ଟ୍ରର ଅକଳନ କ୍ଷତି ଘଟୁଛି । ତେଣୁ ଏସବୁ ଦୁର୍ଘଟଣାକୁ ଏଡ଼ାଇବା ପାଇଁ ସଡ଼କ ସୁରକ୍ଷାର ଆବଶ୍ୟକତା ଅଛି । ଚାଲିଲାବେଳେ ଓ ଗାଡ଼ି ଚଳାଇବାବେଳେ ଆମେ ସତର୍କ ରହିଲେ ଓ ରାସ୍ତାର ନିୟମ ମାନିଲେ ଦୁର୍ଘଟଣାକୁ ଏଡ଼ାଇଦେଇ ପାରିବା ।

**୩ । ଗମନାଗମନରେ ଜୀବନ ପ୍ରତି କି ବିପଦ ରହିଥାଏ ?**

ଉ – ଗମନାଗମନ ସମୟରେ ଅସାବଧାନତା ହେତୁ ଦୁର୍ଘଟଣା ଘଟିବାର ସମ୍ଭାବନା ଥାଏ । ଦୁର୍ଘଟଣାରେ କୌଣସି ଅଙ୍ଗହାନି କିମ୍ବା ପ୍ରାଣହାନି ଘଟିବାର ସମ୍ଭାବନା ଥାଏ । ତେଣୁ ଗମନାଗମନ ସମୟରେ ସତର୍କ ରହିବା ଓ ରାସ୍ତାର ନିୟମ ମାନିବା ଉଚିତ ।

**୪ । ଶୀଘ୍ର ଗାଡ଼ି ଚଳାଇବାଦ୍ୱାରା କ'ଣ ହୁଏ ?**

ଉ – ଶୀଘ୍ର ଗାଡ଼ି ଚଳାଇବାଦ୍ୱାରା ସମୟ ସମୟରେ ଗାଡ଼ିଚାଳକ ଗାଡ଼ି ଉପରୁ ନିଜର ନିୟନ୍ତ୍ରଣ ହରାଇବସେ । ଫଳରେ ଅନ୍ୟ ପଦଚାରୀ, ଯାନବାହନ କିମ୍ବା ରାସ୍ତାକଡ଼ର ଖୁଣ୍ଟି ସହିତ ଧକ୍କା ହୋଇ ଦୁର୍ଘଟଣା ଘଟିଥାଏ । ଏହାଦ୍ୱାରା ଜୀବନ ହାନିଙ୍କ କିମ୍ବା ଅଙ୍ଗହାନି ଘଟିଥାଏ ।





# ଦେଶପ୍ରେମୀ କଏଦୀ

• ରାମପ୍ରସାଦ ମହାନ୍ତି
ଜନ୍ମ : ୫.୧୧.୧୯୨୪
ମୃତ୍ୟୁ : ୨୦.୧୧.୨୦୧୬

## ଲେଖକ ପରିଚୟ

ରାମପ୍ରସାଦ ମହାନ୍ତି (୧୯୨୦) ପୁରୀ ଜିଲ୍ଲାର ନିମାପଡ଼ା ଥାନା ଅନ୍ତର୍ଗତ କନ୍ତିଲୋ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ସେ ଜଣେ ସ୍ୱାଧୀନତା ସଂଗ୍ରାମୀ । ସେ ଅନେକ ଦିନ ଧରି *'ମୀନାବଜାର'* ଓ *'ଶିଶୁଲେଖା'* ଆଦି ଶିଶୁ ପତ୍ରିକାର ସମ୍ପାଦକ ଥିଲେ । ବହୁ ଗଳ୍ପ ଓ କବିତାର ସେ ରଚୟିତା । *'ଲୁଲୁ ଆମ ପାରିବାର', 'ଦେଶପ୍ରେମୀ କଏଦୀର କାହାଣୀ'* ଆଦି ଗଳ୍ପଗୁଡ଼ିକ ତାଙ୍କ ରଚନା । ତାଙ୍କ ରଚିତ ଶିଶୁସାହିତ୍ୟ ପୁସ୍ତକ *'ବଜାରେ ବଜା'* ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି ।

## ବିଷୟ ସୂଚନା

ଲେଖା ଜରିଆରେ ଲୋକଙ୍କ ମନରେ ଦେଶପ୍ରେମ ସୃଷ୍ଟି କରିବା ଲେଖକଙ୍କର ଉଦ୍ଦେଶ୍ୟ । ଉକ୍ତ *'ଦେଶପ୍ରେମୀ କଏଦୀ'* ବିଷୟରେ ସ୍ୱାଧୀନତା ସଂଗ୍ରାମୀ ବିନାୟକ ଦାମୋଦର ସଭର୍‌କର୍‌ଙ୍କ ମାତୃଭୂମିର ମୁକ୍ତି ଆନ୍ଦୋଳନରେ ନିଃସ୍ୱାର୍ଥପର ସେବା ଓ ତ୍ୟାଗର କାହାଣୀ ବର୍ଣ୍ଣିତ ହୋଇଛି ।

## ସାରକଥା

ଦାମୋଦର ସଭର୍‌କର୍ ଜଣେ ସ୍ୱାଧୀନତା ସଂଗ୍ରାମୀ । ସେ ଜଣେ ଦେଶଭକ୍ତ ଏବଂ ବିପ୍ଳବୀ ଯୁବକ ଥିଲେ। ଜନ୍ମଭୂମିପାଇଁ ଜୀବନସାରା ଦୁଃଖ ସହିଥିଲେ । ବିଲାତରେ ଆଇନ ପଢ଼ିବା ପାଇଁ ଯାଇ ସେ ମାତୃଭୂମିକୁ ଶୃଙ୍ଖଳମୁକ୍ତ କରିବା ପାଇଁ ଉଦ୍ୟମ କରୁଥିବା ଅପରାଧରେ ରାଜନୈତିକ ବନ୍ଦୀ ସାଜି ଜାହାଜ ଯୋଗେ ଭାରତର ଏକ ଜେଲ୍‌କୁ ଚାଲାଣ ହେଉଥାଆନ୍ତି । ସମୁଦ୍ରରେ ଜାହାଜ ଆସୁଥାଏ । ବନ୍ଦୀ ଜଣଙ୍କର ମୁହଁରେ ଅଜସ୍ର ଚିନ୍ତାର ଚିହ୍ନ । ତାଙ୍କୁ ଜାହାଜର ଯେଉଁ ପ୍ରକୋଷ୍ଠରେ ରଖାଯାଇଥାଏ, ସେହି ପ୍ରକୋଷ୍ଠ ଆଗରେ ସଶସ୍ତ୍ର ପ୍ରହରୀ ପଦଚାରଣ କରୁଥା'ନ୍ତି ।

ବିଲାତରେ ଗିରଫ ହୋଇ ସେ ଯେତେବେଳେ ହାଜତକୁ ଗଲେ, ସେତେବେଳେ ଜଣେ ଇଂରେଜ ସାମ୍ବାଦିକ ତାଙ୍କୁ ଜଣାଇଥିଲେ ଯେ, ତାଙ୍କର ଅନ୍ୟ ଦୁଇଭାଇଙ୍କୁ ମଧ୍ୟ ଜେଲ୍‌କୁ ନିଆଗଲାଣି । ଏହା ଶୁଣି ସେ ଆନନ୍ଦରେ କହିଲେ – *"ଏ ତ ଗୌରବର କଥା । ମୋର ସୌଭାଗ୍ୟ ଯେ ଆମ ପରିବାରର ସମସ୍ତେ ଜନ୍ମଭୂମିର ପରାଧୀନତା ଶୃଙ୍ଖଳକୁ ଛିନ୍ନ କରିବାଲାଗି ବଦ୍ଧପରିକର, ସର୍ବସ୍ୱ ତ୍ୟାଗ କରିବାପାଇଁ କୃତସଂକଳ୍ପ ।"*

ସଭର୍‌କର୍‌ଙ୍କ ପିଲାଦିନର ନାମ ଥିଲା ତାତ୍ୟା । ସେ ମହାରାଷ୍ଟ୍ରର ନାସିକ ଜିଲ୍ଲା ଅନ୍ତର୍ଗତ ଭଗୁର ନାମକ ଗାଆଁରେ ୧୮୮୩ ମସିହା ମଇମାସ ୨୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାପାଙ୍କ ନାମ ଦାମୋଦର ପନ୍ଥ ସଭର୍‌କର୍। ମାଆଙ୍କ ନାମ ରାଧାବାଈ । ତାଙ୍କର ବଡ଼ଭାଇ ଥିଲେ ଗଣେଶ ଦାମୋଦର ଓ ସାନଭାଇ ନାରାୟଣ ରାଓ । ତାଙ୍କର ମାତୃଭୂମି ପ୍ରତି ଏପରି ମମତା ଓ ସାହସିକତା ଦେଖି ସାମ୍ବାଦିକ ଜଣକ ପ୍ରଶଂସା କରି ଏକ ଲେଖା ଲେଖିଥିଲେ । ଫଳରେ ସାମ୍ବାଦିକଙ୍କୁ ମଧ୍ୟ ତାଙ୍କ ସହିତ ଏକ ଜେଲ୍‌ରେ ରହିବାକୁ ପଡ଼ିଥିଲା । ଜାହାଜରେ ଆସୁଥିବାବେଳେ ତାଙ୍କ ମନରେ ଅନେକ ସ୍ମୃତି ଉଙ୍କି ମାରୁଥାଏ । ସେ ଉଠି ସ୍ନାନାଗାରକୁ ଗଲେ । ସେଠାରେ ଗୋଟିଏ ଦର୍ପଣ ଏପରି ଭାବରେ ଲାଗିଥାଏ ଯେ, ଭିତରେ ଯିଏ





ଯାହା କରିବ ବାହାରେ ଥିବା ପ୍ରହରୀ ସବୁ ଦେଖିପାରିବ । ସେ ଚତୁରତାର ସହ ଦର୍ପଣ ଉପରେ ନିଜର ଜାମା କାଢ଼ି ଟାଙ୍ଗିଦେଲେ, ଫଳରେ ବାହାରକୁ କିଛି ଦିଶିଲା ନାହିଁ । ସେହି ଅବସରରେ ସେ ସମୁଦ୍ରକୁ ଲମ୍ଫ ଦେଇ ପଳାଇଯିବାକୁ ଚେଷ୍ଟାକଲେ । ପ୍ରହରୀ ଲମ୍ଫ ଦେବା ଶବ୍ଦ ଶୁଣି ଶୀଘ୍ରଯାଇ ପ୍ରକୋଷ୍ଠରେ ଦେଖିଲା ଯେ କଏଦୀ ନାହିଁ । ସମୁଦ୍ରକୁ ଚାହିଁ ଦେଖିଲା ଦ୍ରୁତଗତିରେ କଏଦୀଜଣକ ପହଁରି ପଳେଇ ଯାଉଛି । ସେ ଗୁଳି ଚଳେଇଲା; ମାତ୍ର ଗୁଳି ଲକ୍ଷ୍ୟଭେଦ କରିପାରିଲା ନାହିଁ ।

ସଭର୍‌କର୍ କିଛି ଦୂର ଯାଇ ଗୋଟିଏ ଟାପୁରେ ଲାଗିଲେ । ଆତ୍ମଗୋପନ କରିବାପାଇଁ ସେଠାରେ କୌଣସି ସ୍ଥାନ ନଥିଲା । ଫଳରେ ଯନ୍ତ୍ରଚାଳିତ ନୌକାରେ ତାଙ୍କର ପିଛା କରୁଥିବା ସିପାହୀମାନେ ତାଙ୍କୁ ଧରି ଜାହାଜକୁ ଆଣିଲେ, ତାଙ୍କର ହାତ ଓ ପାଦରେ ବେଡ଼ି ପକାଇଦେଲେ । ବନ୍ଦୀ ଅବସ୍ଥାରେ ଜାହାଜରୁ ଫେରାର ହେବା ଅପରାଧର ବିଚାର ହୋଇ ତାଙ୍କୁ କଠୋର ଦଣ୍ଡ ଦିଆଗଲା ।

କଲେଜରେ ପଢୁଥିବାବେଳେ ସଭର୍‌କର୍ ଗୋଟିଏ ବିପ୍ଳବୀ ଦଳ ଗଢ଼ିଥିଲେ । ତା'ର ନାମ ଥିଲା 'ମିତ୍ରମେଳା' । ୧୯୦୧ ମସିହାରେ ଭିକ୍ଟୋରିଆଙ୍କ ମୃତ୍ୟୁରେ ଚାରିଆଡ଼େ ଶୋକ ପାଳିତ ହେଉଥିବାବେଳେ ମିତ୍ରମେଳାର ସଦସ୍ୟମାନେ ଶୋକ ପାଳିଲେ ନାହିଁ, କାରଣ ଶତ୍ରୁ ଦେଶର ରାଣୀଙ୍କପାଇଁ ସେମାନେ ଶୋକ କରିବେ ନାହିଁ । ତାଙ୍କର ଏହି କାର୍ଯ୍ୟ ସମ୍ବାଦପତ୍ରରେ ପ୍ରକାଶ ପାଇବା ପରେ ଲୋକମାନ୍ୟ ବାଳଗଙ୍ଗାଧର ତିଳକ ବିସ୍ମିତହୋଇ କହିଲେ – *"ମହାରାଷ୍ଟ୍ରରେ କ'ଣ ଶିବାଜୀ ପୁନର୍ଜନ୍ମ ଗ୍ରହଣ କଲେ ।"* କେତେବର୍ଷ ପରେ ଲୋକମାନ୍ୟଙ୍କ ପତ୍ରପାଇ ସଭର୍‌କର୍ ତାଙ୍କୁ ସାକ୍ଷାତ୍ କଲେ ଓ ଦେଶ ପାଇଁ କାମ କରିବାକୁ ଆଶୀର୍ବାଦ ଭିକ୍ଷାକଲେ । ସେତେବେଳେ ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲା ଓ ବିଦେଶୀ ଦ୍ରବ୍ୟ ବର୍ଜନ କାମ ଚାଲିଥାଏ । ବିଭିନ୍ନ ସ୍ଥାନରେ ବିଦେଶୀ ଦ୍ରବ୍ୟ ପୋଡ଼ା ଯାଉଥାଏ । ସେହି କାର୍ଯ୍ୟରେ ଅଗ୍ରଣୀ ଥିଲେ ସଭର୍‌କର୍ । ଲଣ୍ଡନରେ ଆଇନ ପଢ଼ିଲାବେଳେ ବିଦ୍ରୋହ କରି ରାଜଦ୍ରୋହ ଅପରାଧରେ ପ୍ରଥମେ ବନ୍ଦୀ ଓ ପରେ ଜାହାଜରୁ ଖସିଯିବା ଅପରାଧ ବିଚାରରେ ତାଙ୍କୁ କଳାପାଣି ପାରି କରାଇ ଆଣ୍ଡାମାନ ଦ୍ୱୀପର ଜେଲ୍‌କୁ ପଠାଗଲା ।

ସେଠାକାର ଜଳବାୟୁ ଅସ୍ୱାସ୍ଥ୍ୟକର ଥିଲା । ବନ୍ଦୀମାନେ ବଳଦ ପରି ଘଣାପେଲି ଜଣକେ ଦିନକୁ ପନ୍ଦର ସେର ତେଲ ବାହାର କରୁଥିଲେ । କମ୍ ହେଲେ ଛୁଟି ମିଳେ ନାହିଁ । ପିଠିରେ ଚାବୁକ୍‌ମାଡ଼ ବସେ । ଆଖିରୁ ଲୁହ ବୋହିଲେ ପୋଛିବାକୁ ମନା । ଦିନକୁ ଦି' ତାଟିଆ ପାଣି ମିଳୁଥିଲା ପିଇବାକୁ । ସ୍ନାନ ଥିଲା ସ୍ୱପ୍ନ । ବର୍ଷାହେଲେ ଘଣା ପେଲୁଥିବା ଲୋକ ସେଥିରେ ଓଦା ହୋଇଯାଆନ୍ତି । ସଭର୍‌କର୍ ଖୁବ୍ କଷ୍ଟରେ ସେହି ଜୀବନ ଅତିବାହିତ କଲେ । ହଠାତ୍ ଦିନେ ସେ ତାଙ୍କର ବଡ଼ଭାଇ ଗଣେଶଙ୍କୁ ମଧ୍ୟ ସେଠାରେ ଦେଖିଲେ । ଦୁଇଭାଇ ପରସ୍ପରକୁ ଦେଖି ଅଶ୍ରୁ ଢାଳିଲେ, ଆଲିଙ୍ଗନ କଲେ । ପ୍ରହରୀ ସେମାନଙ୍କୁ ଅଲଗା କରି ନେଇଗଲା । ଦଶବର୍ଷ ପରେ ଦୁଇଭାଇ ଏକାଠି ବନ୍ଦିଶାଳାରୁ ମୁକ୍ତ ହୋଇଥିଲେ ।

ମୁକ୍ତ ହେଲାପରେ ମଧ୍ୟ ସଭର୍‌କର୍‌ଙ୍କୁ ଇଂରେଜ ସରକାର ଖୁବ୍ ଡରୁଥିଲେ, ତେଣୁ ପୁଣି ତାଙ୍କୁ ବନ୍ଦୀ କରାଗଲା । ଅଲିପୁର ଜେଲ୍‌ରେ ତାଙ୍କୁ ନଜରବନ୍ଦୀରେ ରଖାଗଲା । ଏହାର ଷୋହଳ ବର୍ଷ ପରେ ସରକାର ତାଙ୍କ ଉପରୁ କଟକଣା ଉଠାଇଦେଲେ । ବୟସର ଆଧିକ୍ୟ ହେତୁ କ୍ଳାନ୍ତ ଓ ଅବସନ୍ନ ହୋଇପଡ଼ିଥିବେ ଭାବି ଇଂରେଜ ସରକାର ତାଙ୍କୁ ମୁକ୍ତ କରିଦେଲେ; ମାତ୍ର ଏହି ଧାରଣାକୁ ଭ୍ରମାତ୍ମକ ପ୍ରମାଣ କରି ସଭର୍‌କର୍ ଦେଶସାରା ଘୂରିବୁଲି ମୁକ୍ତିକାମୀ ଜନତାଙ୍କୁ ସଶସ୍ତ୍ର ସଂଗ୍ରାମ କରିବାପାଇଁ ପ୍ରେରଣା ଯୋଗାଇଲେ । ସେଥିପାଇଁ ତାଙ୍କୁ ପୁନର୍ବାର କାରାବରଣ କରିବାକୁ ହେଲା ।

ଦେଶପ୍ରେମର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଏହି ମହାପୁରୁଷଙ୍କଠାରୁ ମିଳେ । ଦେଶର ସ୍ୱାଧୀନତା ପାଇଁ ଲଢ଼ି ତାଙ୍କୁ ସାରାଜୀବନ ବିଦେଶୀ ସରକାରର ନିର୍ମମ ନିର୍ଯାତନା ଭୋଗ କରିବାକୁ ପଡ଼ିଥିଲା । ସାରା ଜୀବନ ଇଂରେଜ ସରକାରଙ୍କ ସହିତ ଲଢ଼ି ଶେଷରେ ୧୯୬୬ ମସିହା ଫେବୃଆରୀ ୩ ତାରିଖରେ ୮୩ ବର୍ଷ ବୟସରେ ସେ ମୃତ୍ୟୁବରଣ କରିଥିଲେ ।

## କଠିନ ଶବ୍ଦାର୍ଥ

ବଦ୍ଧପରିକର – ସଂକଳ୍ପବଦ୍ଧ, ପ୍ରତିଜ୍ଞାବଦ୍ଧ । କୃତସଂକଳ୍ପ – ଦୃଢ଼ପ୍ରତିଜ୍ଞ । ଓଜସ୍ୱିନୀ – ଶକ୍ତିଶାଳୀ । ନଜରବନ୍ଦୀ – ଯେଉଁ ବ୍ୟକ୍ତିକୁ ବନ୍ଦୀଶାଳା ବାହାରେ ରଖାଯାଇଥିଲେ ହେଁ ତା'ର ଗତିବିଧି ପ୍ରତି ସତର୍କ ଦୃଷ୍ଟି ରଖାଯାଇଥାଏ । ସାୟାହ୍ନ – ସନ୍ଧ୍ୟାକାଳ । କଳାପାଣି – ଅସ୍ୱାସ୍ଥ୍ୟକର ଆଣ୍ଡାମାନ ଦ୍ୱୀପକୁ ଘେରି ରହିଥିବା ଜଳରାଶି । ଅନୁଜ – ସାନଭାଇ । ମହାରାଣୀ ଭିକ୍ଟୋରିଆ – ବ୍ରିଟେନ୍‌ର ରାଣୀ ଓ ପରାଧୀନ ଭାରତର ମହାରାଣୀ । ଅବିସ୍ମରଣୀୟ – ଯାହା ଭୁଲିବାର ନାହିଁ । ପ୍ରକୋଷ୍ଠ – କୋଠରି । ନିଶ୍ଚଳ – ସ୍ଥିର, ଯାହା ଚଳଚଞ୍ଚଳ ନୁହେଁ । ସଶସ୍ତ୍ର – ଶସ୍ତ୍ର ସହିତ । କଏଦୀ – ବନ୍ଦୀ । ରାଜନୈତିକ – ରାଜନୀତି ସମ୍ବନ୍ଧୀୟ । ଛିନ୍ନ – ଛିଣ୍ଡାଇବା । ସର୍ବସ୍ୱ – ସବୁକିଛି । କ୍ରୋଧାନ୍ୱିତ – ରାଗିଯାଇ । କକ୍ଷ – ବଖରା । ସଂଲଗ୍ନ – ସଂଯୁକ୍ତ, ଯୋଗ । ବେଡ଼ି – ଶିକୁଳି । ସର୍ବତ୍ର – ଚାରିଆଡ଼େ । କ୍ଷୁବ୍ଧ ହୋଇ – ରାଗିଯାଇ । ବିୟୋଗ – ମୃତ୍ୟୁ । ପୁନର୍ଜନ୍ମ – ପୁଣିଥରେ ଜନ୍ମନେବା । ଅଗ୍ରଣୀ – ଆଗୁଆ । ତୃଷା – ଶୋଷ । ପ୍ରତ୍ୟାବର୍ତ୍ତନ – ଫେରିଯିବା । ନିବଦ୍ଧ – ଲାଖିରହିବା । ବାର୍ତ୍ତାଳାପ – ଖବର ଆଲୋଚନା । ଅତିବାହିତ – ବିତାଇବା । ଉନ୍ମତ୍ତ – ବିହ୍ୱଳ । ମୁକ୍ତିକାମୀ – ମୁକ୍ତି ଇଚ୍ଛା କରୁଥିବା ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ସଭରକର୍ ବନ୍ଦୀ ହେବାର କାରଣ କ'ଣ ?**

ଉ– ଭାରତରୁ ଇଂରେଜ ଶାସନ ଲୋପ କରିବାପାଇଁ ସଂଗ୍ରାମ କରି ସଭରକର୍ ରାଜନୈତିକ ଅପରାଧରେ ବନ୍ଦି ହୋଇଥିଲେ ।

**(ଖ) ଇଂରେଜ ସାମ୍ବାଦିକ ସଭରକର୍‌ଙ୍କୁ କ'ଣ କହିଥିଲେ ?**

ଉ– ଇଂରେଜ ସାମ୍ବାଦିକ ସଭରକର୍‌ଙ୍କୁ କହିଥିଲେ, *"ତୁମେ ତ ଏକା ନୁହଁ, ତୁମର ଆଉ ଦୁଇଜଣ ଭାଇଙ୍କୁ ମଧ ଜେଲ୍‌କୁ ନିଆଗଲାଣି ।"*

**(ଗ) ବିପ୍ଳବୀ ଯୁବକ ବୀରଦର୍ପରେ କି ଉତ୍ତର ଦେଇଥିଲେ ?**

ଉ– ବିପ୍ଳବୀ ଯୁବକ ବୀରଦର୍ପରେ ଉତ୍ତର ଦେଇଥିଲେ, *"ଏ ତ ଗୌରବର କଥା । ମୋର ସୌଭାଗ୍ୟ ଯେ ଆମ ପରିବାରର ସମସ୍ତେ ଜନ୍ମଭୂମିର ପରାଧୀନତା ଶୃଙ୍ଖଳକୁ ଛିନ୍ନ କରିବା ଲାଗି ବଦ୍ଧପରିକର, ସର୍ବସ୍ୱ ତ୍ୟାଗ କରିବାପାଇଁ କୃତସଂକଳ୍ପ ।"*

**(ଘ) ଜାହାଜରୁ ଡେଇଁ ପଡ଼ିଥିବା କଏଦୀ ଜଣକ କିଏ ଥିଲେ ?**

ଉ– ଜାହାଜରୁ ଡେଇଁ ପଡ଼ିଥିବା କଏଦୀ ଜଣକ ଥିଲେ ବିପ୍ଳବୀ ବିନାୟକ ଦାମୋଦର ସଭରକର୍ ।

**(ଙ) ସଭରକର୍ କେଉଁ ଦଳ ଗଠନ କରିଥିଲେ ?**

ଉ– ସଭରକର୍ 'ମିତ୍ରମେଳା' ନାମରେ ଏକ ଦଳ ଗଠନ କରିଥିଲେ ।

**(ଚ) ସମ୍ବାଦପତ୍ରରୁ ସଭରକର୍‌ଙ୍କ ଭାଷଣ ପଢ଼ି ତିଳକ କ'ଣ କହିଥିଲେ ?**

ଉ– ସମ୍ବାଦପତ୍ରରୁ ସଭରକର୍‌ଙ୍କ ଭାଷଣ ପଢ଼ି ତିଳକ କହିଥିଲେ, *"ମହାରାଷ୍ଟ୍ରରେ କ'ଣ ଶିବାଜୀ ପୁନର୍ଜନ୍ମ ଗ୍ରହଣ କଲେ !"*

**(ଛ) ସଭରକର୍ କାହିଁକି ଲଣ୍ଡନ ଯାଇଥିଲେ ?**

ଉ– ସଭରକର୍ ଆଇନ ଅଧ୍ୟୟନ ପାଇଁ ଲଣ୍ଡନ ଯାଇଥିଲେ ।



**(ଜ) ସଭର୍‌କର୍ ଆଣ୍ଡାମାନ ଜେଲ୍‌ରେ କେତେ ବର୍ଷ କଟାଇଥିଲେ ?**

ଉ– ସଭରକର୍ ଆଣ୍ଡାମାନ ଜେଲ୍‌ରେ ଦଶବର୍ଷ କାଳ କଟାଇଥିଲେ ।

୨ । ଉତ୍ତର ଲେଖ ।

**(କ) ବନ୍ଦୀ ନିଜ ଦେହରୁ ଜାମାଟି କାଢ଼ି ଦର୍ପଣ ଆଗରେ କାହିଁକି ଝୁଲେଇ ଦେଲେ ?**

ଉ– ସ୍ନାନାଗାରର ଦର୍ପଣଟି ଏପରି ଭାବେ ଲାଗିଥିଲା ଯେ ବନ୍ଦୀ ଭିତରେ ଯାହା କରିବ, ପ୍ରହରୀ ବାହାରେ ଥାଇ ସବୁ ଦେଖିପାରିବ । ବନ୍ଦୀ ଜଣକ ସମୁଦ୍ରକୁ ଡେଇଁପଡ଼ି ପଳାଇବାକୁ ଚାହୁଁଥିବାରୁ ତା'ର କାର୍ଯ୍ୟକଳାପ ପ୍ରହରୀ ନ ଦେଖିପାରିବା ପାଇଁ ସେ ଦେହରୁ ଜାମାଟି କାଢ଼ି ଦର୍ପଣ ଆଗରେ ଝୁଲାଇଦେଲେ ।

**(ଖ) କେଉଁ ଉଦ୍ଦେଶ୍ୟରେ ସଭରକର୍ ଜାହାଜରୁ ସମୁଦ୍ରକୁ ଡେଇଁ ପଡ଼ିଥିଲେ ?**

ଉ– ସଭରକର୍ ଭାବିଥିଲେ ଜାହାଜରୁ ଖସିପଳାଇବେ ଓ ପୁନର୍ବାର ଇଂରେଜ ସରକାରଙ୍କ ବିରୋଧରେ ବିଦ୍ରୋହ କରିବେ । ତେଣୁ ସେ ଜାହାଜରୁ ସମୁଦ୍ରକୁ ଡେଇଁଥିଲେ ।

**(ଗ) ମିତ୍ରମେଳାର ସଦସ୍ୟମାନେ ଭିକ୍ଟୋରିଆଙ୍କ ମୃତ୍ୟୁରେ ଶୋକଦିବସ ପାଳନ କଲେ ନାହିଁ କାହିଁକି ?**

ଉ– ସଭରକର୍ ମିତ୍ରମେଳାର ବୈଠକରେ କହିଥିଲେ ଯେ ଆମ ଶତ୍ରୁଦେଶର ରାଣୀ ଭିକ୍ଟୋରିଆଙ୍କ ମୃତ୍ୟୁରେ ଆମେ ଶୋକଦିବସ ପାଳନ କରିବା ଦରକାର ନାହିଁ । ତେଣୁ ମିତ୍ରମେଳାର ସଦସ୍ୟମାନେ ଭିକ୍ଟୋରିଆଙ୍କ ମୃତ୍ୟୁରେ ଶୋକଦିବସ ପାଳିଲେ ନାହିଁ ।

**(ଘ) ସଭରକର୍‌ଙ୍କୁ କେଉଁ କାରଣରୁ ଆଣ୍ଡାମାନ ପଠାଯାଇଥିଲା ?**

ଉ– ବନ୍ଦୀ ଅବସ୍ଥାରେ ଜାହାଜରୁ ଫେରାର ହେବା ଅପରାଧ ଯୋଗୁଁ ସଭରକର୍‌ଙ୍କର ପୁଣି ବିଚାର ହୋଇ ଅଧିକ କଠୋର ଦଣ୍ଡବିଧାନ କରାଗଲା । ସାରା ଜୀବନ ବନ୍ଦୀଭାବେ ଅତିବାହିତ କରିବା ପାଇଁ ତାଙ୍କୁ 'କଳାପାଣି' ପାରି କରାଇ ସୁଦୂର ଆଣ୍ଡାମାନ ଦ୍ୱୀପରେ ଥିବା ଜେଲ୍‌କୁ ପଠାଇ ଦିଆଗଲା ।

**(ଙ) ଆଣ୍ଡାମାନରେ କଏଦୀମାନଙ୍କୁ କିପରି ଦଣ୍ଡଭୋଗ କରିବାକୁ ପଡୁଥିଲା ?**

ଉ– ଆଣ୍ଡାମାନର ଜଳବାୟୁ ଖୁବ୍ ଅସ୍ୱାସ୍ଥ୍ୟକର ଥିଲା । ବନ୍ଦୀମାନେ ବଳଦପରି ଘଣା ପେଲୁଥିଲେ । କଠିନ ଶ୍ରମ କରିବାକୁ ରାଜି ନ ହେଲେ ଚାବୁକ୍ ପାହାର ଖାଉଥିଲେ । ଦିନକୁ ସେମାନେ ପନ୍ଦର ସେର ତେଲ ପେଡ଼ିବାକୁ ବାଧ୍ୟ । କମ୍ ହେଲେ ଛୁଟି ମିଳେ ନାହିଁ । ଟିକେ ଠିଆହେଲେ ଠେଙ୍ଗେଣି ମାଡ଼ ବସେ । ଲୁହ ବୋହିଲେ ବି ଆଖି ପୋଛିବାକୁ ମନା । ଦିନକୁ ଦୁଇଟାଟିଆ ପାଣିରୁ ଅଧିକ କେହି ପିଇପାରିବେ ନାହିଁ । ସ୍ନାନ କରିବା ସେମାନଙ୍କ ପାଇଁ ସ୍ୱପ୍ନର କଥା । ଏହିପରି ଅକଥନୀୟ ଅତ୍ୟାଚାର ଭିତରେ କଏଦୀମାନଙ୍କୁ ଦଣ୍ଡଭୋଗ କରିବାକୁ ପଡୁଥିଲା ।

**(ଚ) ଜେଲ୍ ଯିବା ଗୌରବର କଥା ବୋଲି ସଭରକର୍ କାହିଁକି କହିଥିଲେ ?**

ଉ– ସଭରକର୍ ଥିଲେ ଜଣେ ନିଃସ୍ୱାର୍ଥପର ଦେଶପ୍ରେମୀ । ତେଣୁ ଦେଶକୁ ପରାଧୀନତାରୁ ମୁକ୍ତ କରିବାପାଇଁ ଜେଲ୍‌କୁ ଯିବା ଗୌରବର କଥା ବୋଲି ସଭରକର୍ କହିଥିଲେ ।

**(ଛ) ଶେଷ ଜୀବନରେ ମଧ୍ୟ ସଭରକର୍‌ଙ୍କୁ ଆଉଥରେ କାହିଁକି କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା ?**

ଉ– ନଜରବନ୍ଦୀରୁ ମୁକ୍ତ ହୋଇ ସଭରକର୍ ଦେଶସାରା ଭ୍ରମଣ କଲେ ଓ ମୁକ୍ତିକାମୀ ଜନତାଙ୍କୁ ଇଂରେଜ ସରକାର ବିରୋଧରେ ସଶସ୍ତ୍ର ସଂଗ୍ରାମ କରିବାକୁ ଆହ୍ୱାନ ଦେଲେ । ତେଣୁ ତାଙ୍କୁ ଜୀବନର ଶେଷ ପର୍ଯ୍ୟାୟରେ ମଧ ଆଉଥରେ କାରାବରଣ କରିବାକୁ ପଡ଼ିଥିଲା ।

(ଜ) ସ୍ୱାଧୀନତା ପରେ ଭାରତ ଦୁଇଭାଗ ହେବାରୁ କେଉଁ ନୂତନ ଦେଶଟି ସୃଷ୍ଟି ହେଲା ?

ଉ– ସ୍ୱାଧୀନତା ପରେ ଭାରତ ଦୁଇ ଭାଗ ହେବାରୁ ପାକିସ୍ତାନ ନାମକ ନୂତନ ଦେଶଟି ସୃଷ୍ଟି ହେଲା ।

୩ । **ନିମ୍ନଲିଖିତ ଉକ୍ତିଗୁଡ଼ିକ କିଏ କେତେବେଳେ କହିଛି ଲେଖ ।**

**(କ) ''ବିଲାତର ରାଣୀ ଭିକ୍ଟୋରିଆ ଆମ ଶତ୍ରୁଦେଶର ରାଣୀ । ଆମେ କାହିଁକି ତାଙ୍କ ବିୟୋଗରେ ଶୋକ ପାଳିବା ?''**

ଉ– ଯେତେବେଳେ ବିଲାତର ରାଣୀଙ୍କ ମୃତ୍ୟୁରେ ଭାରତରେ ସର୍ବତ୍ର ଶୋକ ପାଳିତ ହେଲା, ସେହି ସମୟରେ ସଭର୍କର୍ ମିତ୍ରମେଳାର ସଦସ୍ୟମାନଙ୍କର ଏକ ବୈଠକ ଡାକି ଏହି କଥା କହିଥିଲେ ।

**(ଖ) ''ଆରେ ତାତ୍ୟା, ତୁ ଏଠାକୁ ଆସିଲୁ କିପରି ?''**

ଉ– ଦିନେ ଘଣା ପେଲିସାରି ସଭର୍କର୍ ନିଜର କୋଠରିକୁ ଫେରୁଥିଲେ । ହଠାତ୍ ସେଠାରେ କଏଦୀ ଥିବା ତାଙ୍କର ବଡ଼ଭାଇ ଗଣେଶଙ୍କ ସହିତ ଦେଖାହେଲା । ସେ ସଭର୍କର୍‌ଙ୍କୁ ଆଲିଙ୍ଗନ କରି ଏହି କଥା କହିଥିଲେ ।

୪ । **ସରଳ ଭାଷାରେ ବୁଝାଇ ଲେଖ ।**

**(କ) ମହାରାଷ୍ଟ୍ରରେ କ'ଣ ଶିବାଜୀ ପୁନର୍ଜନ୍ମ ଗ୍ରହଣ କଲେ !**

ଉ– *ମହାରାଷ୍ଟ୍ରରେ .................. ଗ୍ରହଣ କଲେ !*

ଶଂସିତ ଗଦ୍ୟାଂଶଟି ରାମପ୍ରସାଦ ମହାନ୍ତିଙ୍କ ଲିଖିତ *'ଦେଶପ୍ରେମୀ କଏଦୀ'* ବିଷୟରୁ ଉଦ୍ଧୃତ । ଏଠାରେ ଲେଖକ ବାଳଗଙ୍ଗାଧର ତିଳକ ସଭର୍କର୍‌ଙ୍କର ସାହସିକତାରେ ମୁଗ୍ଧ ହୋଇ ଯେଉଁ ମନ୍ତବ୍ୟ ଦେଇଥିଲେ, ସେ ସମ୍ପର୍କରେ ଆଲୋକପାତ କରିଛନ୍ତି ।

ଅଠର ବର୍ଷ ବୟସରେ ସଭର୍କର୍ ମିତ୍ରମେଳା ନାମକ ଏକ ବିପ୍ଳବୀ ଦଳ ଗଢ଼ିଥିଲେ । ୧୯୦୧ ମସିହାରେ ବିଲାତର ରାଣୀ ଭିକ୍ଟୋରିଆଙ୍କର ମୃତ୍ୟୁ ହେଲା । ଭାରତର ସବୁଆଡ଼େ ଶୋକ ପାଳିତ ହେଲା । ମାତ୍ର ମିତ୍ରମେଳାର ସଦସ୍ୟମାନେ ଶୋକଦିବସ ପାଳି ନଥିଲେ । ସଭର୍କର୍ ଏକ ବୈଠକ ଡାକି ଶତ୍ରୁଦେଶର ରାଣୀ ଭିକ୍ଟୋରିଆଙ୍କର ମୃତ୍ୟୁରେ ଶୋକ ନ ପାଳିବାକୁ ନିଜର ଓଜସ୍ୱିନୀ ଭାଷଣରେ କହିଥିଲେ । ତାଙ୍କର ଏହି ଭାଷଣ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଲା । ସରକାର କ୍ଷୁବ୍ଧ ହୋଇ ତାଙ୍କୁ କଲେଜରୁ ବହିଷ୍କୃତ କଲେ । ଏହି ସମ୍ବାଦ ପଢ଼ି ଲୋକମାନ୍ୟ ତିଳକଙ୍କ ମୁଖରୁ ସ୍ୱତଃ ବାହାରି ପଡ଼ିଲା, *''ମହାରାଷ୍ଟ୍ରରେ କ'ଣ ଶିବାଜୀ ପୁନର୍ଜନ୍ମ ଗ୍ରହଣ କଲେ ।''* ଶିବାଜୀଙ୍କ ପରି ଅଦ୍ୱିତୀୟ ବୀର ଓ ସାହସୀ ଆଉ କେହି ନଥିଲେ । ଠିକ୍ ସେପରି ସାହସିକତାର ପରିଚୟ ଦେଇଥିବାରୁ ତିଳକ ସଭର୍କର୍‌ଙ୍କୁ ଲକ୍ଷ୍ୟ କରି ଏପରି କହିଥିଲେ ।

ବାସ୍ତବରେ ତିଳକଙ୍କର ଏହି ଉକ୍ତି ସଭର୍କର୍‌ଙ୍କ ପାଇଁ ଯଥାର୍ଥ ଅଟେ ।

**(ଖ) ମହାବଳବାନ୍ ସିଂହକୁ ପିଞ୍ଜରାମୁକ୍ତ କରି କିଏ ବା ନିଶ୍ଚିନ୍ତ ହୋଇପାରିବ ।**

ଉ– *ମହାବଳବାନ୍ .................................. ହୋଇପାରିବ ।*

ଉଦ୍ଧୃତାଂଶଟି ରାମପ୍ରସାଦ ମହାନ୍ତିଙ୍କ ଲିଖିତ *'ଦେଶପ୍ରେମୀ କଏଦୀ'* ବିଷୟରୁ ଉଦ୍ଧୃତ । ଏଠାରେ ଲେଖକ ସଭରକର୍‌ଙ୍କ ସିଂହବିକ୍ରମ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି ।

ସଭରକର୍. ଆଣ୍ଡାମାନ ଦ୍ୱୀପରେ 'କଳାପାଣି' ଦଣ୍ଡାଦେଶ ପାଇ ଦୁଃଖଦ ଜୀବନ କାଟୁଥିବାବେଳେ ହଠାତ୍ ଦିନେ ବଡ଼ଭାଇ ଗଣେଶଙ୍କୁ ଦେଖିଲେ । ଦୁଇଭାଇ ବହୁ ସମୟ କାନ୍ଦିଲେ । ପରସ୍ପରକୁ ଆଲିଙ୍ଗନ କଲେ, କଥାବାର୍ତ୍ତା ହେଲେ; ମାତ୍ର ପ୍ରହରୀ ସେମାନଙ୍କୁ ଅଧିକ କଥାବାର୍ତ୍ତା ପାଇଁ ସୁଯୋଗ ଦେଲା ନାହିଁ । ଦୁଇଭାଇ ସେଠାରେ ଦଶବର୍ଷ କାଳ ଦଣ୍ଡ ଭୋଗକରି ଏକସଙ୍ଗେ ମୁକ୍ତ ହୋଇ ଫେରିଆସିଲେ ନିଜ ଦେଶକୁ । ସଭର୍କର୍‌ଙ୍କ ଉପରେ ଇଂରେଜ ସରକାର ଦୃଢ଼ ନଜର ରଖିଥାଆନ୍ତି । ତାଙ୍କର ସରକାର ବିରୋଧୀ କାର୍ଯ୍ୟକଳାପ ଶାସକଙ୍କ ମନରେ ଆତଙ୍କ ସୃଷ୍ଟି କରିଥାଏ । ଭାରତକୁ ପରାଧୀନତାରୁ ମୁକ୍ତ କରିବାପାଇଁ ସେ ଆନ୍ଦୋଳନାତ୍ମକ କାର୍ଯ୍ୟ କରୁଥିଲେ । ତେଣୁ ଇଂରେଜ ସରକାର ତାଙ୍କୁ କାରାମୁକ୍ତ କରି ନିଶ୍ଚିନ୍ତ ନଥିଲେ ।



ସର୍ବଦା ତାଙ୍କର ଚାଲିଚଳନକୁ ଲକ୍ଷ୍ୟ କରୁଥିଲେ । ତାଙ୍କୁ ପୁନର୍ବାର ବନ୍ଦି କରାଯାଇ ଅଲିପୁର ଜେଲ୍‌ରେ ନଜରବନ୍ଦୀଭାବେ ରଖାଗଲା ।

୫ । **ନିମ୍ନରେ ଦିଆଯାଇଥିବା ପ୍ରତ୍ୟେକ ଶବ୍ଦକୁ ବ୍ୟବହାର କରି ବାକ୍ୟ ଗଠନ କର ।**

କୃତସଂକଳ୍ପ, ଆହ୍ୱାନ, ପ୍ରତ୍ୟାବର୍ତ୍ତନ, ଅବିସ୍ମରଣୀୟ, ଉନ୍ମତ୍ତ, ଓଜସ୍ୱିନୀ, ଆଭାସ

ଉ – **କୃତସଂକଳ୍ପ** – କାର୍ଯ୍ୟଟିକୁ ସଫଳ କରିବାପାଇଁ ରାମ କୃତସଂକଳ୍ପ ହୋଇଛି ।

**ଆହ୍ୱାନ** – ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଦେଶବାସୀ ଏକଜୁଟ ହୋଇଥିଲେ ।

**ପ୍ରତ୍ୟାବର୍ତ୍ତନ** – ସନ୍ଧ୍ୟାରେ ପକ୍ଷୀମାନେ ବସାକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

**ଅବିସ୍ମରଣୀୟ** – ଗୋପବନ୍ଧୁ ଆମ୍ଭମାନଙ୍କର ଅବିସ୍ମରଣୀୟ ହୋଇ ରହିଛନ୍ତି ।

**ଉନ୍ମତ୍ତ** – ଲୋକଟି ଉନ୍ମତ୍ତ ପରି ଘୂରି ବୁଲୁଛି ।

**ଓଜସ୍ୱିନୀ** – ଗାନ୍ଧିଜୀଙ୍କ ଓଜସ୍ୱିନୀ ଭାଷଣ ଲୋକଙ୍କୁ ମୁଗ୍ଧ କଲା ।

**ଆଭାସ** – ତାଙ୍କ ମୁହଁରୁ ଚିନ୍ତାର ଆଭାସ ଜଣାପଡୁଛି ।

୬ । **ନିମ୍ନରେ କେତୋଟି ଶବ୍ଦ ଦିଆଯାଇଛି । ସେଗୁଡ଼ିକର ଡାହାଣ ପାଖରେ 'ରତ' ଶବ୍ଦ ଯୋଗକରି ନୂଆ ଶବ୍ଦ ଲେଖ ଓ ସେଇ ନୂଆ ଶବ୍ଦକୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ଗଠନ କର ।**

ସଂଗ୍ରାମ, କାର୍ଯ୍ୟ, ଅଧ୍ୟୟନ, ସାଧନା

ଉ – **ସଂଗ୍ରାମରତ** – ନିଜର ଦାବି ହାସଲ ପାଇଁ ହରି ସର୍ବଦା ସଂଗ୍ରାମରତ ରହିଛି ।

**କାର୍ଯ୍ୟରତ** – କାର୍ଯ୍ୟରତ ମନୁଷ୍ୟ ହାରିଯାଏ ନାହିଁ ।

**ଅଧ୍ୟୟନରତ** – ଅଧ୍ୟୟନରତ ଛାତ୍ର ସଫଳତା ପାଏ ।

**ସାଧନାରତ** – ସାଧନାରତ ଶିଳ୍ପୀ ନିଜର କଳାନିପୁଣତା ପ୍ରଦର୍ଶନ କଲେ ।

୭ । **ନିମ୍ନ ଗଦ୍ୟାଂଶରେ ଥିବା ଭିନ୍ନ ଭିନ୍ନ ମାତ୍ରା ଓ ଫଳାଗୁଡ଼ିକୁ ଚିହ୍ନଟ କର :**

୧୯୦୧ ମସିହାରେ ଯେତେବେଳେ ବିଲାତର ରାଣୀ ଭିକ୍ଟୋରିଆଙ୍କ ମୃତ୍ୟୁହେଲା ଭାରତରେ ସର୍ବତ୍ର ଶୋକ ପାଳିତ ହେଲା କିନ୍ତୁ, ମିତ୍ରମେଳାର ସଦସ୍ୟମାନେ ଶୋକଦିବସ ପାଳିଲେ ନାହିଁ । ସଭର୍କର୍ ଗୋଟିଏ ବୈଠକ ଡାକି ସେଥିରେ ଓଜସ୍ୱିନୀ ଭାଷଣ ଦେଲେ । ସେ କହିଲେ ବିଲାତର ରାଣୀ ଭିକ୍ଟୋରିଆ ଆମ ଶତ୍ରୁଦେଶର ରାଣୀ ଆମେ କାହିଁକି ତାଙ୍କ ବିୟୋଗରେ ଶୋକ ପାଳିବା ।

ଉ– ଉକ୍ତ ଗଦ୍ୟାଂଶରେ ଥିବା

| ମାତ୍ରା | ଫଳା |
|---|---|
| 'ଏ' କାର, 'ଇ' କାର, 'ଈ' କାର, 'ଆ' କାର,<br>'ଉ' କାର, 'ଓ' କାର, 'ଐ' କାର | 'ୟ' ଫଳା, 'ର' ଫଳା, 'ବ' ଫଳା,<br>'ର' ଫଳା, 'ଟ' ଫଳା । |

୮ । **'ଲୋକମାନେ ଶୋକ ପାଳନ କଲେ ।' ଏହି ବାକ୍ୟକୁ ଭବିଷ୍ୟତ କାଳରେ ପରିବର୍ତ୍ତନ କଲେ ହେବ– 'ଲୋକମାନେ ଶୋକ ପାଳନ କରିବେ ।' ସେହିପରି ନିମ୍ନଲିଖିତ ବାକ୍ୟଗୁଡ଼ିକୁ ଭବିଷ୍ୟତ କାଳରେ ପରିବର୍ତ୍ତନ କରି ଲେଖ ।**

(କ) ସିପାହୀମାନେ ତାଙ୍କ ପାଖରେ ପହଞ୍ଚିଗଲେ ।

(ଖ) ସରକାର ତାଙ୍କ ଉପରୁ କଟକଣା ଉଠାଇନେଲେ ।

(ଗ) ରାଜଦ୍ରୋହ ଅପରାଧରେ ତାଙ୍କୁ ବନ୍ଦୀ କରାଗଲା ।

(ଘ) ସେ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ ।

ଉ– (କ) ସିପାହୀମାନେ ତାଙ୍କ ପାଖରେ ପହଞ୍ଚିଯିବେ ।

(ଖ) ସରକାର ତାଙ୍କ ଉପରୁ କଟକଣା ଉଠାଇନେବେ ।

(ଗ) ରାଜଦ୍ରୋହ ଅପରାଧରେ ତାଙ୍କୁ ବନ୍ଦୀ କରାଯିବ ।

(ଘ) ସେ ଭାରତକୁ ପ୍ରତ୍ୟାବର୍ତ୍ତନ କରିବେ ।

**୯ । 'ବଳ' ଶବ୍ଦରେ 'ବାନ୍' ଲଗାଇଲେ 'ବଳବାନ୍' ହେବ । ସେହିପରି ନିମ୍ନଲିଖିତ ଶବ୍ଦରେ 'ବାନ୍' ଲଗାଇ ନୂଆ ଶବ୍ଦ ଲେଖ ।**

ଧନ, ମୂଲ୍ୟ, ଜ୍ଞାନ, ଶ୍ରଦ୍ଧା, ନ୍ୟାୟ

ଉ– ଧନ – ଧନବାନ୍ ଶ୍ରଦ୍ଧା – ଶ୍ରଦ୍ଧାବାନ୍ ମୂଲ୍ୟ – ମୂଲ୍ୟବାନ୍ ନ୍ୟାୟ – ନ୍ୟାୟବାନ୍

ଜ୍ଞାନ – ଜ୍ଞାନବାନ୍

**୧୦ । "କଳାପାଣି ନାଆଁ ଶୁଣିଲେ ଅନେକ ବନ୍ଦୀଙ୍କ............ସେ ସ୍ନାନ କରିବ ।" ପାଠର ଏହି ଅନୁଚ୍ଛେଦଟି ପଢ଼ । ଏପରି ପ୍ରଶ୍ନଗୁଡ଼ିଏ ତିଆରି କର, ଯେଉଁଗୁଡ଼ିକର ଉତ୍ତର ସେହି ଅନୁଚ୍ଛେଦରୁ ହିଁ ମିଳିବ ।**

ଉ– (୧) କଳାପାଣି ନାଁ ଶୁଣି ବନ୍ଦୀଙ୍କ ହୃତ୍‌ସ୍ପନ୍ଦନ ବଢ଼ି ଯାଉଥିଲା କାହିଁକି ?

(୨) ବନ୍ଦୀମାନେ ସେଠାରେ କି କାର୍ଯ୍ୟ କରୁଥିଲେ ?

(୩) କଏଦୀଙ୍କ ପିଠିରେ ଚାବୁକ ପ୍ରହାର ବସୁଥିଲା କାହିଁକି ?

(୪) ପ୍ରତିଦିନ ଜଣେ କଏଦୀଙ୍କୁ କେତେ ତେଲ ପେଡ଼ିବାକୁ ପଡୁଥିଲା ?

(୫) ଦୈନିକ କେତେ ଜଳ ପିଇବାକୁ ମିଳୁଥିଲା ?

(୬) ଠେଙ୍ଗେଣି ମାଡ଼ କାହିଁକି ବସୁଥିଲା ?

(୭) କଏଦୀମାନେ କିପରି ସ୍ନାନ କରୁଥିଲେ ?

**୧୧ । ଯେପରି – ଉଚ୍ଚ ଉଚ୍ଚତର ଉଚ୍ଚତମ**

**ସେହିପରି ତଳ ଶବ୍ଦଗୁଡ଼ିକ କ'ଣ ହେବ ଲେଖ ।**

କ୍ଷୁଦ୍ର, ପ୍ରିୟ, ଲଘୁ

| | | |
|---|---|---|
| ଉ– କ୍ଷୁଦ୍ର | କ୍ଷୁଦ୍ରତର | କ୍ଷୁଦ୍ରତମ |
| ପ୍ରିୟ | ପ୍ରିୟତର | ପ୍ରିୟତମ |
| ଲଘୁ | ଲଘୁତର | ଲଘୁତମ |

**୧୨ । 'ମହାରାଣୀ' ଶବ୍ଦକୁ ପୁଂଲିଙ୍ଗରେ ଲେଖିଲେ ହେବ 'ମହାରାଜା' । ସେହିପରି ନିମ୍ନଲିଖିତ ଶବ୍ଦଗୁଡ଼ିକର ପୁଂଲିଙ୍ଗ ରୂପ କ'ଣ ହେବ ଲେଖ ।**

ସାହେବାଣୀ, ମୂଳିଆଣୀ, ସମୁଦୁଣୀ, ବାଘୁଣୀ, ଭିକାରୁଣୀ

ଉ– ସାହେବାଣୀ – ସାହେବ ବାଘୁଣୀ – ବାଘ

ମୂଳିଆଣୀ – ମୂଳିଆ ଭିକାରୁଣୀ – ଭିକାରି

ସମୁଦୁଣୀ – ସମୁଦି



**୧୩ । ତଳଲିଖିତ ଶବ୍ଦଗୁଡ଼ିକୁ ବ୍ୟବହାର କରି ସଭରକରଙ୍କ ସମ୍ପର୍କରେ ଅନୁଚ୍ଛେଦଟିଏ ଲେଖ ।**

ଓଜସ୍ୱିନୀ, ବହିଷ୍କାର, କ୍ଷୁବ୍ଧ, ସ୍ୱଦେଶ, ଆହ୍ୱାନ

**ଉ–** ସଭରକର୍ ଗୋଟିଏ ବୈଠକ ଡାକି ସେଥିରେ **ଓଜସ୍ୱିନୀ** ଭାଷଣ ଦେଲେ । ତାଙ୍କର ଭାଷଣ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଲା । ସରକାର **କ୍ଷୁବ୍ଧ** ହୋଇ ଏହି ଯୁବକଙ୍କୁ କଲେଜରୁ **ବହିଷ୍କାର** କରିଦେଲେ । ଦିନେ ସଭରକର୍ ଲୋକମାନ୍ୟ ତିଳକଙ୍କଠାରୁ ଏକ ବାର୍ତ୍ତା ପାଇ ତାଙ୍କୁ ସାକ୍ଷାତ୍ କଲେ । ତାଙ୍କ ପାଦ ସ୍ପର୍ଶକରି **ସ୍ୱଦେଶ** ପାଇଁ କାମ କରିବାକୁ ସେ ତାଙ୍କର ଆଶୀର୍ବାଦ ଭିକ୍ଷାକଲେ । ଦେଶରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ । ବିଦେଶୀ ଦ୍ରବ୍ୟ ବ୍ୟବହାର ନ କରିବାକୁ ଗାନ୍ଧିଜୀ **ଆହ୍ୱାନ** ଦେଉଥା'ନ୍ତି । ସଭରକର୍ ସେହି ଆନ୍ଦୋଳନର ଅନ୍ୟତମ ଅଗ୍ରଣୀ ସାଜିଥିଲେ ।

## ତୁମ ପାଇଁ କାମ

୧ । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବା କିଛି ବିପ୍ଳବୀଙ୍କର ଏକ ତାଲିକା ପ୍ରସ୍ତୁତ କର ।

୨ । ବାଳଗଙ୍ଗାଧର ତିଳକଙ୍କର ଜୀବନୀ ସଂଗ୍ରହ କରି ପଢ଼ ।

୩ । ସଭରକରଙ୍କ ଜୀବନୀ ସଂଗ୍ରହ କରି ପଢ଼ ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

**୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।**

**(କ) 'ସାୟାହ୍ନ'ର ଅର୍ଥ – ରାତ୍ରିକାଳ / ସନ୍ଧ୍ୟାକାଳ / ସକାଳ**

ଉ– ସନ୍ଧ୍ୟାକାଳ

**(ଖ) ବନାନ ଠିକ୍ କରି ଲେଖ ।**

ଉ– (୧) ଓଜସ୍ୱିନୀ – ଓଜସ୍ୱିନୀ

(୨) ବହିସ୍କୃତ – ବହିଷ୍କୃତ

**(ଗ) ଘନ ସବୁଜ ବିସ୍ତୃତ ଅରଣ୍ୟରେ ଏହା ଆଚ୍ଛନ୍ନ । ଏହି ବାକ୍ୟରେ 'ବନାନୀ' ବ୍ୟବହାର କରି ବାକ୍ୟଟି ଆଉଥରେ ଲେଖ ।**

ଉ– ଘନ ସବୁଜ ବନାନୀରେ ଏହା ଆଚ୍ଛନ୍ନ ।

**(ଘ) ବିପରୀତ ଶବ୍ଦ ଲେଖ ।**

ଉ– (୧) ଜନାକୀର୍ଣ୍ଣ – ଜନବିରଳ (୨) ମିତ୍ର – ଶତ୍ରୁ

(୩) ବୀର – ଭୀରୁ (୪) ନିଶ୍ଚଳ – ଚଞ୍ଚଳ

(୫) ଆତ୍ମଗୋପନ – ଆତ୍ମପ୍ରକାଶ (୬) ଅନୁଜ – ଅଗ୍ରଜ

(୭) ତ୍ୟାଗ – ଭୋଗ (୮) ପିଞ୍ଜରାବଦ୍ଧ – ପିଞ୍ଜରାମୁକ୍ତ

**(ଙ) ଲମ୍ଫ ପ୍ରଦାନର ଅର୍ଥ – ଡେଇଁବା / କୁଦା ମାରିବା / ଦୌଡ଼ିବା**

ଉ– କୁଦା ମାରିବା

୨ । ସଂକ୍ଷେପରେ ଉତ୍ତର ଦିଅ ।

**(କ) ଦେଶ ସ୍ୱାଧୀନ ହେଲା ପରେ ମଧ୍ୟ ସଭର୍‌କର୍ କାହିଁକି ଶାନ୍ତି ପାଇପାରିଲେ ନାହିଁ ?**

ଉ – ଜୀବନସାରା ଜେଲ୍‌ଦଣ୍ଡ ସହି, ବହୁ ସଂଗ୍ରାମ କରି ସଭର୍‌କର୍ ମାତୃଭୂମିକୁ ସ୍ୱାଧୀନ କରିବାକୁ ଚାହିଁଥିଲେ । ଭାରତ ସ୍ୱାଧୀନ ହେଲା ସତ, କିନ୍ତୁ ପାକିସ୍ତାନ ଓ ଭାରତ ଏହିପରି ଦୁଇ ଭାଗରେ ବିଭକ୍ତ ହେଲା । ଦେଶର ବିଭାଜନ ହେତୁ ସଭର୍‌କର୍ ଶାନ୍ତି ପାଇପାରିଲେ ନାହିଁ ।

**(ଖ) ସଭର୍‌କର୍ ବନ୍ଦୀ ଅବସ୍ଥାରେ ବିଲାତରୁ ଭାରତ ଆସୁଥିବା ଜାହାଜଟିର ନାମ କ'ଣ ଥିଲା ?**

ଉ – ସଭର୍‌କର୍ ବନ୍ଦୀ ଅବସ୍ଥାରେ ବିଲାତରୁ ଭାରତ ଆସୁଥିବା ଜାହାଜଟିର ନାମ 'ମେରିଆ' ଥିଲା ।

**(ଗ) ସଭର୍‌କର୍ ବିଲାତରେ ବନ୍ଦୀ ହୋଇଥିଲେ କାହିଁକି ?**

ଉ – ଆଇନ ଅଧ୍ୟୟନ ନିମନ୍ତେ ସଭର୍‌କର୍ ବିଲାତ ଯାଇ ସେଠାରେ ମଧ୍ୟ ଭାରତରୁ ଇଂରେଜ ଶାସନ ଲୋପ କରିବା ନିମନ୍ତେ ଉଦ୍ୟମ କରିଥିଲେ । ତେଣୁ ରାଜନୈତିକ ଅପରାଧରେ ସେ ସେଠାରେ ବନ୍ଦୀ ହୋଇଥିଲେ ।

**(ଘ) ଇଂରେଜ ସାମ୍ବାଦିକ ଜଣକ କାହିଁକି ଜେଲ୍‌ଦଣ୍ଡ ଭୋଗିଲେ ?**

ଉ – ସଭର୍‌କର୍‌ଙ୍କର ନିଜର ଜନ୍ମଭୂମି ପ୍ରତି ମମତା ଓ ସର୍ବସ୍ୱ ତ୍ୟାଗ କରିବାର ସଙ୍କଳ୍ପ ଦେଖି ଇଂରେଜ ସାମ୍ବାଦିକ ବିସ୍ମୟାନ୍ୱିତ ହେଲେ ଏବଂ ତାଙ୍କର ଦେଶପ୍ରେମର ବିବରଣୀ ସେ ପ୍ରଶଂସାର ସହିତ ସମ୍ବାଦପତ୍ରରେ ପ୍ରକାଶ କରିଥିଲେ । ତେଣୁ ସରକାର ରାଗିଯାଇ ତାଙ୍କୁ ବନ୍ଦୀ କରିଥିଲେ ଓ ସଭର୍‌କର୍ ରହୁଥିବା ଜେଲ୍‌ରେ ଜେଲ୍‌ଦଣ୍ଡ ଭୋଗିବାକୁ ପଠାଇ ଦେଇଥିଲେ ।

**(ଙ) ସ୍ୱାଧୀନତା ଆନ୍ଦୋଳନରେ କିପରି ସଭର୍‌କର୍ ଅଂଶଗ୍ରହଣ କରିଥିଲେ ?**

ଉ – ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କୁ ସାକ୍ଷାତ୍ କରି ସଭର୍‌କର୍ ସ୍ୱଦେଶ ପାଇଁ କାମ କରିବା ଲାଗି ତାଙ୍କର ଆଶୀର୍ବାଦ ଭିକ୍ଷା କରିଥିଲେ । ସେତେବେଳକୁ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୋଇଥିଲା । ବିଦେଶୀ ଦ୍ରବ୍ୟ ବର୍ଜନ କରିବା, ବିଲାତି ବସ୍ତ୍ରରେ ନିଆଁ ଲଗାଇବା ଇତ୍ୟାଦି କାର୍ଯ୍ୟ ଦେଶସାରା ଚାଲିଥିଲା । ଯୁବକ ସଭର୍‌କର୍ ଏହି ଆନ୍ଦୋଳନର ଅନ୍ୟତମ ଅଗ୍ରଣୀ ଥିଲେ ।

**(ଚ) ସଭର୍‌କର୍‌ଙ୍କ ପୂରାନାମ କ'ଣ ?**

ଉ – ସଭର୍‌କର୍‌ଙ୍କ ପୂରାନାମ ବିନାୟକ ଦାମୋଦର ସଭର୍‌କର୍ ।

**(ଛ) ଲୋକମାନ୍ୟ ତିଲକଜୀ ଯୁବକ ସଭର୍‌କର୍‌ଙ୍କୁ କାହିଁକି ଡକାଇଥିଲେ ?**

ଉ – ସ୍ୱାଧୀନତା ଆନ୍ଦୋଳନର ଗୋଟିଏ ପର୍ଯ୍ୟାୟରେ ମହାତ୍ମାଗାନ୍ଧି ବିଦେଶୀ ଦ୍ରବ୍ୟ ବର୍ଜନ କରି ସ୍ୱଦେଶୀ ଜିନିଷ ବ୍ୟବହାର କରିବା ପାଇଁ ଡାକରା ଦେଇଥା'ନ୍ତି । ବିଦେଶୀ ଲୁଗା ଓ ଅନ୍ୟାନ୍ୟ ଜିନିଷମାନ ଲୋକେ ପୋଡ଼ି ଦେଉଥାନ୍ତି । ଏହି ପ୍ରବଳ ଜନ ଆନ୍ଦୋଳନକୁ ଠିକ୍ ଭାବରେ ପରିଚାଳିତ କରିବା ପାଇଁ ସଭର୍‌କର୍‌ଙ୍କ ପରି ଦେଶପ୍ରେମୀ ଯୁବକଙ୍କ ଆବଶ୍ୟକତା ଅନୁଭବ କରି ସେତେବେଳର ଆମ ଭାରତର ଅନ୍ୟତମ ବରେଣ୍ୟ ନେତା ଲୋକମାନ୍ୟ ବାଲଗଙ୍ଗାଧର ତିଳକ ସଭର୍‌କର୍‌ଙ୍କୁ ଡକାଇଥିଲେ ।

୩ । ସରଳାର୍ଥ ଲେଖ ।

**(କ) ଦେଶ ସ୍ୱାଧୀନ ହେଲା ପରେ ମଧ୍ୟ ସେ ଶାନ୍ତିଲାଭ କରିପାରିଲେ ନାହିଁ, କାରଣ ତାଙ୍କ ସ୍ୱପ୍ନର ଭାରତ ଦ୍ୱିଖଣ୍ଡିତ ହୋଇଯାଇଥିଲା ।**

ଉ – *ଦେଶ ସ୍ୱାଧୀନ .................................. ହୋଇଯାଇଥିଲା ।*

ଉଦ୍ଧୃତାଂଶଟି ରାମପ୍ରସାଦ ମହାନ୍ତିଙ୍କ ଲିଖିତ *'ଦେଶପ୍ରେମୀ କଏଦୀ'* ବିଷୟରୁ ଉଦ୍ଧୃତ । ଏଠାରେ ଲେଖକ ଦେଶ ସ୍ୱାଧୀନ ଓ ବିଭାଜନ ହେବା ସମ୍ପର୍କରେ ସଭର୍‌କର୍‌ଙ୍କ ମନର ଅବସ୍ଥାକୁ ରୂପ ଦେଇଛନ୍ତି ।



ସଭର୍‌କର୍ ଥିଲେ ଦେଶପ୍ରେମୀ । ଦେଶକୁ ମୁକ୍ତ କରିବାପାଇଁ ବାରମ୍ବାର ଆନ୍ଦୋଳନ ଓ ବିପ୍ଳବର ଅଗ୍ରଦୂତ ସାଜି ସେ ଜେଲ୍ ଭୋଗିଥିଲେ । ଦେଶପାଇଁ ତାଙ୍କର ତ୍ୟାଗ ଅବିସ୍ମରଣୀୟ । ଦେଶର ସ୍ୱାଧୀନତାପାଇଁ ତାଙ୍କୁ ସାରାଜୀବନ ବିଦେଶୀ ସରକାରର ନିର୍ମମ ନିର୍ଯାତନା ଭୋଗିବାକୁ ପଡ଼ିଥିଲା । ଦେଶ ସ୍ୱାଧୀନ ହେଲା । ସୁଚତୁର ଇଂରେଜ ଶାସକ ବିଶାଳ ଭାରତ ଭୂଖଣ୍ଡକୁ ଦୁଇଭାଗରେ ବିଭକ୍ତ କରିଦେଲେ । ତାଙ୍କ ସ୍ୱପ୍ନର ଭାରତ ଆଉ ପୂର୍ବଭଳି ଅଖଣ୍ଡ ରହିପାରିଲା ନାହିଁ । ପାକିସ୍ତାନ ସୃଷ୍ଟିକରି ଇଂରେଜମାନେ ଭାରତବର୍ଷକୁ ବିଭାଜିତ କରିଦେଲେ । ଫଳରେ ସ୍ୱାଧୀନତାର ଆନନ୍ଦ ସଭର୍‌କର୍‌ଙ୍କୁ ଶାନ୍ତି ପ୍ରଦାନ କରିପାରିଲା ନାହିଁ । ଦେଶ ବିଭାଜନ ହେବା ଘଟଣାରେ ସେ ମର୍ମାହତ ହେଲେ ।

**(ଖ) "ଦୁହେଁ ପରସ୍ପରକୁ ଚାହିଁ କିଛି ସମୟ ମୂକଭଳି ଠିଆହୋଇ ରହିଲେ ।"**

ଉ – *"ଦୁହେଁ ପରସ୍ପରକୁ ....................... ରହିଲେ ।"*

ଉକ୍ତ ଗଦ୍ୟାଂଶଟି ଆମ ସାହିତ୍ୟ ବହିର 'ଦେଶ ପ୍ରେମୀ କଏଦୀ' ବିଷୟରୁ ଆନୀତ । ଏଠାରେ ଲେଖକ ରାମଚନ୍ଦ୍ର ମହାନ୍ତି ସଭର୍‌କର୍ ଓ ତାଙ୍କ ବଡ଼ ଭାଇ ଗଣେଶଙ୍କର କିପରି ନାଟକୀୟ ଭାବରେ ଜେଲ୍ ଭିତରେ ଦେଖା ସାକ୍ଷାତ୍ ହୋଇଗଲା, ତାହା ବର୍ଣ୍ଣନା କରିଛନ୍ତି ।

ସଭର୍‌କର୍ ଓ ତାଙ୍କ ବଡ଼ଭାଇ ଗଣେଶ ଉଭୟ ଦେଶବତ୍ସଳ । ସେତେବେଳେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଇଂରେଜ ସରକାର ଦୃଢ଼ ହସ୍ତରେ ଦମନ କରୁଥିଲେ । ନିଜର ଅତି ଆପଣାର ଦେଶ ଭାରତକୁ ସ୍ୱାର୍ଥପର ଇଂରେଜ ସରକାରଙ୍କ କବଳରୁ ମୁକ୍ତ କରିବାକୁ ଚେଷ୍ଟା କରୁଥିବା ଯୋଗୁ ସଭର୍‌କର କଳାପାଣି ପାରହୋଇ ଆଣ୍ଡାମାନ ଜେଲରେ ନିର୍ଯ୍ୟାତନା ଭୋଗୁଥା'ନ୍ତି । ସେତେବେଳେ ସେ ଜେଲ ଭିତରେ ଥାଇ ବାହ୍ୟ ଜଗତର କିଛି ଖୋଜଖବର ରଖିପାରୁ ନଥିଲେ । ତାଙ୍କର ବଡ଼ଭାଇ ମଧ୍ୟ ଦେଶପ୍ରେମୀର ଅପରାଧ ନେଇ ସେହି ଏକା ଜେଲ୍‌ରେ ଥା'ନ୍ତି; କିନ୍ତୁ କେହି କାହାର ଖବର ଜାଣିପାରୁନାହାନ୍ତି, ଦିନେ ହଠାତ୍ ଘଣା ପେଲିସାରି ନିଜ କୋଠରିକୁ ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ଏକ ନାଟକୀୟ ଭାବରେ ସଭର୍‌କର୍‌ଙ୍କର ବଡ଼ଭାଇ ଗଣେଶଙ୍କ ସହ ଦେଖାହେଲା । କେହି କାହାରିକୁ ଜାଣି ନଥିବାରୁ ପ୍ରଥମେ ଦୁଇଭାଇ ପରସ୍ପରକୁ ଦେଖି ବିସ୍ମିତ ହେଲେ । କାହାରି ପାଟିରୁ କଥା ବାହାରିଲା ନାହିଁ । ବଡ଼ଭାଇ ଗଣେଶ ଭାବିଥିଲେ, ସଭର୍‌କର୍ ହୁଏତ ଲଣ୍ଡନ କିମ୍ବା ପ୍ୟାରିସ୍‌ରେ ଥିବା ଦେଶର ସ୍ୱାଧୀନତା ପାଇଁ ସେ ନିଶ୍ଚୟ ସେଠାରେ ସଂଗ୍ରାମ ଚଳାଉଥିବ ।

୪ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।

**(କ) ଶେଷ ଜୀବନରେ ସଭର୍‌କରଙ୍କୁ କାହିଁକି ଆଉଥରେ କାରାବରଣ କରିବାକୁ ପଡ଼ିଥିଲା ?**

ଉ– ଆଣ୍ଡାମାନରୁ ମୁକ୍ତହେବା ପରେ ସଭର୍‌କର୍ ସ୍ୱଦେଶକୁ ଫେରିଥିଲେ । ତଥାପି ସଭର୍‌କର୍‌ଙ୍କ ପ୍ରତି ଇଂରେଜମାନଙ୍କର ଖୁବ୍ ଭୟ ଥାଏ । ତେଣୁ ତାଙ୍କୁ ପୁନର୍ବାର ବନ୍ଦୀ କରାଯାଇ ବଙ୍ଗପ୍ରଦେଶର ଅଲିପୁର ଜେଲ୍‌କୁ ପଠାଇ ନଜରବନ୍ଦୀ ଭାବେ ରଖାଗଲା । ଏହାର ଷୋଳବର୍ଷ ପରେ ତାଙ୍କୁ ମୁକ୍ତ କରିଦିଆଗଲା । ବାର୍ଦ୍ଧକ୍ୟ ହେତୁ ସଭର୍‌କର୍ କ୍ଳାନ୍ତ ଓ ଅବସନ୍ନ ହୋଇପଡ଼ିଥିବେ ବୋଲି ଇଂରେଜ ସରକାର ଭାବିଥିଲେ । ମାତ୍ର ଏହି ଧାରଣାକୁ ଭୁଲ୍ ପ୍ରମାଣିତ କରି ସଭର୍‌କର୍ ଦେଶସାରା ଭ୍ରମଣ କଲେ ଓ ସଶସ୍ତ୍ର ସଂଗ୍ରାମ ପାଇଁ ଲୋକମାନଙ୍କୁ ଆହ୍ୱାନ ଦେଲେ । ତେଣୁ ଇଂରେଜ ସରକାର ତାଙ୍କୁ ଆଉଥରେ ବନ୍ଦୀକଲେ । ତେଣୁ ତାଙ୍କୁ ଶେଷ ଜୀବନରେ ଆଉଥରେ କାରାବରଣ କରିବାକୁ ପଡ଼ିଥିଲା ।

**(ଖ) ଆଣ୍ଡାମାନର କଏଦୀମାନଙ୍କୁ କିପରି ଦଣ୍ଡ ଭୋଗ କରିବାକୁ ପଡୁଥିଲା ?**

ଉ– ଆଣ୍ଡାମାନର ଜଳବାୟୁ ଖୁବ୍ ଅସ୍ୱାସ୍ଥ୍ୟକର ଥିଲା । ବନ୍ଦୀମାନେ ବଳଦ ପରି ଘଣା ପେଲୁଥିଲେ । କଠିନ ଶ୍ରମ କରିବାକୁ ରାଜି ନ ହେଲେ ଚାବୁକ ପାହାର ଖାଉଥିଲେ । ଦିନକୁ ସେମାନେ ପନ୍ଦର ସେର ତେଲ ପେଡ଼ିବାକୁ ବାଧ୍ୟ । କମ୍ ହେଲେ ଛୁଟି ମିଳେ ନାହିଁ । ଟିକେ ଠିଆହେଲେ ଠେଙ୍ଗେଣି ମାଡ଼ ବସେ । ଲୁହ ବୋହିଲେ ବି ଆଖି

ପୋଛିବାକୁ ମନା । ଦିନକୁ ଦୁଇତାଟିଆ ପାଣିରୁ ଅଧିକ କେହି ପିଇପାରିବେ ନାହିଁ । ସ୍ନାନ କରିବା ସେମାନଙ୍କ ପାଇଁ ସ୍ୱପ୍ନର କଥା । କଏଦୀ ଘଣା ପେଲୁଥିବାବେଳେ ଯଦି ଭାଗ୍ୟକୁ ବର୍ଷା ହୁଏ, ତେବେ ସେ ସେହି ବର୍ଷାଜଳରେ ସ୍ନାନ କରୁଥିଲା । ଏହିପରି ଅକଥନୀୟ ଅତ୍ୟାଚାର ଭିତରେ କଏଦୀମାନଙ୍କୁ ଦଣ୍ଡ ଭୋଗ କରିବାକୁ ପଡୁଥିଲା ।

**(ଗ) "ମହାରାଷ୍ଟ୍ରରେ କ'ଣ ଶିବାଜୀ ପୁନର୍ଜନ୍ମ ଗ୍ରହଣ କଲେ" – ଏକଥା କିଏ କାହିଁକି କହିଥିଲେ ?**

ଉ– ସଭରକର୍ ଆବାଲ୍ୟରୁ ଦେଶପ୍ରେମୀ ଥିଲେ । କଲେଜରେ ପଢୁଥିବାବେଳେ ମାତ୍ର ଅଠରବର୍ଷ ବୟସରେ ସେ 'ମିତ୍ରମେଳା' ନାମକ ଏକ ବିପ୍ଳବୀ ଦଳ ଗଢ଼ିଥିଲେ । ୧୯୦୧ ମସିହାରେ ଯେତେବେଳେ ବିଲାତର ରାଣୀ ଭିକ୍ଟୋରିଆଙ୍କ ମୃତ୍ୟୁ ହେଲା, ସେତେବେଳେ ଭାରତରେ ସର୍ବତ୍ର ଶୋକ ପାଳନ କରାଗଲା; ମାତ୍ର ମିତ୍ରମେଳାର ସଦସ୍ୟମାନେ ଶୋକଦିବସ ପାଳିଲେ ନାହିଁ । ସଭରକର୍ ଏକ ବୈଠକ ଡାକି ସେଥିରେ ଓଜସ୍ୱିନୀ ଭାଷଣ ଦେଲେ । ସେ କହିଲେ ଯେ ଭିକ୍ଟୋରିଆ ଆମ ଶତ୍ରୁ ଦେଶର ରାଣୀ ହୋଇଥିବାରୁ ତାଙ୍କ ବିୟୋଗରେ ଆମର ଶୋକ ପାଳିବା ଆବଶ୍ୟକ ନାହିଁ । ତାଙ୍କ ଭାଷଣ ସମ୍ବାଦପତ୍ରଗୁଡ଼ିକରେ ପ୍ରକାଶିତ ହେଲା । ସରକାର କ୍ଷୁବ୍ଧ ହୋଇ ତାଙ୍କୁ କଲେଜରୁ ବହିଷ୍କାର କଲେ । ସେତେବେଳେ ଦେଶର ବିଶିଷ୍ଟ ନେତା ବାଳ ଗଙ୍ଗାଧର ତିଳକ ଏହି ସମ୍ବାଦ ପଢ଼ିଥିଲେ । ତାଙ୍କ ଦେଶପ୍ରୀତି ଓ ସାହସିକତା ବିଷୟରେ ପଢ଼ି ତାଙ୍କ ପାଟିରୁ ସ୍ୱତଃ ବାହାରି ପଡ଼ିଥିଲା – "ମହାରାଷ୍ଟ୍ରରେ କ'ଣ ଶିବାଜୀ ପୁନର୍ଜନ୍ମ ଗ୍ରହଣ କଲେ ।"

**(ଘ) ସଭରକର୍ ଗଢ଼ିଥିବା ବିପ୍ଳବୀ ଦଳର ନାମ କ'ଣ ଥିଲା ? ଏହି ଦଳର ସଦସ୍ୟମାନେ ଭିକ୍ଟୋରିଆଙ୍କ ମୃତ୍ୟୁରେ ଶୋକଦିବସ ପାଳିଲେ ନାହିଁ କାହିଁକି ?**

ଉ– ବିପ୍ଳବୀ ବିନାୟକ ଦାମୋଦର ସଭରକର୍ କଲେଜରେ ପଢୁଥିବାବେଳେ ଅଠରବର୍ଷ ବୟସରେ ଏକ ବିପ୍ଳବୀ ଦଳ ଗଢ଼ିଥିଲେ । ସେହି ଦଳର ନାମ ଥିଲା 'ମିତ୍ରମେଳା' । ୧୯୦୧ ମସିହାରେ ଇଂଲଣ୍ଡର ମହାରାଣୀ ଭିକ୍ଟୋରିଆଙ୍କ ମୃତ୍ୟୁ ହେଲା । ସେଥିପାଇଁ ଭାରତରେ ସର୍ବତ୍ର ଶୋକ ପାଳିତ ହେଲା । କିନ୍ତୁ ମିତ୍ରମେଳାର ସଦସ୍ୟମାନେ ଶୋକଦିବସ ପାଳିଲେ ନାହିଁ । ସଭରକର୍ ମିତ୍ରମେଳାର ଏକ ବୈଠକ ଡାକି ସେଥିରେ ଓଜସ୍ୱିନୀ ଭାଷଣ ଦେଇଥିଲେ । ସେ କହିଲେ ଯେ ବିଲାତର ରାଣୀ ଭିକ୍ଟୋରିଆ ଆମ ଶତ୍ରୁଦେଶର ରାଣୀ । ତେଣୁ ତାଙ୍କ ମୃତ୍ୟୁରେ ଆମର ଶୋକ ପାଳିବାର ଆବଶ୍ୟକତା ନାହିଁ ।

**(ଙ) ସଭରକର୍‌ଙ୍କୁ କେଉଁ କାରଣରୁ ଆଣ୍ଡାମାନ ପଠା-ଯାଇଥିଲା ?**

ଉ– କଲେଜ ଶିକ୍ଷା ଶେଷକଲା ପରେ ସଭରକର୍ ଆଇନ ପଢ଼ିବାପାଇଁ ଲଣ୍ଡନ ଯାଇଥିଲେ । ବିଲାତରେ ଥାଇ ମଧ୍ୟ ସେ ଭାରତମାତାକୁ ସ୍ୱାଧୀନ କରିବାର ସ୍ୱପ୍ନ ଦେଖୁଥା'ନ୍ତି । ସେ ବିଲାତରେ ସଙ୍ଗଠନ ଆରମ୍ଭ କରି ଇଂରେଜ ସରକାରଙ୍କ ବିରୋଧରେ ଆନ୍ଦୋଳନ ଚଳାଇଲେ । ତେଣୁ ତାଙ୍କୁ ରାଜଦ୍ରୋହ ଅପରାଧରେ ବନ୍ଦୀ କରାଗଲା ଓ ଜାହାଜରେ ଭାରତର କୌଣସି ଏକ କାରାଗାରକୁ ପଠାଇ ଦିଆଗଲା । କିନ୍ତୁ ସେ ଜାହାଜରୁ ସମୁଦ୍ରକୁ ଡେଇଁପଡ଼ି ପଳାଇଯିବାକୁ ଚେଷ୍ଟାକରି ଧରାପଡ଼ିଗଲେ । ବନ୍ଦୀ ଅବସ୍ଥାରେ ଫେରାର ହେବା ଅପରାଧର ବିଚାର ହେଲା । ତାଙ୍କ ପ୍ରତି ଅଧିକ କଠୋର ଦଣ୍ଡବିଧାନ କରାଯାଇ କଳାପାଣି ପାରିକରି ଆଣ୍ଡାମାନ ଜେଲକୁ ପଠାଇ ଦିଆଗଲା ।

● ❖ ●

# କିଏ ଭାସେ, କିଏ ବୁଡ଼େ ?

• *ଡକ୍ଟର କୁଳମଣି ସାମଲ*
*ଜନ୍ମ : ୩.୧୨.୧୯୨୯*
*ମୃତ୍ୟୁ : ୧୭.୨.୨୦୧୩*

## ଲେଖକ ପରିଚୟ

ଡକ୍ଟର କୁଳମଣି ସାମଲ (୧୯୨୯) କଟକ ଜିଲ୍ଲାର ନୂତାଙ୍ଗ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକ ଭାବରେ ସେ ପରିଚିତ । ବିଜ୍ଞାନ ସାହିତ୍ୟ ପାଇଁ ସେ ଓଡ଼ିଶା ବିଜ୍ଞାନ ଏକାଡେ଼ମୀ ଓ ଉତ୍କଳ ସାହିତ୍ୟ ସମାଜ ତରଫରୁ ପୁରସ୍କୃତ ହୋଇଛନ୍ତି । ବୁର୍ଲା ଇଞ୍ଜିନିୟରିଂ କଲେଜର ପଦାର୍ଥ ବିଜ୍ଞାନ ବିଭାଗରେ ପ୍ରଫେସର ଭାବରେ କାର୍ଯ୍ୟକରି ସେ ଅବସର ଗ୍ରହଣ କରିଛନ୍ତି । ତାଙ୍କ ଲିଖିତ ଲୋକପ୍ରିୟ ବିଜ୍ଞାନ ପୁସ୍ତକଗୁଡ଼ିକ ମଧ୍ୟରେ *'ମହାକାଶର ଆହ୍ୱାନ'*, *'ଆଈମା' କାହାଣୀ ନୁହେଁ'*, *'ସଭ୍ୟତାର ତିନୋଟି ସୋପାନ'*, *'ବିଶ୍ୱବିଖ୍ୟାତ ବୈଜ୍ଞାନିକ'* ଆଦି ପ୍ରଧାନ ।

## ବିଷୟ ସୂଚନା

ଏହା ବିଜ୍ଞାନର ବିଷୟବସ୍ତୁ ଉପରେ ଆଧାରିତ ଏକ ବିଷୟ । ଜଳରେ କେଉଁ ବସ୍ତୁ ଭାସେ ଓ କେଉଁ ବସ୍ତୁ ବୁଡ଼େ, ତାହାର ବୈଜ୍ଞାନିକ ସିଦ୍ଧାନ୍ତକୁ ଗଳ୍ପ ମାଧ୍ୟମରେ ଏଥିରେ ଉପସ୍ଥାପନ କରାଯାଇଛି । ଏହି ତତ୍ତ୍ୱକୁ କିପରି ବୈଜ୍ଞାନିକ ଆର୍କିମେଡ଼ିସ୍ ବାହାର କରିଥିଲେ, ତାହାକୁ ଏଥିରେ ବର୍ଣ୍ଣନା କରାଯାଇଛି ।

## ସାରକଥା

ସେଥର ସହରରେ ଗୋଟିଏ ଯାତ୍ରାଦଳ ନୂଆ ନାଟକ ପରିବେଷଣ କରିବେ ବୋଲି ଘୋଷଣା କରିଥିଲେ । ନାଟକର ନାଁ ଥିଲା *"ଭାସିଲା ପଥର ବୁଡ଼ିଲା ଶୋଳ"* । ସନ୍ଧ୍ୟାବେଳେ ନାଟକ ଦେଖିବାକୁ ଲୋକମାନେ ଭିଡ଼ ଲଗାଇଲେ । ନାଟକ ଦେଖିସାରି ଶେଷରେ ଲୋକମାନେ ନିରାଶ ହେଲେ । ସେଥିରେ ପଥର କି ଶୋଲ ନଥିଲା । ବରଂ ଦୁଇଜଣ ଲୋକଙ୍କ ଲଢ଼େଇକୁ ନେଇ ନାଟକଟି ହୋଇଥିଲା । ନିରୀହ ଲୋକଟିକୁ ପୋଲିସ୍ ଧରିନେଲା । ବିଚରା ଲୋକଟି ଦୁଃଖରେ ବୁଡ଼ିଗଲା । ମାତ୍ର ଦୁଷ୍ଟ ଗୁଣ୍ଡା ଲୋକଟା କିଛି ଦଣ୍ଡ ନପାଇ ଖୁସିରେ ଭାସିଲା ।

ଅଜାଙ୍କ ସହ ମୁନା ନାଟକ ଦେଖିବାକୁ ଯାଇଥିଲା । ସେ ଅଜାଙ୍କୁ ପଚାରିଲା, ପଥର କାହିଁକି ବୁଡ଼େ, ଶୋଲ କାହିଁକି ଭାସେ ? ଅଜା କହିଲେ, ପଥର ଓଜନିଆ, ତେଣୁ ସେ ବୁଡ଼ିଯାଏ; ମାତ୍ର ଶୋଲ ହାଲୁକା, ତେଣୁ ସେ ଭାସେ । ମୁନା କହିଲା, ତେବେ ଦୁଇକିଲୋ ଓଜନର ଶୋଲ ବିଡ଼ା ବେଶି ଓଜନିଆ ନା କିଲେ ଓଜନର ଖଣ୍ଡେ ଲୁହା ବେଶି ଓଜନିଆ । ଯଦି ଦୁଇକିଲୋ ଓଜନର ଶୋଲ ବିଡ଼ା ବେଶି ଓଜନିଆ ହୁଏ, ତେବେ ତାହା ପାଣିରେ ବୁଡ଼ିଯିବ । ଆଉ କିଲେ ଓଜନର ଲୁହା ଖଣ୍ଡକ ପାଣିରେ ଭାସିବ ।

ଅଜା ମୁନାର ଏଭଳି ପ୍ରଶ୍ନରେ ଟିକେ ହଡ଼ବଡ଼େଇ ଗଲେ । ମୁନା ଯେ ବିନା ଯୁକ୍ତି ଓ ବିନା ପ୍ରମାଣରେ କିଛି କଥାକୁ ସତ୍ୟ ବୋଲି ମାନିବାକୁ ପ୍ରସ୍ତୁତ ନୁହେଁ, ତାହା ଜାଣିଲେ । ଏ ବିଜ୍ଞାନ ଯୁଗରେ ଅନ୍ଧବିଶ୍ୱାସୀ ହେଲେ ଚଳିବ ନାହିଁ । ତେଣୁ ସେ କ'ଣ କହି ନାତିକୁ ବୁଝାଇବେ ଚିନ୍ତା କଲେ । ତାଙ୍କର ବୈଜ୍ଞାନିକ ଆର୍କିମେଡ଼ିସ୍‌ଙ୍କ କଥା ମନେପଡ଼ିଗଲା । ଆର୍କିମେଡ଼ିସ୍ ଥରେ ନିଜର ଗାଧୁଆଘରେ ବଡ଼ କୁଣ୍ଡରେ ପଶିଲାମାତ୍ରେ ସେଥିରୁ କିଛି ପାଣି ବାହାରି ବାହାରକୁ ଚାଲିଗଲା । ଆଉ ସେ କୁଣ୍ଡ ଭିତରେ ବସିଥିଲାବେଳେ ଅନୁଭବ କଲେ ଯେ କେହି ଯେପରି ତାଙ୍କୁ ଉପରକୁ ଠେଲି ଦେଉଛି । ଏହିଥିରୁ ସେ ହଠାତ୍

ବିଜ୍ଞାନର ଗୋଟିଏ ନୂତନ ସତ୍ୟ ପାଇଗଲେ ଓ *'ଇଉରେକା, ଇଉରେକା'* କହି ଉଲଗ୍ନ ଅବସ୍ଥାରେ ଦାଣ୍ଡରେ ଧାଇଁଲେ। *'ଇଉରେକା'* ଶବ୍ଦର ଅର୍ଥ *'ମୁଁ ପାଇଗଲି'*। ସେ ବହୁଦିନ ଧରି ଖୋଜୁଥିବା ବିଜ୍ଞାନର ଗୋଟିଏ ତତ୍ତ୍ୱ ହଠାତ୍ ପାଇଯିବାରୁ ଖୁସିରେ ଏପରି ବିହ୍ୱଳ ହୋଇଯାଇଥିଲେ। ରାଜାଙ୍କ ସୁନାର ମୁକୁଟଟି ଖାଣ୍ଟି ସୁନାରେ ନା କିଛି ନକଲି ସୁନା ମିଶିଛି ତାହା ଜାଣିବାକୁ ସେ ଦେଶର ରାଜା ତାଙ୍କୁ ପଚାରିଥିଲେ। ମାତ୍ର ମୁକୁଟଟିକୁ ନ ଭାଙ୍ଗି ନିଆଁରେ ନ ତରଳାଇ ଏହା ଜାଣିବାକୁ ରାଜା କହିଥିଲେ। ଆର୍କିମେଡ଼ିସ୍ ବହୁଦିନଧରି ଖୁବ୍ ଚିନ୍ତାରେ ଥିଲେ।

ଅଜା ଗୋଟିଏ କଥା କହିବାକୁ ଯାଇ ଅନ୍ୟ କେଉଁଆଡ଼େ ଯାଇ ପଶିଲେଣି, ତେଣୁ ମୁନା ବ୍ୟସ୍ତ ହୋଇପଡୁଥାଏ। ଅଜା କହିଲେ, ବସ୍ତୁଟି ପାଣି ଭିତରେ ଯେତିକି ସ୍ଥାନ ଦଖଲ କରେ, ସେହି ସ୍ଥାନରେ ଥିବା ପାଣିକୁ ଓଜନ କଲେ ଯେତିକି ହେବ, ବସ୍ତୁର ଓଜନ ସେତିକି କମେ। ଫଳରେ ମନେହୁଏ ବସ୍ତୁଟିକୁ ଯେପରି ସେତିକି ବଳରେ କିଏ ଉପରକୁ ଠେଲୁଛି। ଯେକୌଣସି ତରଳ ପଦାର୍ଥର ଏଭଳି ଗୁଣ ଅଛି। ଖଣ୍ଡେ ଲୁହାକୁ ପାଣିରେ ପକାଇଲେ ତାହା ବୁଡ଼ିଯାଉଥିବାବେଳେ ତରଳ ପାରଦରେ ତାହା ଭାସିବ। କାରଣ ପାଣିର ଠେଲା ବଳ ଲୁହାର ଓଜନଠାରୁ କମ୍ ହୋଇଥିବାବେଳେ ତରଳ ପାରଦର ଠେଲା ବଳ ଲୁହାର ଓଜନଠାରୁ ବେଶି।

ଅଜା କିଛି କହିବା ଆଗରୁ ମୁନା କହିଲା ଯେ, ଯେଉଁ ବସ୍ତୁ ତା' ସମାନ ଆୟତନର ଜଳ ବା ସେଇଭଳି କୌଣସି ତରଳ ପଦାର୍ଥଠାରୁ ଅଧିକ ଓଜନିଆ ତାହା ବୁଡ଼ିଯିବ, କମ୍ ଓଜନ ବା ହାଲୁକା ହେଲେ ଭାସିବ। ପଥର ଭିତରେ ଫମ୍ପା ଜାଗା ରହିଲେ ତାହା ଭାସିବ। ଶୋଲ ଭିତରେ ଲୁହାଖଣ୍ଡେ ରଖିଦେଲେ ବୁଡ଼ିଯିବ।

ଆର୍କିମେଡ଼ିସ୍ ଜଣେ ବଡ଼ ଗଣିତଜ୍ଞ ଥିଲେ। ଗାଧୁଆଘର ପାଣିକୁଣ୍ଡରୁ ସେ ବିଜ୍ଞାନର ଯେଉଁ ତଥ୍ୟଟି ପାଇଲେ, ସେଇ ତଥ୍ୟକୁ ପ୍ରୟୋଗକରି ରାଜାଙ୍କ ମୁକୁଟ ଖାଣ୍ଟି ସୁନାରେ ତିଆରି କି ନାହିଁ ଜାଣିପାରିଲେ। ଗୋଟିଏ ଛୋଟିଆ ଘଟଣାରୁ କେମିତି ବିଜ୍ଞାନର ଏତେବଡ଼ ତଥ୍ୟଟିଏ ମିଳିଗଲା ଜାଣି ମୁନା ଖୁସିରେ ତାଳି ମାରିଲା।

ବୈଜ୍ଞାନିକ ଆର୍କିମେଡ଼ିସ୍ ଇଟାଲୀର ସିସିଲି ଦ୍ୱୀପ ଅନ୍ତର୍ଗତ ସିରାକ୍ୟୁଜ ନାମକ ସହରରେ ଖ୍ରୀ.ପୂ. ୨୮୭ରେ ଜନ୍ମଗ୍ରହଣ କରିଥିଲେ ଓ ଖ୍ରୀ.ପୂ. ୨୧୨ରେ ମୃତ୍ୟୁବରଣ କରିଥିଲେ। ରୋମୀୟ ସୈନ୍ୟମାନେ ସିରାକ୍ୟୁଜ୍ ଦଖଲ କଲାବେଳେ ଆର୍କିମେଡ଼ିସ୍ ମଝି ରାସ୍ତାରେ ବସି ବାଲିରେ ଗାର ଟାଣି ଅଙ୍କ କଷୁଥିଲେ। ସେମାନେ ତାଙ୍କୁ ଚିହ୍ନି ନପାରି ଭୁଲ୍‌ରେ ହତ୍ୟା କରିଥିଲେ। ଏହା ଜାଣିବାପରେ ସେମାନେ ଖୁବ୍ ଅନୁତାପ କରିଥିଲେ। ଶତ୍ରୁସୈନ୍ୟ ହୋଇ ମଧ୍ୟ ଏପରି ଜଣେ ପ୍ରତିଭାବାନ୍ ବୈଜ୍ଞାନିକଙ୍କ ପାଖରେ ସେମାନଙ୍କ ମୁଣ୍ଡ ନଇଁଗଲା। ତାଙ୍କୁ ସମାଧି ଦେଇ ସେ କଷୁଥିବା ଅଙ୍କର ଚିତ୍ରଟିକୁ ସମାଧି ଉପରେ ଆଙ୍କି ଦିଆଗଲା।

## କଠିନ ଶବ୍ଦାର୍ଥ

ନିଠେଇ – ଟିକିନିଖି। ଉଚ୍ଛୁଳି – ବାହାରିଯିବା। ଉଲଗ୍ନ – ଲଙ୍ଗଳା। ବିହ୍ୱଳ – ଖୁସିରେ। ବରାବର – ସବୁବେଳେ। ଗଣିତଜ୍ଞ – ଯିଏ ଗଣିତ ଜାଣେ। ପ୍ରତିଭାବାନ୍ – ଯାହାର ପ୍ରତିଭା ଅଛି।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧। ଉତ୍ତର କୁହ।

**(କ) ଡାକବାଜି ଯନ୍ତ୍ରରେ ସକାଳୁ ଦୁଇଜଣ ଲୋକ କ'ଣ ପ୍ରଚାର କରୁଥିଲେ ?**

ଉ– ସକାଳୁ ଦୁଇଜଣ ଲୋକ ଡାକବାଜି ଯନ୍ତ୍ରରେ ପ୍ରଚାର କରୁଥିଲେ – *"ଭାଇ ଓ ଭଉଣୀମାନେ, ଦେଖିବାକୁ ଭୁଲନ୍ତୁ ନାହିଁ। ଆଜି ରାତିରେ ଏକ ସମ୍ପୂର୍ଣ୍ଣ ନୂଆ ଧରଣର ନାଟକ ଅଭିନୀତ ହେବ। ମନକୁ ଚମକେଇ ଦେବ। ଥରେ ଦେଖିଲେ ଜୀବନସାରା ଭୁଲିହେବ ନାହିଁ। ଏଥିରେ ବଛାବଛା ଅଭିନେତା ଓ ଅଭିନେତ୍ରୀମାନେ ଅଭିନୟ କରିବେ।"*

ମୋ ପେଜ କିଏ ଚିରି ଦେଇଛି



ଏପରି ଏକ ଛୋଟିଆ ଘଟଣାରୁ ହିଁ ବିଜ୍ଞାନର ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ମିଳିପାରିଲା, ଯାହାପାଇଁ ସେହି ବୈଜ୍ଞାନିକ ପୃଥିବୀ ପ୍ରସିଦ୍ଧ ହୋଇପାରିଥିଲେ।

ବାସ୍ତବରେ ଲେଖକଙ୍କର ଏହି ମନ୍ତବ୍ୟ ଯୁକ୍ତିଯୁକ୍ତ ଅଟେ।

୪। **ଏହି ପାଠରେ 'ଠେଲାଠେଲି' ପରି କେତେଗୁଡ଼ିଏ ଯୋଡ଼ା ଶବ୍ଦ ରହିଛି। ତାକୁ ଖୋଜି ବାହାର କର।**

ଉ– ଗଡ଼ାଗଡ଼ି, ମରାମରି, କୁହାକୁହି, ପୂରାପୂରି।

୫। **ତଳ ଅନୁଚ୍ଛେଦଟିରେ କୌଣସି ବିରାମ ଚିହ୍ନ ଦିଆଯାଇ ନାହିଁ। ଉପଯୁକ୍ତ ବିରାମ ଚିହ୍ନ ଲଗାଇ ଅନୁଚ୍ଛେଦଟିକୁ ଆଉ ଥରେ ଲେଖ।**

ମୁନା କିନ୍ତୁ ଛାଡ଼ିବା ପିଲା ନୁହେଁ ସେ କହିଲା ନାହିଁ ମ ଅଜା କେତେ ପରିମାଣର ଲୁହା ବା ଶୋଲକୁ କେତେ ପରିମାଣର ପାଣି ସେ କଥା ନ କହିଲେ କିଏ ଓଜନିଆ କିଏ ହାଲୁକା ଜାଣିହେବ କେମିତି

ଉ– ମୁନା କିନ୍ତୁ ଛାଡ଼ିବା ପିଲା ନୁହେଁ। ସେ କହିଲା, "ନାହିଁମ ଅଜା, କେତେ ପରିମାଣର ଲୁହା ବା ଶୋଲକୁ କେତେ ପରିମାଣର ପାଣି ଦରକାର, ସେକଥା ନ କହିଲେ, କିଏ ଓଜନିଆ, କିଏ ହାଲୁକା ଜାଣିହେବ କେମିତି ?"

୬। **ନିମ୍ନଲିଖିତ ଶବ୍ଦଗୁଡ଼ିକୁ ବ୍ୟବହାର କରି ମନରୁ ବାକ୍ୟ ତିଆରି କର।**

ଅନୁତାପ, ପ୍ରତିଭାବାନ୍, ସୂତ୍ର, ଗଣିତଜ୍ଞ

ଉ – ଅନୁତାପ– ନିଜର ଦୋଷପାଇଁ ହରି ଅନୁତାପ କଲା।

ପ୍ରତିଭାବାନ୍– ରାମ ଗୋଟିଏ ପ୍ରତିଭାବାନ୍ ପିଲା ଅଟେ।

ସୂତ୍ର– ଗଣିତର ସୂତ୍ର ନ ଜାଣିଲେ ଗଣିତ କଷି ହେବ ନାହିଁ।

ଗଣିତଜ୍ଞ– ପିଥାଗୋରସ୍ ଜଣେ ମହାନ୍ ଗଣିତଜ୍ଞ ଥିଲେ।

୭। **'କ' ସ୍ତମ୍ଭର ଯେଉଁ ଶବ୍ଦ ସହିତ 'ଖ' ସ୍ତମ୍ଭରେ ଥିବା ଶବ୍ଦର ସମ୍ପର୍କ ଅଛି, ତାକୁ ବାଛି ଲେଖ।**

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ସୁନ୍ଦର | ସୁନା |
| ଶାନ୍ତି | ଯନ୍ତ୍ର |
| ନିଶ | ଅବସ୍ଥା |
| ଡାକବାଜି | ଲୁଗା |
| ଉଲଗ୍ନ | ସ୍ୱର |
| ଖାଣ୍ଟି | ଶୃଙ୍ଖଳା |
| | ଫୁଲାଇ |

ଉ–

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ସୁନ୍ଦର | ସ୍ୱର |
| ଶାନ୍ତି | ଶୃଙ୍ଖଳା |
| ନିଶ | ଫୁଲାଇ |
| ଡାକବାଜି | ଯନ୍ତ୍ର |
| ଉଲଗ୍ନ | ଅବସ୍ଥା |
| ଖାଣ୍ଟି | ସୁନା |

୮। **ନିମ୍ନଲିଖିତ ଶବ୍ଦଗୁଡ଼ିକୁ ବ୍ୟବହାର କରି ଆର୍କିମେଡ଼ିସ୍‌ଙ୍କ ସମ୍ପର୍କରେ ଅନୁଚ୍ଛେଦଟିଏ ଲେଖ।**

ସିସିଲି, ମୂଲ୍ୟବାନ୍ ତଥ୍ୟ, ସିରାକ୍ୟୁଜ୍ ରାଜା, ଅନୁତାପ, ଶତ୍ରୁ ସୈନ୍ୟ, ସମ୍ମାନ, ପ୍ରତିଭାବାନ୍

ଉ – ମାନବ ଜଗତକୁ ଏଭଳି ଏକ ମୂଲ୍ୟବାନ୍ ତଥ୍ୟ ଦେଇଥିବା ବୈଜ୍ଞାନିକ ଆର୍କିମେଡ଼ିସ୍ ଇଟାଲୀର **ସିସିଲି** ଦ୍ୱୀ ଅନ୍ତର୍ଗତ ସିରାକ୍ୟୁଜ୍ ସହରରେ ଖ୍ରୀ.ପୂ. ୨୮୭ରେ ଜନ୍ମଗ୍ରହଣ କରିଥିଲେ ଓ ଖ୍ରୀ.ପୂ. ୨୧୨ରେ ମୃତ୍ୟୁବରଣ କରିଥିଲେ ସେତେବେଳେ **ସିରାକ୍ୟୁଜର ରାଜାଙ୍କ** ସହିତ ରୋମୀୟମାନଙ୍କର ବରାବର ଯୁଦ୍ଧ ହେଉଥିଲା। ରୋମୀୟମା ସିରାକ୍ୟୁଜ୍ ଦଖଲ କଲାବେଳେ ଚିହ୍ନି ନପାରି ଭୁଲ୍‌ରେ ତାଙ୍କୁ ହତ୍ୟା କଲେ। ଏକଥା ଜଣାପଡ଼ିବା ପରେ ସେମା

ଖୁବ୍ ଅନୁତାପ କରିଥିଲେ । କାରଣ ସେମାନେ ଆର୍କିମେଡ଼ିସ୍‌ଙ୍କୁ ଆଗରୁ ଦେଖି ନଥିଲେ ମଧ୍ୟ ତାଙ୍କ ନାଆଁ ଶୁଣିଥିଲେ । ଶତ୍ରୁ ସୈନ୍ୟ ହେଲେ ମଧ୍ୟ ଏଭଳି ଜଣେ ପ୍ରତିଭାବାନ୍ ବୈଜ୍ଞାନିକଙ୍କ ପାଖରେ ସେମାନଙ୍କର ମୁଣ୍ଡ ନଇଁଗଲା । ତାଙ୍କ ଉଦ୍ଦେଶ୍ୟରେ ଭକ୍ତି ଓ ସମ୍ମାନ ଜଣାଇ ଶବକୁ ନେଇ ସମାଧି ଦେଲେ ।

**୯ । 'ଅଭିନୟ' ଶବ୍ଦରୁ ଯେପରି 'ଅଭିନୀତ' ହେଉଛି, ସେପରି ନିମ୍ନଲିଖିତ ଶବ୍ଦଗୁଡ଼ିକର ନୂଆ ରୂପଟି କ'ଣ ହେବ ଲେଖ ।**

ଆବିଷ୍କାର, ଶୃଙ୍ଖଳା, ପୁରସ୍କାର, ଅନୁମାନ, ଅନୁଭବ

ଉ– ଆବିଷ୍କାର — ଆବିଷ୍କୃତ
ଶୃଙ୍ଖଳା — ଶୃଙ୍ଖଳିତ
ପୁରସ୍କାର — ପୁରସ୍କୃତ
ଅନୁମାନ — ଅନୁମିତ
ଅନୁଭବ — ଅନୁଭୂତ

**୧୦ । 'ଗଣିତ ଯେ ଜାଣନ୍ତି' ତାଙ୍କୁ ଗୋଟିଏ ଶବ୍ଦରେ କୁହାଯାଏ 'ଗଣିତଜ୍ଞ' । ସେହିପରି ଏମାନଙ୍କୁ ଗୋଟିଏ ଶବ୍ଦରେ କ'ଣ କୁହାଯାଏ, ଲେଖ ।**

ଉ– ସଙ୍ଗୀତ ଯେ ଜାଣନ୍ତି – ସଙ୍ଗୀତଜ୍ଞ
ବେଦ ଯେ ଜାଣନ୍ତି – ବେଦଜ୍ଞ
ଶାସ୍ତ୍ର ଯେ ଜାଣନ୍ତି – ଶାସ୍ତ୍ରଜ୍ଞ
ଆଇନ ଯେ ଜାଣନ୍ତି – ଆଇନଜ୍ଞ
ରାଜନୀତି ଯେ ଜାଣନ୍ତି – ରାଜନୀତିଜ୍ଞ
ସଂସ୍କୃତ ଯେ ଜାଣନ୍ତି – ସଂସ୍କୃତଜ୍ଞ

### ତୁମ ପାଇଁ କାମ

୧ । ଆର୍କିମିଡ଼ିସ୍‌ଙ୍କ ଫଟୋ ସଂଗ୍ରହ କରି ଶ୍ରେଣୀରେ ରଖ ।
୨ । ଡକ୍ଟର କୁଳମଣି ସାମଲଙ୍କ ଲିଖିତ ଅନ୍ୟ ବିଜ୍ଞାନଗଳ୍ପକୁ ସଂଗ୍ରହ କରି ପଢ଼ ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

**୧ । ଏକପଦରେ ପ୍ରକାଶ କର ।**

କଲ୍ୟାଣ କରେ ଯେ – କଲ୍ୟାଣକାରୀ

ନିଷ୍ଠା ଯାହାର ଅଛି – ନିଷ୍ଠାବାନ

ଯୁଦ୍ଧ କରିବା ଅଭ୍ୟାସ ଯାହାର – ଯୁଦ୍ଧଖୋର

ଜଳକୁ ଧରନ୍ତି ଯେ – ଜଳଧର

ଶିକ୍ଷାନିମନ୍ତେ ଅନୁଷ୍ଠାନ – ଶିକ୍ଷାନୁଷ୍ଠାନ



**୨ । ଉପଯୁକ୍ତ ବିରାମ ଚିହ୍ନ ଦେଇ ଲେଖ ।**

**(କ) ଅଜା ପୁଣି ଆରମ୍ଭ କଲେ ଶୁଣ ତୁ ଯେଉଁ ପ୍ରଶ୍ନ ପଚାରିଥିଲୁ ତାହାରି ଉତ୍ତର ଦେବାପାଇଁ ମୁଁ ଏତେ କଥା କହୁଛି ?**

ଉ– ଅଜା ପୁଣି ଆରମ୍ଭ କଲେ, ''ଶୁଣ, ତୁ ଯେଉଁ ପ୍ରଶ୍ନ ପଚାରିଥିଲୁ ତାହାର ଉତ୍ତର ଦେବାପାଇଁ ମୁଁ ଏତେକଥା କହୁଛି ।''

**(ଖ) ସତକଥା ନାଟକର ନାଆଁ ଯିଏ ଶୁଣିଲା ସେ ଆଶ୍ଚର୍ଯ୍ୟାନ୍ୱିତ ହେଲା ଏକି ବିପରୀତ କଥା ପଥରବୁଡ଼େ ଶୋଲ ଭାସେ ଏକଥା ବା କିଏ ନଜାଣେ ହେଲେ ଏଯାତ୍ରାଦଳ କହୁଛନ୍ତି ସଂପୂର୍ଣ୍ଣ ବିପରୀତ କଥା ।**

ଉ– ସତକଥା, ନାଟକର ନାଆଁ ଯିଏ ଶୁଣିଲା, ସେ ଆଶ୍ଚର୍ଯ୍ୟାନ୍ୱିତ ହେଲା । ଏ କି ବିପରୀତ କଥା ! ପଥର ବୁଡ଼େ, ଶୋଲ ଭାସେ, ଏ କଥା ବା କିଏ ନଜାଣେ ? ହେଲେ ଏ ଯାତ୍ରା ଦଳ କହୁଛନ୍ତି, ସଂପୂର୍ଣ୍ଣ ବିପରୀତ କଥା ।

**୩ । ସଂକ୍ଷେପରେ ଉତ୍ତର ଦିଅ ।**

**(କ) ନାଟକରେ କଥାଟା ଓଲଟା ହେଲା ବୋଲି ଲୋକେ କାହିଁକି କୁହାକୁହି ହେଲେ ?**

ଉ– ନାଟକରେ ନିରୀହ ଓ ନିର୍ଦ୍ଦୋଷ ଲୋକଟିକୁ ପୋଲିସ୍ ଭୁଲ୍‌ରେ ଧରିନେଲା ଓ ଅଧିକ ଦୁଷ୍ଟ ଥିବା ଗୁଣ୍ଡାଟି କିଛି ଦଣ୍ଡ ନ ପାଇ ନିଶ ଫୁଲାଇ ଚାଲିଗଲା । ତେଣୁ ଲୋକେ *'କଥାଟା ଓଲଟା ହୋଇଗଲା'* ବୋଲି କୁହାକୁହି ହେଲେ ।

**(ଖ) ଅଜାଙ୍କ ସହ କିଏ ନାଟକ ଦେଖିବାକୁ ଯାଇଥିଲା ? ସେ କ'ଣ ବୁଝିପାରିଲା ନାହିଁ ?**

ଉ– ମୁନା ଅଜାଙ୍କ ସହିତ ନାଟକ ଦେଖିବାକୁ ଯାଇଥିଲା । ସେ ଭାସିବା ବୁଡ଼ିବା କଥା କିଛି ବୁଝିପାରିଲା ନାହିଁ ।

**(ଗ) କେଉଁଟି ପାଣିରେ ବୁଡ଼େ, କେଉଁଟି ପାଣିରେ ଭାସେ ବୋଲି ଅଜା କହିଲେ ?**

ଉ– ପଥର ପାଣିରେ ବୁଡ଼େ ଓ ଶୋଲ ପାଣିରେ ଭାସେ ବୋଲି ଅଜା କହିଲେ ।

**(ଘ) ଆଗକାଳରେ ଲୋକେ କ'ଣ ମାନି ନେଉଥିଲେ ?**

ଉ– ଆଗକାଳରେ ଲୋକେ ଟିକିଏ ଅନ୍ଧବିଶ୍ୱାସୀ ଥିବା ହେତୁ ଯାହା ଶୁଣିଦେଲେ, ତାକୁ ନବୁଝି ନସୁଝି ସତ ବୋଲି ମାନି ନେଉଥିଲେ ।

**(ଙ) ତରଳ ପାରଦରେ ଲୁହା ଭାସେ କାହିଁକି ?**

ଉ– ଲୁହା ଖଣ୍ଡକୁ ତରଳ ପାରଦରେ ବୁଡ଼ାଇଲେ, ତାହା ଯେତିକି ପରିମାଣର ତରଳ ପାରଦକୁ ଉଚ୍ଛୁଳାଇ ଦିଏ, ତାହାର ଓଜନ ସେଇ ଲୁହା ଖଣ୍ଡିକର ଓଜନଠାରୁ ବେଶି ହେଉଥିବାରୁ ଲୁହା ଖଣ୍ଡଟି ବୁଡ଼ି ନଯାଇ ତରଳ ପାରଦରେ ଭାସିଥାଏ ।

**(ଚ) ଶତ୍ରୁ ସୈନ୍ୟ ହେଲେ ମଧ୍ୟ ରୋମୀୟମାନେ ଅନୁତାପ କଲେ କାହିଁକି ?**

ଉ– ରୋମୀୟମାନେ ଆର୍କିମେଡ଼ିସ୍‌ଙ୍କୁ ଆଗରୁ ଦେଖି ନଥିଲେ ମଧ୍ୟ ତାଙ୍କ ନାଆଁ ଶୁଣିଥିଲେ । ସେମାନେ ତାଙ୍କୁ ଚିହ୍ନି ନପାରି ଭୁଲ୍‌ରେ ହତ୍ୟାକରି ଦେଇଥିବାରୁ ଖୁବ୍ ଅନୁତାପ କରିଥିଲେ । ଶତ୍ରୁ ସୈନ୍ୟ ହେଲେ ମଧ୍ୟ ଏଭଳି ଜଣେ ପ୍ରତିଭାବାନ୍ ବୈଜ୍ଞାନିକଙ୍କ ନିକଟରେ ସେମାନଙ୍କ ମୁଣ୍ଡ ନଇଁ ଯାଇଥିଲା ।

୪। ସରଳାର୍ଥ ଲେଖ ।

**(କ) ''ଇଏ ପରା ହେଉଛି ବିଜ୍ଞାନଯୁଗ । ସେ କଥା ଆଉ ଚଳିବ ନାହିଁ ।''**

ଉ– ଇଏ ପରା ............................... ନାହିଁ ।

ଶଂସିତ ଉଦ୍ଧୃତାଂଶଟି 'କିଏ ଭାସେ, କିଏ ବୁଡ଼େ' ପ୍ରବନ୍ଧରୁ ଆନୀତ । ଉକ୍ତ ପ୍ରସଙ୍ଗରେ ପ୍ରାବନ୍ଧିକ ଡକ୍ଟର କୁଳମଣି ସାମଲ ବିଜ୍ଞାନଯୁଗର ଗୁରୁତ୍ୱ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି ।

ପରିବର୍ତ୍ତିତ ପରିସ୍ଥିତିରେ ବିଜ୍ଞାନ ସବୁକ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଆଜିକାଲିର ପିଲାମାନେ ପ୍ରତ୍ୟେକ କଥାକୁ ନିଠେଇ କରି ଧରୁଛନ୍ତି । ସେମାନେ ବିନାଯୁକ୍ତି ଓ ବିନା ପ୍ରମାଣରେ କୌଣସି କଥାକୁ ସତ୍ୟ ବୋଲି ମାନିବାକୁ ପ୍ରସ୍ତୁତ ନୁହନ୍ତି । ଆଗ କାଳରେ ଲୋକମାନେ ଟିକିଏ ଅନ୍ଧବିଶ୍ୱାସୀ ଥିଲେ । ଯାହା ଗୋଟିଏ ଶୁଣିଦେଲେ ନ ବୁଝି ନ ସୁଝି ସତବୋଲି ମାନି ନେଇଥିଲେ, କିନ୍ତୁ ଇଏ ପରା ବିଜ୍ଞାନଯୁଗ । ବର୍ତ୍ତମାନ ସବୁର ପ୍ରମାଣ ଆବଶ୍ୟକ ।

ବାସ୍ତବରେ ପ୍ରସଙ୍ଗଟି ଯୁକ୍ତିଯୁକ୍ତ ଅଟେ ।

**(ଖ) ''ଇଏ ପରା ହେଉଛି ବିଜ୍ଞାନ ଯୁଗ ।''**

ଉ – *ଇଏ............................ ବିଜ୍ଞାନ ଯୁଗ ।*

ଶଂସିତ ଗଦ୍ୟାଂଶଟି ଡକ୍ଟର କୁଳମଣି ସାମଲଙ୍କ ଲିଖିତ *'କିଏ ଭାସେ, କିଏ ବୁଡ଼େ ?'* ବିଷୟରୁ ଉଦ୍ଧୃତ । ଉକ୍ତ ପ୍ରସଙ୍ଗରେ ବିଜ୍ଞାନ ଯୁଗର ଗୁରୁତ୍ୱ ଉପରେ ଆଲୋକପାତ କରାଯାଇଛି ।

ଆଗକାଳର ଲୋକେ ଅନ୍ଧବିଶ୍ୱାସୀ ଥିଲେ । ଯାହା ଶୁଣିଦେଲେ ନ ବୁଝି ନ ଶୁଝି ସତ ବୋଲି ମାନି ନେଉଥିଲେ । ଏବେ କିନ୍ତୁ ବିଜ୍ଞାନ ଯୁଗରେ ସେପରି ହେଉନାହିଁ । ଲୋକଙ୍କର ବିଜ୍ଞାନ ଜ୍ଞାନ ବଢ଼ିବା ଫଳରେ ଅଂନ୍ଧବିଶ୍ୱାସ କମିଯାଇଛି । ଲୋକେ ସତ୍ୟାସତ୍ୟ ପରୀକ୍ଷା ନକରି କିଛି ଗ୍ରହଣ କରିବାକୁ ନାରାଜ । ମାତ୍ର ଆଜିକାଲିର ପିଲାମାନେ ପ୍ରତ୍ୟେକ କଥାକୁ ନିଠେଇ କରି ଧରୁଛନ୍ତି । ସେମାନେ ବିନା ଯୁକ୍ତି ଓ ବିନା ପ୍ରମାଣରେ କୌଣସି କଥାକୁ ସତ୍ୟ ବୋଲି ମାନିବାକୁ ପ୍ରସ୍ତୁତ ନୁହନ୍ତି । ବର୍ତ୍ତମାନ ସବୁର ପ୍ରମାଣ ଦରକାର । ତେଣୁ ବିନା ଯୁକ୍ତି ବିନା ପ୍ରମାଣରେ ମୁନା ଅଜାଙ୍କ କଥା ମାନିବାକୁ ପ୍ରସ୍ତୁତ ନୁହେଁ ।

ଉକ୍ତ ପ୍ରସଙ୍ଗଟିର ବର୍ଣ୍ଣନା ବେଶ୍ ଶିକ୍ଷଣୀୟ ହୋଇଛି ।

୫। ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।

**(କ) ଆର୍କିମେଡ଼ିସ୍ କିପରି ରାଜାଙ୍କ ମୁକୁଟ ଖାଣ୍ଟି ସୁନାରେ ତିଆରି କି ନାହିଁ ଜାଣିଲେ ?**

ଉ– ଆର୍କିମେଡ଼ିସ୍ ଗୋଟିଏ ପାତ୍ରରେ ପାଣି ପୂର୍ଣ୍ଣକରି ସେଥିରେ ମୁକୁଟଟିକୁ ବୁଡ଼ାଇଲେ । ପାତ୍ରରୁ ଯେତିକି ପାଣି ଉଛୁଳି ପଡ଼ିଲା ତାକୁ ନେଇ ଓଜନ କଲେ । ତା'ପରେ ମୁକୁଟଟିକୁ ବାହାର କରିନେଇ ପାତ୍ରଟିକୁ ପୁଣି ଜଳପୂର୍ଣ୍ଣ କଲେ । ଏଥର ମୁକୁଟ ଓଜନର ଖାଣ୍ଟିସୁନା ଆଣି ସେହି ପାତ୍ରରେ ବୁଡ଼ାଇଲେ । ଏଥର ଯେତିକି ପାଣି ଉଛୁଳି ପଡ଼ିଲା ତାକୁ ଓଜନ କଲେ । ଦୁଇଥର ଉଛୁଳିଥିବା ପାଣିର ଓଜନ ଯଦି ସମାନ ହେଲା, ତେବେ ମୁକୁଟଟି ଖାଣ୍ଟି ସୁନାରେ ତିଆରି । ଯଦି ଓଜନ କମ୍ କିମ୍ବା ବେଶି ହେଲା ତେବେ ମୁକୁଟରେ ଖାଣ୍ଟି ସୁନା ବଦଳରେ କିଛି ନକଲି ଜିନିଷ ମିଶିଛି । ଏହି ସୂତ୍ର ବ୍ୟବହାର କରି ଆର୍କିମେଡ଼ିସ୍ ରାଜାଙ୍କ ମୁକୁଟ ଖାଣ୍ଟି ସୁନାରେ ତିଆରି କି ନୁହେଁ ଜାଣିପାରିଲେ ।

**(ଖ) ଗାଧୋଇବା ସମୟରେ ଆର୍କିମେଡ଼ିସ୍‌ଙ୍କ ମୁଣ୍ଡକୁ କେଉଁକଥା ଜୁଟିଗଲା ?**

ଉ– ଗାଧୋଇବା ସମୟରେ ପାଣିଭର୍ତ୍ତି କୁଣ୍ଡରେ ଆର୍କିମେଡ଼ିସ୍ ପ୍ରବେଶ କରିବା ମାତ୍ରେ ସେଥିରୁ କିଛି ପାଣି ଉଛୁଳି ବାହାରକୁ ଚାଲିଗଲା । ସେ କୁଣ୍ଡ ଭିତରେ ବସିଥିବାବେଳେ ଅନୁଭବ କଲେ, କେହି ଯେପରି ତାଙ୍କୁ ଉପରକୁ



ଠେଲି ଦେଉଛି । କୌଣସି ପଦାର୍ଥ ବା ବସ୍ତୁକୁ ପାଣିରେ ବୁଡ଼ାଇଲେ ତା'ର ଓଜନ କମିଗଲା ପରି ବୋଧହୁଏ । ପଦାର୍ଥ ବା ବସ୍ତୁ ପାଣି ଭିତରେ ଯେତିକି ସ୍ଥାନ ଅଧିକାର କରେ, ସେହି ସ୍ଥାନରେ ଥିବା ପାଣିର ଓଜନ ଯେତିକି, ପଦାର୍ଥ ବା ବସ୍ତୁର ଓଜନ ସେତିକି କମିଯାଏ । ଏହି କଥାଟି ଆର୍କିମେଡ଼ିସ୍‌ଙ୍କ ମୁଣ୍ଡକୁ ଜୁଟିଗଲା, ଯାହାକୁ ଆଧାର କରି ରାଜାଙ୍କ ସୁନା ମୁକୁଟଟି କେତେ ଖାଣ୍ଟି, ତାହା ସେ ଜାଣିପାରିଲେ ।

**(ଗ) ନାଟକର ନାଁ ଶୁଣି ଲୋକେ କାହିଁକି ଆଶ୍ଚର୍ଯ୍ୟାନ୍ୱିତ ହେଲେ ?**

ଉ– ଲେଖକଙ୍କ ସହରକୁ ଥରେ ଏକ ଯାତ୍ରାଦଳ ଆସିଥିଲେ । ସେମାନେ ଭଲ ଭଲ ନାଟକ ଅଭିନୟ କରୁଥିଲେ । କେଉଁଦିନ କେଉଁ ନାଟକ ଅଭିନୀତ ହେବ, ଆଗରୁ ଘୋଷଣା କରୁଥିଲେ । ଦିନେ ସେମାନେ ଏକ ନୂଆ ଧରଣର ନାଟକ କଥା ପ୍ରଚାର କଲେ । ନାଟକର ନାମ ଥିଲା 'ଭାସିଲା ପଥର ବୁଡ଼ିଲା ଶୋଲ' । ନାଟକର ଏଭଳି ନାଁ ଶୁଣି ଲୋକେ ଆଶ୍ଚର୍ଯ୍ୟ ହେଲେ । ପଥର ବୁଡ଼େ, ଶୋଲ ଭାସେ ଏକଥା ସମସ୍ତେ ଜାଣନ୍ତି । କିନ୍ତୁ ଏ ନାଟକ ଦଳ ବିପରୀତ କଥା ପ୍ରଚାର କରୁଥିବାରୁ ଲୋକେ ଆଶ୍ଚର୍ଯ୍ୟ ହେଲେ ।

**(ଘ) ଲୋକମାନେ କେଉଁଥିପାଇଁ ଆର୍କିମେଡ଼ିସ୍‌ଙ୍କୁ ପାଗଳ ବୋଲି ଭାବିଲେ ?**

ଉ– ଆଜିକୁ ଦୁଇହଜାର ବର୍ଷ ପୂର୍ବେ ଇଟାଲୀ ଦେଶରେ ଆର୍କିମେଡ଼ିସ୍ ନାମରେ ଜଣେ ବୈଜ୍ଞାନିକ ଥିଲେ । ସେହି ଦେଶର ରାଜା ଥରେ ନିଜ ପାଇଁ ଏକ ସୁନାମୁକୁଟ ତିଆରି କରିଥିଲେ । ମୁକୁଟଟି ଖାଣ୍ଟି ସୁନାରେ ତିଆରି କି ସେଥିରେ କିଛି ନକଲି ଜିନିଷ ମିଶିଛି ରାଜା ତାହା ଜାଣିବାକୁ ଚାହିଁଲେ । ମୁକୁଟଟିକୁ ନ ଭାଙ୍ଗି କି ନିଆଁରେ ନ ତରଳାଇ ଏହା ଜାଣିବାକୁ ଆର୍କିମେଡ଼ିସ୍‌ଙ୍କୁ ଦାୟିତ୍ୱ ଦିଆଗଲା । ସେ ଥରେ ଗାଧୁଆ କୁଣ୍ଡରେ ଉଲଗ୍ନ ହୋଇ ପଶିଥିବା ବେଳେ କିଛି ଜଳ ଉଛୁଳି ବାହାରିଗଲା । ସେ କୁଣ୍ଡ ଭିତରେ ବସିଥିବା ବେଳେ ତାଙ୍କୁ କିଏ ଉପରକୁ ଠେଲିବା ଭଳି ଲାଗିଲା । ସେଇଥିରୁ ସେ ରାଜା ଦେଇଥିବା ଦାୟିତ୍ୱ ସମାଧାନର ସୂତ୍ର ପାଇଗଲେ । ସେ ହଠାତ୍ କୁଣ୍ଡରୁ ଉଠିପଡ଼ି 'ଇଉରେକା' 'ଇଉରେକା' କହି ଖୁସିରେ ଦାଣ୍ଡରେ ଧାଇଁଲେ । ସେ ଲୁଗା ପିନ୍ଧିବାକୁ ମଧ ଭୁଲିଯାଇଥିଲେ । ଆର୍କିମେଡ଼ିସ୍‌ଙ୍କ ଭଳି ବୈଜ୍ଞାନିକ ଉଲଗ୍ନ ହୋଇ ମଝିଦାଣ୍ଡରେ ଦୌଡୁଥିବା ଦେଖି ଲୋକେ ତାଙ୍କୁ ପାଗଳ ବୋଲି ଭାବିଲେ ।

**(ଙ) କେଉଁ କାରଣରୁ ନାଟକ ଶେଷରେ ଲୋକମାନେ ହତାଶ ହେଲେ ?**

ଉ– 'ଭାସିଲା ପଥର ବୁଡ଼ିଲା ଶୋଲ' ପରି ନାଟକ ନାଁ ଶୁଣି ଲୋକମାନଙ୍କ କୌତୂହଳ ବଢ଼ିଗଲା । ଯାତ୍ରା ଦେଖିବାପାଇଁ ବହୁଆଡୁ ବହୁଲୋକ ଆସି ଭିଡ଼ ଜମାଇଲେ । ଲୋକମାନେ ଟିକେଟ କାଟି ନାଟକ ଦେଖିବାକୁ ଭିତରେ ପଶିଲେ । ପୁଲିସ ବାହାରେ ଶାନ୍ତିଶୃଙ୍ଖଳା ରକ୍ଷା କରିବାପାଇଁ ଜଗି ରହିଲା । ମାତ୍ର ନାଟକ ଦେଖିସାରିବା ପରେ ଲୋକମାନେ ନିରାଶ ହେଲେ । କାରଣ ଯାତ୍ରାରେ ପଥର ନଥିଲା କି ଶୋଲ ନଥିଲା । ନାଟକର ବିଷୟବସ୍ତୁ ନିତିଦିନିଆ ଘଟଣା ପରି ଥିଲା । ନାଟକରେ ନିର୍ଦ୍ଦୋଷ ଲୋକଟିକୁ ପୋଲିସ୍ ଧରିନେଲା, ମାତ୍ର ଗୁଣ୍ଡାମି କରୁଥିବା ଲୋକଟି ନିଶ ଫୁଲାଇ ଚାଲିଗଲା ।



# ବିଶ୍ୱବିଜୟୀ ବିବେକାନନ୍ଦ

• *ଡକ୍ଟର ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନ ସିଂ*

*ଜନ୍ମ : ୬.୮.୧୯୩୩*

## ଲେଖକ ପରିଚୟ

ଡକ୍ଟର ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନ ସିଂ (୧୯୩୩) ଅନୁଗୁଳ ଜିଲ୍ଲା ଆଠମଲ୍ଲିକର ପାପସରା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଜଣେ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ଓ ଭାଷା ବିଶାରଦ ଭାବରେ ଓଡ଼ିଶାରେ ସେ ବେଶ୍ ଜଣାଶୁଣା । ତାଙ୍କ ଲିଖିତ ଶତାଧିକ ପୁସ୍ତକ ମଧ୍ୟରେ *'ସ୍ୱପ୍ନଗନ୍ଧା', 'ରତନ ନାପୁର କାହାଣୀ', 'ଆମେ ସବୁଜ', 'ଶତାବ୍ଦୀ ପୁରୁଷ'* ଇତ୍ୟାଦି ପ୍ରଧାନ।

## ବିଷୟ ସୂଚନା

*'ବିଶ୍ୱବିଜୟୀ ବିବେକାନନ୍ଦ'* ପ୍ରବନ୍ଧରେ ଲେଖକ ଭାରତର ସଂସ୍କୃତି ଓ ପରମ୍ପରାର ମହତ୍ତ୍ୱ ଉଲ୍ଲେଖ କରିଛନ୍ତି। ଏଥିରେ ସ୍ୱାମୀଜୀଙ୍କ ଜୀବନାଦର୍ଶ, ଚିନ୍ତାଧାରା ଏବଂ ମହାନ୍ କାର୍ଯ୍ୟାବଳୀର ଉଲ୍ଲେଖ କରାଯାଇଛି ।

## ସାରକଥା

ଭାରତର ବରପୁତ୍ରମାନଙ୍କ ମଧ୍ୟରେ ସ୍ୱାମୀ ବିବେକାନନ୍ଦ ଅନ୍ୟତମ । ସ୍ୱାମୀଜୀଙ୍କର ପିଲାଦିନର ନାଁ ଥିଲା 'ବିଲେ'। ପିଲାଦିନେ ତାଙ୍କର କାର୍ଯ୍ୟକଳାପ ରହସ୍ୟମୟ ଥିଲା । ଦିନେ ରାତିରେ ବିଲେ ଘରକୁ ନ ଫେରିବାରୁ ସମସ୍ତେ ବ୍ୟସ୍ତ ହୋଇ ପଡ଼ିଲେ । କେହି ଜଣେ ରାତି ଅଧରେ କୌଣସି କାମରେ କଦଳୀବାଡ଼ିକୁ ଯିବାରୁ ବିଲେକୁ ସେଠାରେ ଧ୍ୟାନରେ ବସିଥିବାର ଦେଖିଲା । ମାଆଙ୍କ ପାଖରୁ ରାମାୟଣ କାହାଣୀରୁ ସେ ଶୁଣିଥିଲେ ଯେ, ହନୁମାନ କଦଳୀ ଖାଇବାକୁ ଭଲ ପାଆନ୍ତି । ତେଣୁ କଦଳୀ ବାଡ଼ିକୁ ଆସିଲେ ସେ ହନୁମାନଙ୍କୁ ଦେଖିବେ ବୋଲି ବସି ରହିଥିଲେ । ପିଲାଦିନୁ ତାଙ୍କର ବିଚିତ୍ର କାର୍ଯ୍ୟକଳାପ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଉଥିଲେ ।

ବିଲେଙ୍କର ପିତାଙ୍କ ନାମ ବିଶ୍ୱନାଥ ଦତ୍ତ ଓ ମା'ଙ୍କ ନାମ ଭୁବନେଶ୍ୱରୀ । କଲିକତା ଉଚ୍ଚ ବିଚାରାଳୟରେ ତାଙ୍କ ପିତା ଓକିଲାତି କରୁଥିଲେ । ସେମାନେ ଅତ୍ୟନ୍ତ ଦାନୀ ଓ ଧର୍ମପରାୟଣ ଥିଲେ । ବହୁଦିନ ପର୍ଯ୍ୟନ୍ତ ସେମାନଙ୍କର କୌଣସି ସନ୍ତାନସନ୍ତତି ନ ହେବାରୁ ଭୁବନେଶ୍ୱରୀ କାଶୀର ବୀରେଶ୍ୱର ମହାଦେବଙ୍କୁ ପୂଜାକରି ପୁଅଟିଏ ପାଇଥିଲେ । ସେଇ ପୁଅର ନାଁ ବିଲେ । ୧୮୬୩ ମସିହା ଜାନୁଆରୀ ୧୨ ତାରିଖରେ ବିଲେଙ୍କର ଜନ୍ମ । ପିଲାଦିନେ ତାଙ୍କ ନାଁ ଥିଲା ନରେନ୍ଦ୍ର ଓ ପରେ ତାଙ୍କର ନାଁ ହେଲା ବିବେକାନନ୍ଦ । ବଡ଼ ହେଲାପରେ ପାଠ୍ୟପୁସ୍ତକ ବ୍ୟତୀତ ଅନ୍ୟାନ୍ୟ ବହି ପଢ଼ି ସେ ଜ୍ଞାନଲାଭ କଲେ। କ୍ରମେ ତାଙ୍କ ମନରେ ବିଭିନ୍ନ ବିଷୟରେ ଅନେକ ପ୍ରଶ୍ନ ସୃଷ୍ଟି ହେଲା । ଶ୍ରୀରାମକୃଷ୍ଣଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା ଏବଂ ସେ ତାଙ୍କ ମନରେ ଜାତ ହୋଇଥିବା ସବୁ ପ୍ରଶ୍ନର ସମାଧାନ କରିଦେଲେ । ସବୁ ଧର୍ମ ସମାନ ଏବଂ ମାନବର ସେବାହିଁ ଭଗବାନଙ୍କର ପ୍ରକୃତ ପୂଜା ବୋଲି ସେ ବୁଝାଇଦେଲେ ।

୧୮୮୪ ମସିହାରେ ନରେନ୍ ବି.ଏ. ପାସ୍‌କଲେ । ହଠାତ୍ ତାଙ୍କ ପିତା ସ୍ୱର୍ଗାରୋହଣ କଲେ । ଘରକୁ ଚଳାଇବା ଭାର ତାଙ୍କ ଉପରେ ପଡ଼ିଲା । ତାଙ୍କ ପରିବାରର ଆର୍ଥିକ ଅବସ୍ଥା ଭଲ ନଥିଲା, ତେଣୁ ଅର୍ଥ ଉପାର୍ଜନ କରି ଘର ଚଳାଇବା ନରେନ୍‌ଙ୍କ ପକ୍ଷେ ବହୁ କଷ୍ଟକର ହୋଇପଡ଼ିଲା । କିଛିଦିନ ଶିକ୍ଷକତା କରି ସେ ଗୁଜୁରାଣ ମେଣ୍ଟାଇବାକୁ ଚେଷ୍ଟା କଲେ, ମାତ୍ର ଅଭାବ ଦୂର ହେଲା ନାହିଁ । ଏତେ ଅଭାବ ସତ୍ତ୍ୱେ ସେ ବିଚଳିତ ହେଉ ନଥା'ନ୍ତି ।





ବିବାହ କରି ଘରସଂସାର କରିବା ଅଥବା ଅର୍ଥ ଉପାର୍ଜନ କରି ବିଳାସବ୍ୟସନରେ ଜୀବନ କଟାଇବାକୁ ସେ ଚାହିଁ ନଥିଲେ । ସେ ଶ୍ରୀରାମକୃଷ୍ଣଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଜନସେବାକୁ ଜୀବନର ବ୍ରତଭାବେ ଗ୍ରହଣ କରିନେଲେ । ଶ୍ରୀରାମକୃଷ୍ଣଙ୍କ ସାଧନାପୀଠ ଦକ୍ଷିଣେଶ୍ୱର କାଳିମନ୍ଦିରରେ ରହି ସେ ଗୁରୁଙ୍କ ଆଶୀର୍ବାଦ ଲାଭ କଲେ ।

୧୮୮୬ ମସିହାରେ ଶ୍ରୀରାମକୃଷ୍ଣ ପରମହଂସଙ୍କର ମହାପ୍ରୟାଣ ପରେ ସେ ଭାରତ ଭ୍ରମଣରେ ବାହାରିଲେ । ସେ ବହୁ ସ୍ଥାନରେ ଧର୍ମ ଓ ଈଶ୍ୱରଙ୍କ ସମ୍ବନ୍ଧରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣମାନ ଦେଲେ । ତାଙ୍କ ବକ୍ତୃତା ସମସ୍ତଙ୍କୁ ମୁଗ୍ଧ ଓ ପ୍ରଭାବିତ କଲା । ଶେଷରେ ସେ ରାମେଶ୍ୱରରେ ପହଞ୍ଚିଲେ ଓ ସେଠାରୁ କନ୍ୟାକୁମାରୀ ଗଲେ । କୁମାରୀ ମନ୍ଦିରଠାରୁ ଅଳ୍ପ ଦୂରରେ ସାଗର ମଧ୍ୟରେ ଏକ ଶିଳାଖଣ୍ଡ ଉପରେ ବସି ଧ୍ୟାନସ୍ଥ ଥିବାବେଳେ ତାଙ୍କୁ ଶ୍ରୀରାମକୃଷ୍ଣଙ୍କ ବାଣୀ ଶୁଣାଗଲା; *'ଯା ଲଂଘିଯା ଏ ସମୁଦ୍ର, ଦୂର ଦେଶରେ ଭାରତର ବାଣୀ ପହଞ୍ଚାଇ ଦେ'*।

୧୮୯୩ ମସିହାରେ ଆମେରିକାର ଚିକାଗୋ ସହରରେ ଗୋଟିଏ ବିରାଟ ଧର୍ମସଭାର ଆୟୋଜନ ହେଉଥାଏ । ବିବେକାନନ୍ଦ ଚିକାଗୋ ଗଲେ । ଜାହାଜରେ ଆମେରିକାର ଜଣେ ବିଖ୍ୟାତ ଅଧ୍ୟାପକ ତାଙ୍କର ପାଣ୍ଡିତ୍ୟ ଦେଖି ସେହି ସମ୍ମିଳନୀରେ ଯୋଗ ଦେବାପାଇଁ ସୁବିଧା କରିଦେଲେ ।

୧୮୯୩ ମସିହା ସେପ୍‌ଟେମ୍ବର ୧୧ ତାରିଖ । ଚିକାଗୋର ବିଶ୍ୱ ଧର୍ମସଭାରେ ବହୁ ପଣ୍ଡିତଙ୍କର ସମାଗମ ହୋଇଥାଏ । ସବୁଧର୍ମର ପ୍ରତିନିଧିମାନେ ସେମାନଙ୍କ ଭାଷଣ ଦେଇ ସାରିଥା'ନ୍ତି । ସଭାମଞ୍ଚରେ ଗଭୀର ନୀରବତା । ଭାରତର ଜଣେ ତରୁଣ ସନ୍ନ୍ୟାସୀ କିଛି କହିବେ । କମ୍ ସମୟ ଦିଆଯାଇଛି ତାଙ୍କୁ । ବିବେକାନନ୍ଦ ଆରମ୍ଭ କଲେ – *''ଆମେରିକାବାସୀ ଭାଇ ଓ ଭଉଣୀମାନେ !''* ଶ୍ରୋତାମାନେ ଆନନ୍ଦରେ ତାଳିମାରି ଅଭିନନ୍ଦନ ଜଣାଇଲେ । ଭାରତୀୟ ଧର୍ମ, ଦର୍ଶନ ସମ୍ପର୍କରେ ଭାଷଣ ଦେଇ ସେ ସମସ୍ତଙ୍କୁ ଚମତ୍କୃତ କରିଦେଲେ । ଆମେରିକାର ବିଭିନ୍ନ ସମ୍ବାଦପତ୍ରରେ ତାଙ୍କର ଭାଷଣ ଓ ଫଟୋଚିତ୍ରମାନ ପ୍ରକାଶ ପାଇଲା । ଏସବୁ ପରେ ପଣ୍ଡିତମାନେ ମୁକ୍ତକଣ୍ଠରେ କହିଲେ – *''ସେ ହେଉଛନ୍ତି ମାନବ ଜାତିର ଅଳଙ୍କାର ସଦୃଶ ।''* ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବିଦେଶର ବହୁ ନରନାରୀ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ମାର୍ଗାରେଟ୍ ନୋବେଲ ନାମକ ଜଣେ ମହିଳା ତାଙ୍କର ପ୍ରିୟ ଶିଷ୍ୟା ଥିଲେ । ପରେ ସେ ଭଗିନୀ ନିବେଦିତା ନାମରେ ପରିଚିତା ହେଲେ ।

୧୮୯୭ ମସିହାରେ ସେ 'ରାମକୃଷ୍ଣ ମିଶନ' ପ୍ରତିଷ୍ଠା କଲେ । ଏହି ସେବା ଅନୁଷ୍ଠାନକୁ ଚଳାଇବାପାଇଁ ସ୍ୱାମୀଜୀ ଦେଶ ବିଦେଶରୁ ବହୁ ସାହାଯ୍ୟ ଆଣିଥିଲେ । ଅସ୍ପୃଶ୍ୟତା ଦୂରୀକରଣ, ନାରୀଶିକ୍ଷାର ପ୍ରସାର, ସାମ୍ପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା, ଦରିଦ୍ରର ସେବାର ବାର୍ତ୍ତା ସେ ଦେଶରେ ପ୍ରଚାର କରିଥିଲେ । ଅକ୍ଳାନ୍ତ ପରିଶ୍ରମ କରିବାରୁ ତାଙ୍କର ସ୍ୱାସ୍ଥ୍ୟ ଭଗ୍ନ ହେଲା ଓ ୧୯୦୨ ମସିହା ଜୁଲାଇ ୪ ତାରିଖ ଦିନ ଧ୍ୟାନସ୍ଥ ଅବସ୍ଥାରେ ସେ ଇହଧାମ ତ୍ୟାଗ କଲେ । ଏକାଧାରରେ ସେ ଥିଲେ ଗୁରୁ, ଦେଶପ୍ରେମୀ, ମାନବବାଦୀ ଓ ବିଶ୍ୱପ୍ରେମୀ ।

## କଠିନ ଶବ୍ଦାର୍ଥ

ଶ୍ରୀରାମକୃଷ୍ଣ – ଶ୍ରୀରାମକୃଷ୍ଣ ପରମହଂସ (୧୮୩୬-୧୮୮୬) ବିଖ୍ୟାତ ଯୋଗସିଦ୍ଧ ସନ୍ନ୍ୟାସୀ । ଚିନ୍ତାଶୀଳ – ଯେ ଚିନ୍ତା କରେ । ଗୁଜୁରାଣ – ଦୈନିକ ଖର୍ଚ୍ଚ । ଅବିଚଳିତ – ବ୍ୟସ୍ତ ନହୋଇ । ଅନୁପ୍ରାଣିତ – ଉତ୍ସାହିତ, ପ୍ରଭାବିତ । ବାଗ୍ମିତା – ବକ୍ତୃତା ଦେବାର ଦକ୍ଷତା । ଅସ୍ପୃଶ୍ୟତା – ଛୁଆଁ ଅଛୁଆଁ ଭେଦଭାବ । ଅଧ୍ୟୟନ – ପାଠପଢ଼ା । ନିର୍ବିକାର – ବିକାରହୀନ । ବକ୍ତବ୍ୟ – ଯାହା କହିବା ଉଚିତ, ଭାଷଣ । ମୁଗ୍ଧ – ବିମୋହିତ ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ବିଲେ କଦଳୀ ବାଡ଼ିରେ ବସିବାର କାରଣ କ'ଣ ?**

ଉ– ବିଲେ ମାଆଙ୍କ ପାଖରୁ ରାମାୟଣ କାହାଣୀରୁ ଶୁଣିଥିଲେ ଯେ ହନୁମାନ କଦଳୀ ଖାଇବାକୁ ସୁଖ ପାଆନ୍ତି । ହନୁମାନ ରାତିରେ କଦଳୀ ଖାଇବାକୁ ଆସିବେ ଭାବି ବିଲେ କଦଳୀ ବାଡ଼ିରେ ତାଙ୍କୁ ଦେଖିବାପାଇଁ ବସିଥିଲା ।

**(ଖ) ବିଲେର ଏପରି ନାଁ କାହିଁକି ଦିଆଯାଇଥିଲା ?**

ଉ– ବିଲେଙ୍କର ମାଆ ଭୁବନେଶ୍ୱରୀ କାଶୀର ବୀରେଶ୍ୱର ମହାଦେବଙ୍କୁ ପୂଜାକରି ପୁଅଟିଏ ପାଇଥିବାରୁ ତାଙ୍କର ନାଁ 'ବିଲେ' ଦିଆଯାଇଥିଲା ।

**(ଗ) ରାମକୃଷ୍ଣ ନରେନ୍ଙ୍କୁ କ'ଣ ବୁଝାଇ ଦେଇଥିଲେ ?**

ଉ– ରାମକୃଷ୍ଣ ନରେନ୍ଙ୍କୁ ବୁଝାଇ ଦେଇଥିଲେ ଯେ, ପୃଥିବୀରେ ସବୁଧର୍ମ ସମାନ । ମାନବର ସେବା ହିଁ ଭଗବାନଙ୍କର ପ୍ରକୃତ ପୂଜା ।

**(ଘ) ନରେନ୍ ନିଜ ପରିବାରର ଦାୟିତ୍ୱ କିପରି ସମ୍ଭାଳି ଥିଲେ ?**

ଉ– ନରେନ୍ ଶିକ୍ଷକତା କରି ନିଜ ପରିବାରର ଦାୟିତ୍ୱ ସମ୍ଭାଳି ଥିଲେ । କିନ୍ତୁ ସବୁବେଳେ ଅଭାବ ଅସୁବିଧା ସବୁ ଲାଗି ରହିଥିଲା ।

**(ଙ) ନରେନ୍ ନିଜ ଜୀବନର ଲକ୍ଷ୍ୟକୁ କିପରି ଗ୍ରହଣ କଲେ ?**

ଉ– ଶ୍ରୀରାମକୃଷ୍ଣଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଜନସେବାକୁ ହିଁ ନରେନ୍ ନିଜ ଜୀବନର ଲକ୍ଷ୍ୟ ଭାବରେ ଗ୍ରହଣ କଲେ ।

୨ । ଉତ୍ତର ଲେଖ ।

**(କ) ବିଶ୍ୱ ଧର୍ମସଭା ଆମେରିକାର କେଉଁ ସ୍ଥାନରେ ହୋଇଥିଲା ?**

ଉ– ଆମେରିକାର ଚିକାଗୋ ସହରରେ ବିଶ୍ୱ ଧର୍ମସଭା ହୋଇଥିଲା ।

**(ଖ) ବିବେକାନନ୍ଦ ଶ୍ରୋତାମାନଙ୍କୁ କିପରି ମନ୍ତ୍ରମୁଗ୍ଧ କଲେ ?**

ଉ– ବିବେକାନନ୍ଦ ସର୍ବପ୍ରଥମେ ଶ୍ରୋତାମାନଙ୍କୁ *'ଭାଇ ଓ ଭଉଣୀ'* ବୋଲି ସମ୍ବୋଧନ କଲେ । ତା'ପରେ ଭାରତୀୟ ଧର୍ମ ଓ ଦର୍ଶନ, ହିନ୍ଦୁଧର୍ମର ବିଶେଷତ୍ୱ ଓ ବିଶ୍ୱଭ୍ରାତୃତ୍ୱର ବାଣୀ ଇତ୍ୟାଦି ଚମତ୍କାର ଭାବରେ ବୁଝାଇଦେଇ ବିବେକାନନ୍ଦ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିଦେଲେ ।

**(ଗ) ପଣ୍ଡିତମାନେ ତାହାଙ୍କୁ ମାନବଜାତିର ଅଳଙ୍କାର ବୋଲି କାହିଁକି କହିଥିଲେ ?**

ଉ– ବିବେକାନନ୍ଦ ଭାରତୀୟ ଧର୍ମ ଓ ଦର୍ଶନ, ହିନ୍ଦୁଧର୍ମର ବିଶେଷତ୍ୱ, ବିଶ୍ୱଭ୍ରାତୃତ୍ୱର ବାଣୀ ବିଶ୍ୱ ଧର୍ମସଭାରେ ଚମତ୍କାରଭାବେ ବୁଝାଇ ଦେଇଥିଲେ । ସବୁ ମଣିଷ ଈଶ୍ୱରଙ୍କ ସନ୍ତାନ, ସମସ୍ତେ ଭାଇ ଭାଇ, ମାନବର ସେବାହିଁ ଈଶ୍ୱରଙ୍କ ସେବା – ଏହା ସେ ବୁଝାଇଦେଲେ । ଏଭଳି କଥା ଶୁଣି ପଣ୍ଡିତମାନେ ତାଙ୍କୁ ମାନବ ଜାତିର ଅଳଙ୍କାର ବୋଲି କହିଥିଲେ ।



**(ଘ) 'ରାମକୃଷ୍ଣ ମିଶନ' ଅନୁଷ୍ଠାନଟି କି କି ଲୋକହିତକର କାର୍ଯ୍ୟ କରୁଛି ?**

ଉ– ୧୮୯୭ ମସିହାରେ ବିବେକାନନ୍ଦ 'ରାମକୃଷ୍ଣ ମିଶନ' ନାମକ ସେବା ଅନୁଷ୍ଠାନଟିକୁ ଗଠନ କରିଥିଲେ । ଏହା ଅସ୍ପୃଶ୍ୟତା ନିବାରଣ, ନାରୀଶିକ୍ଷାର ପ୍ରସାର, ସାମ୍ପ୍ରଦାୟିକ ସଦ୍‌ଭାବ ରକ୍ଷା ଓ ଦରିଦ୍ରମାନଙ୍କ ସେବା କାର୍ଯ୍ୟ କରୁଛି ।

**(ଙ) ବିବେକାନନ୍ଦ ସାରା ଦେଶରେ କେଉଁ ବାର୍ତ୍ତା ପ୍ରଚାର କରିଥିଲେ ?**

ଉ– ଅସ୍ପୃଶ୍ୟତା ନିବାରଣ, ନାରୀଶିକ୍ଷାର ପ୍ରସାର, ଦରିଦ୍ରମାନଙ୍କର ସେବା ଓ ସାଂପ୍ରଦାୟିକ ସଦ୍‌ଭାବ ରକ୍ଷା ଆଦିର ବାର୍ତ୍ତା ବିବେକାନନ୍ଦ ସାରା ଦେଶରେ ପ୍ରଚାର କରିଥିଲେ ।

୩ । ସରଳ ଭାଷାରେ ବୁଝାଇ ଲେଖ ।

**(କ) ମାନବର ସେବା ହିଁ ହେଉଛି ଭଗବାନଙ୍କର ପ୍ରକୃତ ପୂଜା ।**

ଉ– *ମାନବର ସେବା ........................ ପ୍ରକୃତ ପୂଜା ।*

ଉଦ୍ଧୃତାଂଶଟି ଡକ୍ଟର ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନ ସିଂଙ୍କ ରଚିତ *'ବିଶ୍ୱବିଜୟୀ ବିବେକାନନ୍ଦ'* ପ୍ରବନ୍ଧରୁ ଉଦ୍ଧୃତ ।

ଏଠାରେ ଲେଖକ, 'ମାନବର ସେବା ଯେ ପ୍ରକୃତ ଭଗବାନଙ୍କର ପୂଜା' – ଭାରତୀୟ ଦର୍ଶନର ଏହି ତତ୍ତ୍ୱକୁ ପ୍ରମାଣିତ କରିଛନ୍ତି ।

ବିବେକାନନ୍ଦ ଜଣେ ପ୍ରତିଭାବାନ୍ ଛାତ୍ର ଥିଲେ । ପାଠ୍ୟପୁସ୍ତକ ବ୍ୟତୀତ ଅନ୍ୟାନ୍ୟ ବହୁ ପୁସ୍ତକ ସେ ପଢ଼ିଥିଲେ । ବୟସ ବଢ଼ିବା ସହିତ ବିଭିନ୍ନ ବିଷୟରେ ତାଙ୍କ ମନରେ ଅନେକ ପ୍ରଶ୍ନ ଜାତ ହେଲା । ଶ୍ରୀରାମକୃଷ୍ଣଙ୍କ ସହ ତାଙ୍କର ସାକ୍ଷାତ୍ ହୋଇଥିଲା । ସେ ତାଙ୍କ ମନରେ ଜାତ ହୋଇଥିବା ସମସ୍ତ ପ୍ରଶ୍ନର ସମାଧାନ କରିଦେଇଥିଲେ । ପୃଥିବୀରେ ସବୁ ଧର୍ମ ସମାନ ଏବଂ ମାନବର ସେବାହିଁ ଭଗବାନଙ୍କର ପ୍ରକୃତ ପୂଜା ବୋଲି ସେ ବୁଝାଇ ଦେଇଥିଲେ । ପରବର୍ତ୍ତୀ ଜୀବନରେ ଶ୍ରୀରାମକୃଷ୍ଣଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଜନସେବାକୁ ହିଁ ଜୀବନର ବ୍ରତଭାବେ ଗ୍ରହଣ କରିଥିଲେ । ଚିକାଗୋଠାରେ ଅନୁଷ୍ଠିତ ବିଶ୍ୱ ଧର୍ମସଭାରେ ମଧ୍ୟ ମାନବ ସେବା ହିଁ ଈଶ୍ୱର ସେବା ବୋଲି ବୁଝାଇ ଦେଇ ସେ ଉପସ୍ଥିତ ପଣ୍ଡିତବର୍ଗଙ୍କର ପ୍ରଶଂସାଭାଜନ ହୋଇଥିଲେ । ଏହି ଲକ୍ଷ୍ୟ ପରିପୂରଣପାଇଁ ସେ ୧୮୯୭ ମସିହାରେ 'ରାମକୃଷ୍ଣ ମିଶନ' ନାମକ ଏକ ସେବା ଅନୁଷ୍ଠାନ ସ୍ଥାପନ କରିଥିଲେ । ଏହି ଅନୁଷ୍ଠାନଟି ଜନସେବାକୁ ମୁଖ୍ୟ ଲକ୍ଷ୍ୟଭାବେ ଗ୍ରହଣ କରିଆସିଛି ।

ବାସ୍ତବରେ ଲେଖକଙ୍କର ଏହି ଉକ୍ତି ଯଥାର୍ଥ ଅଟେ ।

**(ଖ) ସେ ହେଉଛନ୍ତି ମାନବ ଜାତିର ଅଳଙ୍କାର ସଦୃଶ ।**

ଉ– *ସେ ହେଉଛନ୍ତି ........................ ଅଳଙ୍କାର ସଦୃଶ ।*

ଉଦ୍ଧୃତାଂଶଟି ଡକ୍ଟର ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନ ସିଂଙ୍କ ରଚିତ *'ବିଶ୍ୱବିଜୟୀ ବିବେକାନନ୍ଦ'* ପ୍ରବନ୍ଧରୁ ଉଦ୍ଧୃତ ।

ଏଠାରେ ପାଶ୍ଚାତ୍ୟ ପଣ୍ଡିତମାନେ ବିବେକାନନ୍ଦଙ୍କୁ କିପରି ମାନବଜାତିର ଅଳଙ୍କାର ସଦୃଶ ବୋଲି ମତାମତ ଦେଇଥିଲେ ତାହା ଆଲୋଚିତ ହୋଇଛି ।

୧୮୯୩ ମସିହା ସେପ୍ଟେମ୍ବର ୧୧ ତାରିଖରେ ଆମେରିକାର ଚିକାଗୋ ସହରରେ ବିଶ୍ୱ ଧର୍ମ ସଭାର ଆୟୋଜନ ହୋଇଥିଲା । ସଭା ଶେଷରେ ଭାରତର ତରୁଣ ସନ୍ନ୍ୟାସୀ ବିବେକାନନ୍ଦଙ୍କୁ ଅଳ୍ପ ସମୟ କହିବାପାଇଁ ସୁଯୋଗ ମିଳିଥିଲା । ସର୍ବପ୍ରଥମେ 'ଭାଇ ଓ ଭଉଣୀ' ବୋଲି ଉପସ୍ଥିତ ଶ୍ରୋତାଙ୍କୁ ସେ ସମ୍ବୋଧନ କଲେ । ପରେ ଭାରତୀୟ ଧର୍ମ ଓ ଦର୍ଶନ, ହିନ୍ଦୁଧର୍ମର ବିଶେଷତ୍ୱ ଏବଂ ବିଶ୍ୱଭ୍ରାତୃତ୍ୱର ବାଣୀ ସମ୍ପର୍କରେ ସେ ଏପରି ଚମତ୍କାର ଭାବରେ ବୁଝାଇଲେ ଯେ, ଶ୍ରୋତାମାନେ ମନ୍ତ୍ରମୁଗ୍ଧ ହୋଇଗଲେ । ସବୁ ମଣିଷ ଈଶ୍ୱରଙ୍କ ସନ୍ତାନ, ଆମେ ସମସ୍ତେ ଭାଇ ଭାଇ, ମାନବର ସେବା ହିଁ ଈଶ୍ୱରଙ୍କ ସେବା – ତାଙ୍କର ଏଭଳି କଥା ଶୁଣି ସେଠାରେ ଉପସ୍ଥିତ ଥିବା ପଣ୍ଡିତମାନେ କହିଲେ, *"ସେ ହେଉଛନ୍ତି ମାନବ ଜାତିର*

*ଅଳଙ୍କାର ସଦୃଶ''*। କାରଣ ଏହା ପୂର୍ବରୁ ଅନ୍ୟ ସବୁ ଧର୍ମର ଯେଉଁ ପ୍ରତିନିଧିମାନେ ଭାଷଣ ଦେଇଥିଲେ, ସେମାନେ ବିବେକାନନ୍ଦଙ୍କ ପରି କହି ନ ଥିଲେ। ତାଙ୍କର ଏହି ସାରଗର୍ଭକ ବାଣୀମାନ ପଣ୍ଡିତମାନଙ୍କୁ ବେଶ୍ ପ୍ରଭାବିତ କରିପାରିଥିଲା।

ବାସ୍ତବରେ ଲେଖକଙ୍କର ଏହି ବକ୍ତବ୍ୟ ଯଥାର୍ଥ ଅଟେ।

**୪। ''ହନୁମାନ ଅମର। ହନୁମାନ କଦଳୀ ଖାଇବାକୁ ସୁଖ ପାଆନ୍ତି।'' ଏଥିରେ ଦ୍ୱିତୀୟ ବାକ୍ୟରେ ହନୁମାନ ବଦଳରେ 'ସେ' ବସାଇଲେ ବାକ୍ୟଟି ଶୁଣିବାକୁ ଭଲ ଲାଗିବ। ଏହି 'ସେ' ହେଉଛି ଏକ ସର୍ବମାନ ପଦ। ନିମ୍ନରେ ଥିବା ରେଖାଙ୍କିତ ପଦ ସ୍ଥାନରେ ଉପଯୁକ୍ତ ସର୍ବନାମ ବ୍ୟବହାର କରି ବାକ୍ୟଗୁଡ଼ିକ ସଜାଡ଼ି ଲେଖ।**

(କ) ନରେନ୍ଦ୍ର ଛାତ୍ର ଭାବରେ ଥିଲେ ବିଚକ୍ଷଣ। ଅତି ସହଜରେ ପାଠସବୁ ନରେନ୍ଦ୍ରଙ୍କର ମନେରହିଯାଏ।

ଉ– ନରେନ୍ଦ୍ର ଛାତ୍ର ଭାବରେ ଥିଲେ ବିଚକ୍ଷଣ। ଅତି ସହଜରେ ପାଠସବୁ ତାଙ୍କର ମନେ ରହିଯାଏ।

(ଖ) ନରେନ୍ ଶ୍ରୀରାମକୃଷ୍ଣଙ୍କୁ ସାକ୍ଷାତ୍ କଲେ। ଶ୍ରୀରାମକୃଷ୍ଣ ନରେନ୍‌ଙ୍କୁ ଶିଷ୍ୟ ଭାବରେ ଗ୍ରହଣ କଲେ।

ଉ– ନରେନ୍ ଶ୍ରୀରାମକୃଷ୍ଣଙ୍କୁ ସାକ୍ଷାତ୍ କଲେ। ଶ୍ରୀରାମକୃଷ୍ଣ ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କଲେ।

**୫। ନିମ୍ନରେ ଦୁଇଟି ବାକ୍ୟ ଦିଆଯାଇଛି। ସେଥିରେ ଥିବା ସ୍ୱରବର୍ଣ୍ଣ, ବ୍ୟଞ୍ଜନ ବର୍ଣ୍ଣ ଓ ଯୁକ୍ତ ବର୍ଣ୍ଣଗୁଡ଼ିକୁ ବାଛି ଲେଖ।**

ସେ ରାମକୃଷ୍ଣ ମିଶନ ନାମରେ ଏକ ସେବା ଅନୁଷ୍ଠାନ ଗଠନ କରିଥିଲେ। ଏଇ ସେବା ଅନୁଷ୍ଠାନର ପରିଚାଳନା ପାଇଁ ସେ ଦେଶ ବିଦେଶରୁ ଅନେକ ସାହାଯ୍ୟ ସଂଗ୍ରହ କରିଥିଲେ।

ଉ–

| ସ୍ୱରବର୍ଣ୍ଣ | ବ୍ୟଞ୍ଜନ ବର୍ଣ୍ଣ | ଯୁକ୍ତ ବର୍ଣ୍ଣ |
|---|---|---|
| ଏ, ଅ, ଇ, ଉ, ଆ | ସ, ର, ମ, ଶ, ନ, କ,<br>ବ, ଗ, ଠ, ର, ପ, ଚ,<br>ଦ, ହ, ଯ, ଥ,ଲ, ଲ | କୃ, ଷ, ଷ୍ଠ, ସଂ, ଗ୍ର, |

**୬। ନିମ୍ନରେ ଯେଉଁ ଅନୁଚ୍ଛେଦଟି ଦିଆଯାଇଛି, ସେଥିରେ ବିରାମ ଚିହ୍ନ ଦିଆଯାଇ ନାହିଁ। ଠିକ୍ ସ୍ଥାନରେ ଠିକ୍ ଚିହ୍ନଟିକୁ ବସାଇ ଲେଖ।**

ତାହାରି ମଧ୍ୟରେ ସେ ଶୁଣିପାରିଲେ ସତେ ଯେପରି ତାଙ୍କ ଗୁରୁ କହୁଛନ୍ତି ଯା ଲଙ୍ଘିଯା ଏ ସମୁଦ୍ର ଦୂରଦେଶରେ ଯାଇ ଭାରତର ବାଣୀ ପହଞ୍ଚାଇ ଦେ'।

ଉ– ତାହାରି ମଧ୍ୟରେ ସେ ଶୁଣିପାରିଲେ ସତେ ଯେପରି ତାଙ୍କ ଗୁରୁ କହୁଛନ୍ତି, *''ଯା, ଲଙ୍ଘିଯା ଏ ସମୁଦ୍ର। ଦୂରଦେଶରେ ଯାଇ ଭାରତର ବାଣୀ ପହଞ୍ଚାଇ ଦେ।''*

**୭। ଯେପରି 'ଡାକିବାରୁ' 'ଡାକି', 'କହିବାରୁ' 'କହି' ପଦର ବ୍ୟବହାର କରାଯାଏ, ସେହିପରି ତଳପଦଗୁଡ଼ିକର ରୂପ କ'ଣ ହେବ ଲେଖ।**

ଶୁଣିବା, ଜାଣିବା, ବସିବା, ନେବା, ଦେବା, ଖାଇବା, ଦେଖିବା, କରିବା, ପଢ଼ିବା

ଉ– ଶୁଣିବା – ଶୁଣି, ଜାଣିବା – ଜାଣି, ବସିବା – ବସି, ନେବା – ନେଇ, ଦେବା – ଦେଇ, ଖାଇବା – ଖାଇ, ଦେଖିବା – ଦେଖି, କରିବା – କରି, ପଢ଼ିବା – ପଢ଼ି।

**୮। 'ବେଳ' ଶବ୍ଦର ପୂର୍ବରେ 'ଅନେକ' ଶବ୍ଦ ଯୋଡ଼ି ଯେପରି 'ଅନେକ ବେଳ' ହେଉଛି, ସେଇଭଳି 'ଅନେକ' ଶବ୍ଦ ଯୋଡ଼ି ଆଉ କେତୋଟି ନୂତନ ଶବ୍ଦ ଲେଖ।**

ଉ– ଅନେକ ଦିନ, ଅନେକ ବର୍ଷ, ଅନେକ ଲୋକ, ଅନେକ କାମ, ଅନେକ ସମୟ।



**୯। 'ମାତ୍ର' ଶବ୍ଦଟି ବ୍ୟବହାର କରି ଆଉ ତିନୋଟି ବାକ୍ୟ ଲେଖ। ଯେପରି – 'ରାମ ଖେଳପଡ଼ିଆକୁ ଗଲା; ମାତ୍ର ଖେଳିଲା ନାହିଁ।**

ଉ– ହରି ସ୍କୁଲକୁ ଗଲା; ମାତ୍ର ପଢ଼ିଲା ନାହିଁ।

ରଘୁ ମନ୍ଦିରକୁ ଗଲା; ମାତ୍ର ଦିଅଙ୍କୁ ଦେଖିଲା ନାହିଁ।

ରବି ପରିଶ୍ରମ କଲା; ମାତ୍ର ପରୀକ୍ଷାରେ ସଫଳ ହେଲାନାହିଁ।

**୧୦। ମୁଁ ଯାତ ଦେଖିବାକୁ ଯାଇଥିଲି। ଫୁଲରୁ ଫଳ ଜାତ ହୁଏ– ବାକ୍ୟଦୁଇଟିରେ ରେଖାଙ୍କିତ ପଦଦୁଇଟି ଶୁଣିବାକୁ ପ୍ରାୟ ଏକା ପରି; କିନ୍ତୁ ଅର୍ଥ ଅଲଗା। ସେ ଦୁଇଟି ଶବ୍ଦର ଅର୍ଥ ଲେଖ। ସେହିପରି ଏକାଭଳି ଶୁଣାଯାଉଥିବା ଅଥଚ ଭିନ୍ନ ଅର୍ଥ ବୁଝାଉଥିବା ଆଉ କେତୋଟି ଶବ୍ଦ ବାକ୍ୟରେ ବ୍ୟବହାର କର।**

ଉ– ଯାତ – ଯାତ୍ରା

ଜାତ – ଜନ୍ମ

ସେହିପରି -

| | |
|---|---|
| କୁଳ – ବଂଶ | ଚୁଡ଼ା – ଖାଦ୍ୟ ବିଶେଷ |
| କୂଳ – ତଟ | ଚୂଡ଼ା – ଅଗ୍ରଭାଗ |
| ଗୁଣି – ତନ୍ତ୍ରବିଦ୍ୟା | ଚିର – ଦୀର୍ଘକାଳ |
| ଗୁଣୀ – ଗୁଣବାନ୍ | ଚୀର – ଚିରା |

**କୁଳ –** ଉଚ୍ଚକୁଳରେ ରାମ ଜନ୍ମ ହୋଇଥିଲେ।

**କୂଳ –** ମୁଁ ସମୁଦ୍ର କୂଳରେ ବୁଲୁଥିଲି।

**ଗୁଣି –** ଲୋକଟି ଗୁଣି ଅଭ୍ୟାସ କରୁଛି।

**ଗୁଣୀ –** ଗୁଣୀଲୋକର ସମସ୍ତେ ଆଦର କରନ୍ତି।

**ଚୁଡ଼ା –** ପିଲାଟି ଚୁଡ଼ା ଖାଉଛି।

**ଚୂଡ଼ା –** ମନ୍ଦିର ଚୂଡ଼ାରେ ନେତ ଉଡୁଛି।

**ଚିର –** ସେ ଚିରକାଳ ଧରି ରୁଗ୍‌ଣ ଅଟନ୍ତି।

**ଚୀର –** ଦରିଦ୍ର ଲୋକଟି ଚୀର ବସ୍ତ୍ର ପିନ୍ଧିଛି।

**୧୧। 'ଚିନ୍ତା' ଶବ୍ଦ ସହିତ 'ଶୀଳ' ଲାଗିଲେ 'ଚିନ୍ତାଶୀଳ' ହେବ। ସେହିପରି ଆଉ ପାଞ୍ଚଟି ଶବ୍ଦ ସହିତ 'ଶୀଳ' ଲଗାଇ ନୂଆ ଶବ୍ଦ ଲେଖ।**

ଉ– ଦୟାଶୀଳ, କ୍ଷମାଶୀଳ, ଦାନଶୀଳ, ଧର୍ମଶୀଳ, ମନନଶୀଳ।

**୧୨। ଉଦାହରଣକୁ ଲକ୍ଷ୍ୟକରି ଶୂନ୍ୟସ୍ଥାନ ପୂରଣ କର।**

ଉଦାହରଣ – ମୁଁ ସାହିତ୍ୟ ପଢ଼ିଲି। ଆମେ ସାହିତ୍ୟ ପଢ଼ିଲୁ।

(କ) ପିଲାଟି ଆନନ୍ଦିତ ହେଲା। ପିଲାମାନେ .............. ।

(ଖ) ମୁଁ କଟକ ଯାଇଥିଲି। ଆମ୍ଭେ କଟକ .............. ।

(ଗ) ସେ ଦିଲ୍ଲୀ ଯିବ। ସେମାନେ ଦିଲ୍ଲୀ .............. ।

ଉ – (କ) ପିଲାଟି ଆନନ୍ଦିତ ହେଲା। ପିଲାମାନେ ଆନନ୍ଦିତ ହେଲେ।

(ଖ) ମୁଁ କଟକ ଯାଇଥିଲି। ଆମ୍ଭେ କଟକ ଯାଇଥିଲୁ।

(ଗ) ସେ ଦିଲ୍ଲୀ ଯିବ। ସେମାନେ ଦିଲ୍ଲୀ ଯିବେ।

## ତୁମ ପାଇଁ କାମ

୧ । ସ୍ୱାମୀ ବିବେକାନନ୍ଦଙ୍କ ସମ୍ପର୍କରେ ବିଭିନ୍ନ ଲେଖା ସଂଗ୍ରହ କରି ଘରେ ପଢ଼ ।

୨ । ପାଠରେ ଥିବା ଛବି ଭଳି ବିବେକାନନ୍ଦଙ୍କର ଛବିଟିଏ ଅଙ୍କନ କର ।

୩ । ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନ ସିଂହଙ୍କର ଅନ୍ୟାନ୍ୟ ଲେଖା ସଂଗ୍ରହ କରି ପଢ଼ ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

**୧ । ଏକ ପଦରେ କ'ଣ ହେବ ?**

ଯାହାର କିଛି କାମ ନାହିଁ ସେ – ଉ– ବେକାର

ବ୍ୟବସାୟ କରେ ଯେ ସେ – ଉ– ବ୍ୟବସାୟୀ

ଯେଉଁ ଲୋକ ଭ୍ରମଣ କରେ ସେ – ଉ– ଭ୍ରମଣକାରୀ

ଯାହା ସବୁଠାରୁ ଭଲ – ଉ– ସର୍ବୋତ୍ତମ

ଯାହା ସମସ୍ତଙ୍କ ପାଇଁ ପ୍ରୟୋଜନୀୟ – ଉ– ସାର୍ବଜନୀନ

ଯେ ବିଜ୍ଞାନ ଜାଣନ୍ତି ସେ – ଉ– ବୈଜ୍ଞାନିକ

ବକ୍ତୃତା ଦେବାରେ ଯାହାର ଦକ୍ଷତା ଅଛି ସେ – ଉ– ବାଗ୍ମୀ

ହଠାତ୍ ଯାହା ଆଶା କରାଯାଇ ନଥାଏ – ଉ– ଅପ୍ରତ୍ୟାଶିତ

ବିକାରହୀନ ଯେ – ଉ– ନିର୍ବିକାର

ସ୍ୱାମୀ ଓ ସ୍ତ୍ରୀ – ଉ– ଦମ୍ପତି

ଜୀବନର ଶେଷଭାଗ – ଉ– ଉତ୍ତରଜୀବନ

ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ – ଉ– ଆବାଳବୃଦ୍ଧବନିତା

**୨ । ବିପରୀତ ଶବ୍ଦ ଲେଖ ।**

ବିଜୟ, ବିକାର, ଦୟାଳୁ, ଧନୀ, ଦୋଷୀ, ଅନୁରାଗ, ଭୀରୁ, ଅଭାବ, ଆଶା, ପୂର୍ଣ୍ଣ, ପଣ୍ଡିତ, ରତ ।

ଉ – ବିଜୟ– ପରାଜୟ    ବିକାର– ନିର୍ବିକାର

ଦୟାଳୁ– ନିର୍ଦ୍ଦୟ    ଧନୀ– ନିର୍ଦ୍ଧନ

ଦୋଷୀ– ନିର୍ଦ୍ଦୋଷ    ଅନୁରାଗ– ବିରାଗ

ଭୀରୁ– ନିର୍ଭୀକ    ଅଭାବ– ଭାବ

ଆଶା– ନିରାଶା    ପୂର୍ଣ୍ଣ– ଶୂନ୍ୟ

ପଣ୍ଡିତ– ମୂର୍ଖ    ରତ– ବିରତ



**୩ । 'କ' ସ୍ତମ୍ଭର ଶବ୍ଦଗୁଡ଼ିକ ସହିତ 'ଖ' ସ୍ତମ୍ଭର ଶବ୍ଦଗୁଡ଼ିକର ମେଳ କରାଅ ।**

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ସମୃଦ୍ଧ | ପାଣ୍ଡିତ୍ୟ |
| ପାଥେୟ | ସୀମାହୀନ |
| ବିଦ୍ୱତ୍ତା | ସ୍ନେହ |
| ଅଙ୍ଗୀକାର | ଉନ୍ନତ |
| ଅନୁରାଗ | ସ୍ୱୀକାର |
| ଅସୀମ | ବାଟଖର୍ଚ୍ଚ |

ଉ– ସମୃଦ୍ଧ – ଉନ୍ନତ, ପାଥେୟ – ବାଟଖର୍ଚ୍ଚ, ବିଦ୍ୱତ୍ତା – ପାଣ୍ଡିତ୍ୟ, ଅଙ୍ଗୀକାର – ସ୍ୱୀକାର, ଅନୁରାଗ – ସ୍ନେହ, ଅସୀମ – ସୀମାହୀନ ।

**୪ । ସଂକ୍ଷେପରେ ଉତ୍ତର ଦିଅ ।**

**(କ) ବିବେକାନନ୍ଦ କନ୍ୟାକୁମାରୀଠାରେ କି ଅଲୌକିକ ଚେତନା ଲାଭ କଲେ ?**

ଉ– କନ୍ୟାକୁମାରୀଠାରେ ସାଗର ମଧ୍ୟସ୍ଥ ବିରାଟ ଶିଳାଖଣ୍ଡ ଉପରେ ଧ୍ୟାନରେ ବସିଥିବାବେଳେ ସେ ଶୁଣିପାରିଲେ ଗୁରୁ ଶ୍ରୀରାମକୃଷ୍ଣଙ୍କ ନିର୍ଦ୍ଦେଶ, ସମୁଦ୍ର ପାରି ହୋଇ ଅନ୍ୟ ଦେଶରେ ଭାରତୀୟ ଦର୍ଶନକୁ ଉପସ୍ଥାପନ କରିବାର ପ୍ରେରଣା । ଏହାଦ୍ୱାରା ସେ ଅଲୌକିକ ଚେତନା ଲାଭ କଲେ ।

**(ଖ) ଶ୍ରୀରାମକୃଷ୍ଣ କିଏ ?**

ଉ– ଶ୍ରୀରାମକୃଷ୍ଣ ପରମହଂସ ବିଖ୍ୟାତ ଯୋଗସିଦ୍ଧ ସନ୍ନ୍ୟାସୀ ଥିଲେ । ଦକ୍ଷିଣେଶ୍ୱର ତାଙ୍କର ସାଧନାପୀଠ ଥିଲା ଏବଂ ସେ ଶକ୍ତିର ଉପାସକ ଥିଲେ । ନରେନ୍ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ପରବର୍ତ୍ତୀ ଜୀବନରେ ବିଶ୍ୱବିଜୟୀ ବିବେକାନନ୍ଦ ହୋଇପାରିଥିଲେ ।

**(ଗ) ସ୍ୱାମୀ ବିବେକାନନ୍ଦ କେଉଁଠାରେ ଧ୍ୟାନରେ ବସିଥିଲେ ?**

ଉ– ତିନୋଟି ସାଗରର ମିଳନସ୍ଥଳ କନ୍ୟାକୁମାରୀର କୁମାରୀ ମନ୍ଦିରଠାରୁ ଅଳ୍ପ ଦୂରରେ ଏକ ଶିଳାଖଣ୍ଡ ଉପରେ ସ୍ୱାମୀଜୀ ଧ୍ୟାନରେ ବସିଥିଲେ ଓ ଦିବ୍ୟଜ୍ୟୋତି ଲାଭ କରିଥିଲେ । ସେହି ସ୍ଥାନରେ ଥିବା ବିବେକାନନ୍ଦ ମଣ୍ଡପଟିରେ ଏବେ ସ୍ୱାମୀଜୀଙ୍କର ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ରହିଅଛି ।

**(ଘ) 'ମାର୍ଗାରେଟ୍ ନୋବେଲ'ଙ୍କ ବିଷୟରେ ଯାହା ଜାଣ ଲେଖ ।**

ଉ– ବିବେକାନନ୍ଦଙ୍କ ବିଦେଶୀ ଶିଷ୍ୟାଙ୍କ ମଧ୍ୟରେ ମାର୍ଗାରେଟ୍ ନୋବେଲ ଅନ୍ୟତମା ଥିଲେ । ସେ ତାଙ୍କର ପ୍ରିୟ ଶିଷ୍ୟା ହୋଇ ପାରିଥିଲେ । ସେ ବିବେକାନନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ପରେ ସେ ଭଗିନୀ ନିବେଦିତା ନାମରେ ପରିଚିତା ହୋଇଥିଲେ ।

**(ଙ) ବିବେକାନନ୍ଦ ରାମକୃଷ୍ଣ ପରମହଂସଙ୍କର ଶିଷ୍ୟ ହେଲେ କାହିଁକି ?**

ଉ– ଅଧିକରୁ ଅଧିକ ପଢ଼ିବାରୁ ବିବେକାନନ୍ଦଙ୍କ ମନ ଅଧିକ ପ୍ରଶ୍ନିଳ ହୋଇଉଠିଲା । ସେ ଚିନ୍ତାଶୀଳ ହୋଇ ପଡ଼ିଲେ । ଏମିତି ଚିନ୍ତାକୁଳିତ ଥିବା ସମୟରେ ଥରେ ରାମକୃଷ୍ଣଙ୍କ ସହିତ ତାଙ୍କର ଦେଖାହୋଇଗଲା । ଶ୍ରୀରାମକୃଷ୍ଣ ନରେନ୍ଙ୍କ ମନରେ ଜାତ ହୋଇଥିବା ସମସ୍ତ ପ୍ରଶ୍ନର ସମାଧାନ କରିଦେଲେ । ସେ ତାଙ୍କୁ ବୁଝାଇଦେଲେ, ପୃଥିବୀରେ ସବୁଧର୍ମ ସମାନ । ମାନବ ସେବାହିଁ ଈଶ୍ୱର ସେବା । ତେଣୁ ବିବେକାନନ୍ଦ ରାମକୃଷ୍ଣଙ୍କୁ ଗୁରୁ ଭାବରେ ଗ୍ରହଣ କରି ତାଙ୍କର ଶିଷ୍ୟ ହୋଇଗଲେ ।

**(ଚ) କେତେବେଳେ ଓ କେଉଁଠାରେ ଭାରତର ବାଣୀ ଲୋକଙ୍କୁ ଦେବାପାଇଁ ବିବେକାନନ୍ଦଙ୍କୁ ନିର୍ଦ୍ଦେଶ ଆସିଲା ?**

ଉ– ସାରା ଭାରତରେ ବୁଲିବୁଲି ବିବେକାନନ୍ଦ ଧର୍ମ, ସେବା ଓ କର୍ତ୍ତବ୍ୟ ସମ୍ପର୍କରେ ଲୋକଙ୍କୁ ବୁଝାଇଲେ । ଦକ୍ଷିଣ ଭାରତ ଭ୍ରମଣ ଶେଷରେ ସେ ରାମେଶ୍ୱରଠାରୁ କନ୍ୟାକୁମାରୀକୁ ସମୁଦ୍ରରେ ପହଁରି ପହଁରି ଯାଇ ସେଠାରେ ଥିବା ଗୋଟିଏ ପ୍ରଶସ୍ତ ଶିଳା ଉପରେ ବସି ଧ୍ୟାନ ମଗ୍ନ ହୋଇଗଲେ । ଏହି ସମୟରେ ଏକ ଅପୂର୍ବ ଆନନ୍ଦ ଦିବ୍ୟ ଆଲୋକରେ ତାଙ୍କର ଅନ୍ତର ଉଛୁଳି ଉଠିଲା । ତାଙ୍କୁ ଭାରତର ବାଣୀ ସମୁଦ୍ର ଲଙ୍ଘନ କରି ଦୂରଦେଶରେ ପହଞ୍ଚାଇ ଦେବାପାଇଁ ନିର୍ଦ୍ଦେଶ ଆସିଲା ।

**୫ । ସରଳ ଭାଷାରେ ବୁଝାଇ ଲେଖ ।**

**(କ) ଏକାଧାରରେ ସେ ଥିଲେ ଦେଶପ୍ରେମୀ, ବିଶ୍ୱପ୍ରେମୀ ଓ ମାନବପ୍ରେମୀ ଗୁରୁ !**

ଉ – *ଏକାଧାରରେ...............ମାନବପ୍ରେମୀ ଗୁରୁ ।*

ଶଂସିତ ଗଦ୍ୟାଂଶଟି ଡ. ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନ ସିଂଙ୍କ ଲିଖିତ *'ବିଶ୍ୱବିଜୟୀ ବିବେକାନନ୍ଦ'* ପ୍ରବନ୍ଧରୁ ଆନୀତ । ବିବେକାନନ୍ଦଙ୍କ ପ୍ରତିଭା ବିଷୟରେ ଲେଖକ ଏଠାରେ ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି ।

ବିବେକାନନ୍ଦ ଚିକାଗୋ ଧର୍ମ ସମ୍ମିଳନୀରେ ଓଜସ୍ୱିନୀ ଭାଷଣ ଦେଇ ଶ୍ରୋତାମାନଙ୍କ ଶ୍ରଦ୍ଧାଭାଜନ ହୋଇଥିଲେ । ତାଙ୍କର ସୁନାମ ଓ ଜ୍ଞାନ ଗରିମା ପୃଥିବୀସାରା ବ୍ୟାପିଗଲା । ସେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲାପରେ ୧୮୯୭ ମସିହାରେ ରାମକୃଷ୍ଣ ମିଶନ ନାମକ ଏକ ସେବା ଅନୁଷ୍ଠାନ ଗଢ଼ିଥିଲେ । ଏହାର ପରିଚାଳନା ପାଇଁ ସେ ଦେଶ ବିଦେଶରୁ ବହୁ ସାହାଯ୍ୟ ସଂଗ୍ରହ କରିଥିଲେ । ଅସ୍ପୃଶ୍ୟତା ନିବାରଣ, ନାରୀଶିକ୍ଷାର ପ୍ରସାର, ସାମ୍ପ୍ରଦାୟିକ ସଦ୍ଭାବ ଓ ଦରିଦ୍ରର ସେବା ଇତ୍ୟାଦି ବାର୍ତ୍ତା ସେ ଦେଶସାରା ପ୍ରଚାର କରିଥିଲେ । ସାରା ମାନବ ଜାତିକୁ ସେ ଏକ ବୋଲି ଭାବୁଥିଲେ । ଅକ୍ଲାନ୍ତ ପରିଶ୍ରମ ଫଳରେ ତାଙ୍କ ସ୍ୱାସ୍ଥ୍ୟ ଭଗ୍ନ ହେଲା । ସେ ୧୯୦୨ ମସିହା ଜୁଲାଇ ୪ ତାରିଖରେ ଦେହତ୍ୟାଗ କଲେ । ସେ ଏକାଧାରରେ ଥିଲେ ଦେଶପ୍ରେମୀ, ବିଶ୍ୱପ୍ରେମୀ ଓ ମାନବପ୍ରେମୀ ଗୁରୁ । ନିଜ ଜ୍ଞାନ ବଳରେ ସେ କେବଳ ବିଶ୍ୱଜୟ କରି ନଥିଲେ, ବରଂ ସାରା ବିଶ୍ୱରେ ମାନବ ପ୍ରେମର ନୂତନ ବାର୍ତ୍ତା ପ୍ରଚାର କରିଥିଲେ ।

ବାସ୍ତବରେ ଲେଖକ ବିବେକାନନ୍ଦଙ୍କର ଯେଉଁ ସବୁ ଗୁଣାବଳୀ ବର୍ଣ୍ଣନା କରିଛନ୍ତି ତାହା ଯଥାର୍ଥ ଅଟେ ।

**୬ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।**

**(କ) ସ୍ୱାମୀ ବିବେକାନନ୍ଦଙ୍କୁ କାହିଁକି ବିଶ୍ୱବିଜୟୀ କୁହାଯାଇଛି ?**

ଉ– ଆମେରିକାର ଚିକାଗୋ ସହରରେ ଅନୁଷ୍ଠିତ ଧର୍ମ ମହାସଭାରେ ଭାଷଣ ଦେଇ ବିବେକାନନ୍ଦ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲେ । ଭାରତୀୟ ଧର୍ମ ଓ ଦର୍ଶନ, ହିନ୍ଦୁଧର୍ମର ବିଶେଷତ୍ୱ ଓ ବିଶ୍ୱଭ୍ରାତୃତ୍ୱର ବାଣୀ ସେ ଏଭଳି ଚମତ୍କାର ଭାବେ ବୁଝାଇଦେଲେ ଯେ ତାଙ୍କ ଉପରେ ପ୍ରଶଂସା ଅଜାଡ଼ି ହୋଇପଡ଼ିଲା । ସେଠାରେ ଉପସ୍ଥିତ ପଣ୍ଡିତମାନେ ତାଙ୍କୁ *'ସମଗ୍ର ମାନବ ଜାତିର ଅଳଙ୍କାର'* ବୋଲି କହିଲେ । ଏହି ଘଟଣା ପରେ ସ୍ୱାମିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବିଦେଶର ବହୁ ନରନାରୀ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ସେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲାପରେ ରାମକୃଷ୍ଣ ମିଶନ ନାମକ ସେବା ଅନୁଷ୍ଠାନ ଗଢ଼ି ସେବା କାର୍ଯ୍ୟ କରିଥିଲେ । ସେ ଏକାଧାରରେ ଥିଲେ ଦେଶପ୍ରେମୀ, ବିଶ୍ୱପ୍ରେମୀ ଓ ମାନବପ୍ରେମୀ । ସେ ସମଗ୍ର ବିଶ୍ୱକୁ ଜୟ କରି ଭାରତର ଗୌରବ ବଢ଼ାଇଥିଲେ । ଯୁଗ ଯୁଗ ପାଇଁ ସାରା ବିଶ୍ୱକୁ ମାନବ ପ୍ରେମର ଏକ ନୂତନ ବାର୍ତ୍ତା ଶୁଣାଇ ଯାଇଥିଲେ । ତେଣୁ ତାଙ୍କୁ ଯଥାର୍ଥରେ ବିଶ୍ୱବିଜୟୀ ବୋଲି କୁହାଯାଇଛି ।



**(ଖ) ବିବେକାନନ୍ଦ ସାରା ଦେଶରେ କେଉଁ ବାର୍ତ୍ତା ପ୍ରଚାର କରିଥିଲେ ?**

ଉ– ୧୮୯୩ ମସିହା ସେପ୍ଟେମ୍ବର ୧୧ରେ ଆମେରିକାର ଚିକାଗୋ ସହରରେ ଆୟୋଜିତ ଧର୍ମ ସମ୍ମିଳନୀରେ ଭାଷଣ ଦେଇ ବିବେକାନନ୍ଦ ଶ୍ରୋତାମାନଙ୍କୁ ମୁଗ୍ଧ କରିପାରିଥିଲେ । ବିଦେଶର ବହୁ ନରନାରୀ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେ ୧୮୯୭ ମସିହାରେ ରାମକୃଷ୍ଣ ମିଶନ ନାମକ ଏକ ସେବା ଅନୁଷ୍ଠାନ ଗଢ଼ିଥିଲେ । ମାନବ ଜାତିର ସେବା କରିବା ଏହି ଅନୁଷ୍ଠାନର ଲକ୍ଷ୍ୟ ଥିଲା । ଅସ୍ପୃଶ୍ୟତା ନିବାରଣ, ନାରୀଶିକ୍ଷାର ପ୍ରସାର, ସାମ୍ପ୍ରଦାୟିକ ସଦ୍ଭାବ ରକ୍ଷା, ତଥା ଦରିଦ୍ରମାନଙ୍କର ସେବା ଇତ୍ୟାଦିର ବାର୍ତ୍ତା ସେ ସାରା ଦେଶରେ ପ୍ରଚାର କରିଥିଲେ । ସାରା ମାନବ ଜାତିକୁ ସେ ଏକ ବୋଲି କହିଥିଲେ ଏବଂ ସବୁଧର୍ମ ପ୍ରତି ତାଙ୍କର ସମ୍ମାନ ଥିଲା ।

**(ଗ) ବିଲେ କଦଳୀ ବାଡ଼ିରେ ଲୁଚି ବସିଥିଲେ କାହିଁକି ?**

ଉ– ଅନେକ ବେଳୁ ସଞ୍ଜ ବୁଡ଼ି ରାତି ହେଲାଣି । ବିଲେ ଘରକୁ ଫେରି ନ ଥିଲା । ବିଲେକୁ ନ ପାଇ ସମସ୍ତେ ବ୍ୟସ୍ତ ହୋଇପଡ଼ିଲେ । ରାତି ଅଧ ହେଲା । କେହି ଜଣେ କଦଳୀ ବାଡ଼ିକୁ କୌଣସି କାମରେ ଯାଇଥିଲା । ସେ ଦେଖିଲା ବିଲେ କଦଳୀ ବାଡ଼ିରେ ଚକାପକାଇ ବସିଛି । ବିଲେକୁ ଘରକୁ ଅଣାଗଲା । ଏହାପରେ ପ୍ରକୃତ କଥା ଜଣାପଡ଼ିଲା । ମାଆ ପୁଅକୁ ରାମାୟଣ କାହାଣୀ କହନ୍ତି । ମା' ଥରେ କହିଥିଲେ ଯେ ହନୁମାନ ଅମର ଓ ସେ କଦଳୀ ଖାଇବାକୁ ଭଲ ପାଆନ୍ତି । ବିଲେର ଧାରଣା ହେଲା ଯେ ହନୁମାନ ନିଶ୍ଚେ ରାତିରେ କଦଳୀ ଖାଇବାକୁ ଆସିବେ । ତେଣୁ ସେ ହନୁମାନଙ୍କୁ ଦେଖିବାପାଇଁ କଦଳୀ ବାଡ଼ିରେ ଲୁଚି ବସିଥିଲେ ।

**(ଘ) ବିବେକାନନ୍ଦ ରାମକୃଷ୍ଣଙ୍କର ଶିଷ୍ୟ ହେଲେ କିପରି ?**

ଉ– ପିଲାଦିନରୁ ବିବେକାନନ୍ଦ ଅସାଧାରଣ ଶକ୍ତିସମ୍ପନ୍ନ ଥିଲେ । ସେ ପାଠ୍ୟପୁସ୍ତକ ବ୍ୟତୀତ ଅନ୍ୟାନ୍ୟ ଅନେକ ବହି ପଢୁଥିଲେ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ଚିନ୍ତାଶୀଳ ହୋଇପଡ଼ିଲେ । ବିଭିନ୍ନ ବିଷୟରେ ଜାଣିବାପାଇଁ ତାଙ୍କ ମନରେ ଆଗ୍ରହ ବଢ଼ିଲା । ଥରେ ବିବେକାନନ୍ଦଙ୍କର ଶ୍ରୀରାମକୃଷ୍ଣଙ୍କ ସହିତ ସାକ୍ଷାତ୍ ହେଲା । ଶ୍ରୀରାମକୃଷ୍ଣ ତାଙ୍କ ମନର ସବୁ ପ୍ରଶ୍ନର ସମାଧାନ କରିଦେଲେ । ମାନବସେବା ଈଶ୍ୱର ସେବା ବୋଲି ବୁଝାଇଦେଲେ । ବିବାହ କରି ଘରସଂସାର କରିବା କି ବିଳାସୀ ଜୀବନଯାପନ କରିବାକୁ ବିବେକାନନ୍ଦଙ୍କର ଇଚ୍ଛା ନଥିଲା । ତେଣୁ ଶ୍ରୀରାମକୃଷ୍ଣଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଜନସେବାକୁ ଜୀବନର ଲକ୍ଷ୍ୟ ଭାବେ ଗ୍ରହଣ କରିଥିଲେ । ଏହାପରେ ସେ ଶ୍ରୀରାମକୃଷ୍ଣଙ୍କର ସାଧନାପୀଠ କଲିକତା ନିକଟସ୍ଥ ଦକ୍ଷିଣେଶ୍ୱର କାଳୀ ମନ୍ଦିରକୁ ଚାଲିଗଲେ । ସେଠାରେ ସେ ରାମକୃଷ୍ଣଙ୍କ ଶିଷ୍ୟଭାବେ ତାଙ୍କ ପାଖରେ ରହିଲେ ।



# ବୃକ୍ଷଲତା ଆମର ବନ୍ଧୁ

• ଡକ୍ଟର ଜଗନ୍ନାଥ ମହାନ୍ତି
ଜନ୍ମ : ୭.୧.୧୯୩୭
ମୃତ୍ୟୁ : ୧୨.୩.୨୦୧୧

## ଲେଖକ ପରିଚୟ

ଡକ୍ଟର ଜଗନ୍ନାଥ ମହାନ୍ତି (୧୯୩୭)ପୁରୀ ଜିଲ୍ଲାର ଗୋପଥାନା ଅନ୍ତର୍ଗତ ଜଙ୍ଗଲପୁରୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ଜଣେ ବିଶିଷ୍ଟ ଶିଶୁସାହିତ୍ୟ ଲେଖକ ଭାବରେ ସେ ସୁପରିଚିତ। *'ଦରିଆ ଅଜାର ମଜାଦୁନିଆଁ'* ପୁସ୍ତକ ପାଇଁ ସେ ଜାତୀୟ ପୁରସ୍କାର ଓ *'ଶବ୍ଦର କୁହୁକ, ଆଲୁଅର ଲୁଚୁକାଳି'* ପୁସ୍ତକପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି। ସେ ଉଚ୍ଚଶିକ୍ଷା ବିଭାଗରେ ପ୍ରଫେସର ଭାବରେ କାର୍ଯ୍ୟକରି ଅବସର ନେଇଛନ୍ତି।

## ବିଷୟ ସୂଚନା

*'ବୃକ୍ଷଲତା ଆମର ବନ୍ଧୁ'* ପ୍ରବନ୍ଧରେ ବୃକ୍ଷଲତାର ଉପକାରିତା ସହିତ ପରିବେଶ ସୁରକ୍ଷା ଦିଗରେ ଏହାର ମହତ୍ତ୍ୱ ତଥା ଉପାଦେୟତା ସମ୍ପର୍କରେ ଆଲୋକପାତ କରାଯାଇଛି।

## ସାରକଥା

ସୁନ୍ଦର ଶ୍ୟାମଳ ଅରଣ୍ୟ ଭିତରେ ଗୁରୁ ଆଶ୍ରମରେ ଶିଷ୍ୟମାନେ ପାଠ ପଢୁଥିଲେ। ସେମାନେ ପାଠ ପଢ଼ିବା ସହିତ ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ କରୁଥିଲେ। ଥରେ ଗୁରୁ ଶିଷ୍ୟମାନଙ୍କୁ ପରୀକ୍ଷା କରିବାକୁ ଚାହିଁଲେ। ଆଖପାଖରେ ଯେତେ ବୃକ୍ଷଲତା ଅଛନ୍ତି, ସେଥିରୁ ଦରକାରୀ କିଏ ଓ ଅଦରକାରୀ କିଏ ଗୁରୁ ଜାଣିବାକୁ ଇଚ୍ଛାକଲେ। ଶିଷ୍ୟମାନେ ଜଙ୍ଗଲସାରା ବୁଲିଲେ। ବୃକ୍ଷଲତାମାନଙ୍କର ଦୋଷ ଗୁଣ ଅନୁଧାନ କଲେ। ଫେରିଆସି ଗୁରୁଙ୍କୁ ଦରକାରୀ ଓ ଅଦରକାରୀ ବୃକ୍ଷଲତା ବିଷୟରେ ଜଣାଇଲେ। କିନ୍ତୁ ଜଣେ ଶିଷ୍ୟ ବର୍ଷକ ପରେ ଫେରିଲେ। ସେ ଗୁରୁଙ୍କୁ କହିଲେ ଯେ, ସବୁ ଗଛଲତା ଦରକାରୀ। ସମସ୍ତଙ୍କର କିଛି ନା କିଛି ଔଷଧୀୟ ଗୁଣ ଅଛି। ତେଣୁ ଅଦରକାରୀ ଗଛ କିଛି ନାହିଁ। ସେ ହେଉଛନ୍ତି ପ୍ରସିଦ୍ଧ ଚିକିତ୍ସାଶାସ୍ତ୍ର ବିଜ୍ଞାନୀ 'ଚରକ'। ସେ ଚିକିତ୍ସାଶାସ୍ତ୍ର ବିଷୟରେ *'ଚରକ ସଂହିତା'* ଗ୍ରନ୍ଥ ଲେଖିଛନ୍ତି।

ବୃକ୍ଷଲତା ମନୁଷ୍ୟର ଏକାନ୍ତ ଉପକାରୀ ବନ୍ଧୁ। ପୁରାଣରେ କୁହାଯାଇଛି ଯେ ସୁସନ୍ତାନମାନଙ୍କୁ ଜନ୍ମଦେବା ଅପେକ୍ଷା ବୃକ୍ଷରୋପଣ ଅଧିକ ପୁଣ୍ୟ କାର୍ଯ୍ୟ। ପୁରାକାଳରେ ବୃକ୍ଷଲତା ରୋପଣ କରି ଲୋକେ ଆନନ୍ଦ ପାଉଥିଲେ ଓ ବୃକ୍ଷଲତାକୁ ପୂଜା କରୁଥିଲେ। ପ୍ରକୃତି ଓ ପରିବେଶର ସୁରକ୍ଷା, ମୃତ୍ତିକା ସଂରକ୍ଷଣ, ଜଳବାୟୁ ନିୟନ୍ତ୍ରଣ ଏବଂ ମନୁଷ୍ୟକୁ ତା'ର ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ଯୋଗାଇବାରେ ବୃକ୍ଷଲତାଙ୍କର ଅଶେଷ ଭୂମିକା ରହିଛି।

ବୃକ୍ଷଲତା ବର୍ଷା ହେବାରେ ସାହାଯ୍ୟ କରନ୍ତି। ଏବେ ବର୍ଷା ନହେବାର କାରଣ ହେଉଛି ଜଙ୍ଗଲ ନଷ୍ଟ। ଏବେ ବୃଷ୍ଟିର ଯେଉଁ ଅନିୟମିତତା ଦେଖାଦେଉଛି ତାହା ବୃକ୍ଷଲତା ହ୍ରାସ ଦୃଷ୍ଟିରୁ ବହୁ ଦୁର୍ଗତିର କାରଣ ହୋଇଛି। ଆମ ରାଜ୍ୟର କଳାହାଣ୍ଡି ଜିଲ୍ଲାରେ ଅରଣ୍ୟ ସମ୍ପଦର ବିନାଶ କାରଣରୁ ବାରମ୍ବାର ଅନାବୃଷ୍ଟି ଓ ଦୁର୍ଭିକ୍ଷ ଘଟୁଛି। ପୃଥିବୀର ବିଭିନ୍ନ ସ୍ଥାନରେ ମଧ୍ୟ ଏହି କାରଣରୁ ଅନାବୃଷ୍ଟି ଦେଖାଦେଉଛି। ସମଗ୍ର ମାନବଜାତି ଏଥିପାଇଁ ଆଜି ଆତଙ୍କିତ ହୋଇପଡ଼ିଛି।

ବୃକ୍ଷଲତା ଆଲୋକ ସଂଶ୍ଳେଷଣ ପ୍ରକ୍ରିୟାରେ ବାୟୁରୁ ଅଙ୍ଗାରକାମ୍ଳ ଗ୍ୟାସ୍ ଗ୍ରହଣ କରି ଅମ୍ଳଜାନ ଛାଡ଼ନ୍ତି; କିନ୍ତୁ ମନୁଷ୍ୟ ଓ ପଶୁପକ୍ଷୀ କେବଳ ଅମ୍ଳଜାନହିଁ ଗ୍ରହଣ କରିଥା'ନ୍ତି। ତେଣୁ ଏହି ଉଦ୍ଭିଦଜଗତ ଅମ୍ଳଜାନ ଯୋଗାଇ ବାୟୁମଣ୍ଡଳକୁ





ବିଶୁଦ୍ଧ କରନ୍ତି। ଆଜିକାଲି ବଡ଼ ବଡ଼ କଳକାରଖାନା ପ୍ରତିଷ୍ଠା, ଗାଡ଼ିମଟରର ବହୁଳ ବ୍ୟବହାର ଯୋଗୁଁ ବାୟୁମଣ୍ଡଳରେ ପ୍ରଚୁର ଅଙ୍ଗାରକାମ୍ଳ ମିଶୁଛି। ଏହା ମନୁଷ୍ୟର ସ୍ୱାସ୍ଥ୍ୟପକ୍ଷେ ଅତ୍ୟନ୍ତ କ୍ଷତିକାରକ। ବୃକ୍ଷଲତାଗୁଡ଼ିକ ଏହି ଅଙ୍ଗାରକାମ୍ଳ ଗ୍ରହଣ କରି ପରିବେଶକୁ ପ୍ରଦୂଷଣମୁକ୍ତ କରିଥା'ନ୍ତି। ମାତ୍ର ବର୍ତ୍ତମାନ ବୃକ୍ଷଲତା ହ୍ରାସ ପାଉଥିବାରୁ ପରିବେଶ ପ୍ରଦୂଷଣ ବଢ଼ିବାରେ ଲାଗିଛି।

ବୃକ୍ଷଲତା ମୃତ୍ତିକା ସଂରକ୍ଷଣରେ ବିଶେଷ ସାହାଯ୍ୟ କରନ୍ତି। ସେମାନେ ଭୂମି ଭିତରେ ଚେର ଖେଳାଇ ଓ ଉପରେ ଡାଳପତ୍ର ଢାଙ୍କି ବର୍ଷା ଓ ଜଳସ୍ରୋତରୁ ମୃତ୍ତିକାକୁ ରକ୍ଷା କରନ୍ତି। ଜଙ୍ଗଲ ନଥିବା ଅଞ୍ଚଳରେ ସହଜରେ ମାଟି ଧୋଇଯାଏ। ଫଳରେ ଭୂମି ଶୁଷ୍କ, ଟାଙ୍ଗର ଓ ଅନୁର୍ବର ହୋଇପଡ଼େ। ପୂର୍ବରୁ ଶ୍ୟାମଳ ଅରଣ୍ୟାନୀ ପରିପୂର୍ଣ୍ଣ ଥିବା ଅଞ୍ଚଳ ଜଙ୍ଗଲ ନଷ୍ଟ ଫଳରେ ଏବେ ନୀରସ, କଙ୍କରିଳ ଓ ଊଷର ହୋଇଯାଇଛି। ମରୁଭୂମି ସମ୍ପ୍ରସାରଣକୁ ରୋକିବାପାଇଁ ଏବେ ବ୍ୟାପକ ବନୀକରଣ ନିମନ୍ତେ ଉଦ୍ୟମ ହେଉଛି।

ବଣଜଙ୍ଗଲ ନଷ୍ଟ ହେବା ଫଳରେ ମୃତ୍ତିକା କ୍ଷୟ ଘଟି ଜଳଭଣ୍ଡାର, ନଦୀ ଓ ପୁଷ୍କରିଣୀର ଶଯ୍ୟା ପୋତି ହୋଇଥାଏ। ବହୁ ଅର୍ଥବ୍ୟୟରେ ନିର୍ମିତ ଆମ ହୀରାକୁଦ ଜଳଭଣ୍ଡାର ଏହି ବିପଦର ସମ୍ମୁଖୀନ ହେଲାଣି। ଜଳଭଣ୍ଡାରକୁ ଏହି ବିପର୍ଯ୍ୟୟରୁ ରକ୍ଷା କରିବାକୁ ହେଲେ ଚତୁଃପାର୍ଶ୍ୱରେ ଅରଣ୍ୟ ସୃଷ୍ଟି କରିବାକୁ ହେବ। ପୁଣି ଜଙ୍ଗଲ ନଷ୍ଟ ହେଉଥିବାରୁ କାଠ, ଲାଖ, ମହୁ, ଝୁଣା ଆଦି ଜଙ୍ଗଲଜାତ ଦ୍ରବ୍ୟର ମୂଲ୍ୟ ହୁ ହୁ ବଢ଼ିଚାଲିଛି, କାରଣ ଏ ଦ୍ରବ୍ୟଗୁଡ଼ିକ ମିଳୁନାହିଁ। ପୁଣି ଏହାଦ୍ୱାରା ପଶୁପକ୍ଷୀ ମଧ୍ୟ ଲୋପ ପାଇଗଲେଣି। ଅରଣ୍ୟରୁ ମିଳୁଥିବା ବହୁ ଔଷଧ, ଖାଦ୍ୟପଦାର୍ଥ ଓ ଅନ୍ୟାନ୍ୟ କଞ୍ଚାମାଲର ଅଭାବ ବଢ଼ିଚାଲିଛି। ଆମମାନଙ୍କର ପରମ କର୍ତ୍ତବ୍ୟ ହେଉଛି ଅରଣ୍ୟର ଯତ୍ନ ନେଇ ପଶୁପକ୍ଷୀ ଓ ଜଙ୍ଗଲଜାତ ପଦାର୍ଥର ସୁରକ୍ଷା କରିବା।

ଉଦ୍ଭିଦ ଓ ପ୍ରାଣୀ ପରସ୍ପର ନିର୍ଭରଶୀଳ। ପ୍ରାଣୀଜଗତ ବିନା ଉଦ୍ଭିଦଜଗତ ବଞ୍ଚିପାରେ, ମାତ୍ର ଉଦ୍ଭିଦଜଗତ ବ୍ୟତୀତ ପ୍ରାଣୀଜଗତ ତିଷ୍ଠିବା ଅସମ୍ଭବ। ବାୟୁମଣ୍ଡଳର ବିଶୁଦ୍ଧତା, ମୃତ୍ତିକା ସଂରକ୍ଷଣ, ବିଭିନ୍ନ ଖାଦ୍ୟ, ପାନୀୟ, ବସ୍ତ୍ର, ବାସଗୃହ ଇତ୍ୟାଦିପାଇଁ ଉଦ୍ଭିଦଜଗତ ନିକଟରେ ପ୍ରାଣୀଜଗତ ଏକାନ୍ତ ଋଣୀ। ଜନସଂଖ୍ୟାର ବୃଦ୍ଧି ହେତୁ ଉଦ୍ଭିଦଜଗତ ବହୁ ଚାପର ସମ୍ମୁଖୀନ। କ୍ରମଶଃ ଜଙ୍ଗଲ ନଷ୍ଟ ହେବା ଶୁଭ ଲକ୍ଷଣ ନୁହେଁ। ଏହାକୁ ନ ରୋକିଲେ ମାନବ ସମାଜ ଦୁର୍ଦ୍ଦଶାଗ୍ରସ୍ତ ହେବ। ବୃକ୍ଷଲତା ଆମର ବନ୍ଧୁ। ଅରଣ୍ୟ ସୃଷ୍ଟି ଆମର ଲକ୍ଷ୍ୟ ହେବା ଉଚିତ। ଏଥିପାଇଁ ଆମ ଦେଶରେ ମୃତ୍ତିକା ସଂରକ୍ଷଣ, ବନ ସଂରକ୍ଷଣ, ସାମାଜିକ ବନୀକରଣ ଆଦି ଯୋଜନା କାର୍ଯ୍ୟକାରୀ କରାଯାଉଛି। ବୃକ୍ଷଲତାକୁ ସବୁଜ ସ୍ୱର୍ଣ୍ଣ କୁହାଯାଏ। ତେବେ ଏହା ସୁନାଠାରୁ ମଧ୍ୟ ବହୁ ଗୁଣରେ ମୂଲ୍ୟବାନ୍। ଆମେ ଏହି ଅମୂଲ୍ୟ ବନସମ୍ପଦର ସୁରକ୍ଷା ଓ ବିକାଶ ନ କଲେ ଆମର ସ୍ଥିତି ବିପନ୍ନ ଓ ଉନ୍ନତି ଅସମ୍ଭବ ହୋଇପଡ଼ିବ।

## କଠିନ ଶବ୍ଦାର୍ଥ

ସମିଧ – ହୋମକାଠ। ଅନୁଧାନ – ବିଚାର ଆଲୋଚନା, ପରୀକ୍ଷା ନିରୀକ୍ଷା। ଅରଣ୍ୟାନୀ – ଘନଜଙ୍ଗଲ। ଊଷର – ଅନୁର୍ବର। ମନୋନିବେଶ କର – ମନଦିଅ। ନିର୍ବିଚାର – ବିଚାର ନକରି। ବନୀକରଣ – ନୂଆ ବଣ ସୃଷ୍ଟି କରିବା। ଦୁର୍ଲଭ – ବିରଳ। ସବୁଜସ୍ୱର୍ଣ୍ଣ – ଗଛଲତାକୁ ଏଠାରେ ସୁନାପରି ମୂଲ୍ୟବାନ୍ ବୋଲି କୁହାଯାଇଛି। ଶ୍ୟାମଳ – ସବୁଜ। ଅଧ୍ୟୟନରତ – ପାଠପଢ଼ାରେ ବ୍ୟସ୍ତ। ସୀମିତ – ସୀମାବଦ୍ଧ। ବିଳମ୍ବ – ଡେରି। ସ୍ୱଗୃହକୁ – ନିଜ ଘରକୁ। ବୃକ୍ଷରୋପଣ – ଗଛ ଲଗାଇବା। ଦୈନନ୍ଦିନ – ନିତିଦିନ। ଅବାସ୍ତବ – ଯାହା ବାସ୍ତବ ନୁହେଁ। ଉପାଦେୟତା – ଆବଶ୍ୟକୀୟ ଯୋଗ୍ୟତା। ଊର୍ଦ୍ଧ୍ୱ – ଅଧିକ। ଅନିୟମିତ – ନିୟମିତ ନୁହେଁ, ଅସଂଯତ। ଦୁର୍ଗତି – ବିପର୍ଯ୍ୟୟ। ବିବେଚିତ – ପରିଗଣିତ। ଅନାବୃଷ୍ଟି – ବୃଷ୍ଟିହୀନତା। ଆତଙ୍କିତ – ଭୟଭୀତ। ପ୍ରଦୂଷଣମୁକ୍ତ – ଅଶୁଚିକରଣରୁ ମୁକ୍ତ, ବିଶୁଦ୍ଧ। ଢାଙ୍କି – ଆଚ୍ଛାଦନ କରି। ସଙ୍କୁଚିତ – କମେଇବା, କମିବା। ଅନୁରୂପ – ଏହିପରି। ବିସ୍ତୃତ – ବ୍ୟାପକ। ଦୁର୍ମୂଲ୍ୟ – ବହୁମୂଲ୍ୟ। ଅରଣ୍ୟଲବ୍ଧ

– ଅରଣ୍ୟରୁ ମିଳୁଥିବା । ଦୁଷ୍କର୍ମ – ମନ୍ଦକାର୍ଯ୍ୟ । ଦୁର୍ଦ୍ଦଶା – ଦୁଃଖ, ଦୁରବସ୍ଥା, ଦୁର୍ଭାଗ୍ୟ । ବିନାଶ – ଧ୍ୱଂସ । ଅମୂଲ୍ୟ – ଯାହାର ମୂଲ୍ୟ କଳନା କରିହେବ ନାହିଁ । ବିପନ୍ନ – ବିପଦରେ ପଡ଼ିଥିବା । ପ୍ରତ୍ୟାବର୍ତ୍ତନ – ଫେରିବା । ବ୍ୟବହାର୍ଯ୍ୟ – ବ୍ୟବହାରଯୋଗ୍ୟ । ହ୍ରାସ – କମିବା । ଅନୁମେୟ – ଅନୁମାନଯୋଗ୍ୟ । କଙ୍କରିଳ – ପଥୁରିଆ । ସଂପ୍ରସାରଣ – ବୃଦ୍ଧି । ନିର୍ବିଚାର – ବିଚାର ନ କରି ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ଶିଷ୍ୟ ଜଣକ ଗୁରୁଙ୍କ ପ୍ରଶ୍ନର କି ଉତ୍ତର ଦେଇଥିଲେ ?**

ଉ – ଶିଷ୍ୟ ଜଣକ ଗୁରୁଙ୍କୁ କହିଲେ, *"ଗୁରୁଦେବ, ମୁଁ କେତେ ଗାଁଗଣ୍ଡା, ବଣଜଙ୍ଗଲ ଓ ପାହାଡ଼ପର୍ବତ ବୁଲିଲି । କେଉଁଠି ଗୋଟିଏ ହେଲେ ଅଦରକାରୀ ଗଛ ବା ଲତା ଦେଖିଲି ନାହିଁ । ପ୍ରତ୍ୟେକ ଗଛଲତାର ଉପକାରିତା ଅଛି । ପ୍ରତ୍ୟେକ ଉଦ୍ଭିଦରେ ଔଷଧଗୁଣ ଭରି ରହିଛି । ସତେ ଯେପରି ମଣିଷ ଓ ପଶୁପକ୍ଷୀଙ୍କୁ ରୋଗମୁକ୍ତ କରି ସେମାନଙ୍କୁ ସୁସ୍ଥ ସବଳ ରଖିବାପାଇଁ ସେମାନେ ଜନ୍ମ ନେଇଛନ୍ତି ।"*

**(ଖ) ଚରକ କେଉଁ ଶାସ୍ତ୍ର ଲେଖି ପ୍ରସିଦ୍ଧି ଲାଭ କରିଛନ୍ତି ?**

ଉ – ଚରକ *'ଚରକ ସଂହିତା'* ଶାସ୍ତ୍ର ଲେଖି ପ୍ରସିଦ୍ଧି ଲାଭ କରିଛନ୍ତି ।

**(ଗ) ବୃକ୍ଷରୋପଣ ଅଧିକ ପୁଣ୍ୟକାର୍ଯ୍ୟ ବୋଲି କାହିଁକି କୁହାଯାଇଛି ?**

ଉ – ବୃକ୍ଷ ମନୁଷ୍ୟର ଏକାନ୍ତ ଉପକାରୀ ବନ୍ଧୁ । ତେଣୁ ସୁସନ୍ତାନମାନଙ୍କୁ ଜନ୍ମଦେବା ଅପେକ୍ଷା ବୃକ୍ଷରୋପଣ ଅଧିକ ପୁଣ୍ୟକାର୍ଯ୍ୟ ବୋଲି ପୁରାଣରେ କୁହଯାଇଛି । ଅତୀତକାଳରେ ବୃକ୍ଷରୋପଣ କରି ଲୋକେ ଆନନ୍ଦଲାଭ କରୁଥିଲେ ।

**(ଘ) ଆଲୋକ ସଂଶ୍ଳେଷଣ ପ୍ରକ୍ରିୟାରେ ବୃକ୍ଷଲତା କ'ଣ କରନ୍ତି ?**

ଉ – ବୃକ୍ଷଲତା ଆଲୋକ ସଂଶ୍ଳେଷଣ ପ୍ରକ୍ରିୟାରେ ବାୟୁରୁ ଅଙ୍ଗାରକାମ୍ଳ ବାଷ୍ପ ଗ୍ରହଣ କରି ଅମ୍ଳଜାନ ଛାଡ଼ନ୍ତି ।

**(ଙ) ବୃକ୍ଷଲତା ନିକଟରେ ଆମେ ଋଣୀ ବୋଲି କହିବାର କାରଣ କ'ଣ ?**

ଉ – ବାୟୁମଣ୍ଡଳର ବିଶୁଦ୍ଧତା, ବୃଷ୍ଟିପାତ, ମୃତ୍ତିକା ସଂରକ୍ଷଣ, ବିଭିନ୍ନ ଖାଦ୍ୟ, ପାନୀୟ, ବସ୍ତ୍ର ଓ ବାସଗୃହ ଇତ୍ୟାଦି ପାଇଁ ଆମେ ବୃକ୍ଷଲତା ନିକଟରେ ଏକାନ୍ତ ଋଣୀ ଅଟୁ ।

୨ । ଉତ୍ତର ଲେଖ ।

**(କ) ଆମ ଓଡ଼ିଶାର କେଉଁ ଅଞ୍ଚଳରେ ଅଳ୍ପବୃଷ୍ଟି ହୋଇଥାଏ ?**

ଉ – ଆମ ଓଡ଼ିଶାର କଳାହାଣ୍ଡି ଜିଲ୍ଲାରେ ଅଳ୍ପବୃଷ୍ଟି ହୋଇଥାଏ ।

**(ଖ) ଜଙ୍ଗଲ କାଟିଦେବାଦ୍ୱାରା ଆମର କି କି କ୍ଷତି ହେଉଛି ?**

ଉ – ଜଙ୍ଗଲ କାଟିଦେବାଦ୍ୱାରା ମୃତ୍ତିକା କ୍ଷୟ ହୋଇ ମାଟି ଶୁଷ୍କ, ଟାଙ୍ଗର ଓ ଅନୁର୍ବର ହୋଇଯାଉଛି । ମରୁଭୂମିର ସଂପ୍ରସାରଣ ଘଟୁଛି । ମୃତ୍ତିକା କ୍ଷୟ ଯୋଗୁଁ ଜଳଭଣ୍ଡାର ଓ ନଦୀଶଯ୍ୟା ପୋତି ହୋଇଯାଉଛି । ଅରଣ୍ୟଲବ୍ଧ ବହୁ ଔଷଧ, ଖାଦ୍ୟପଦାର୍ଥ ଓ କଞ୍ଚାମାଲର ଅଭାବ ବଢ଼ିଚାଲିଛି । ଏପରିକି ବହୁ ପଶୁପକ୍ଷୀ ମଧ୍ୟ ଲୋପ



ପାଇଯାଉଛନ୍ତି । ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ଗ୍ୟାସ୍‌ର ପରିମାଣ ବୃଦ୍ଧିପାଇ ବାୟୁମଣ୍ଡଳକୁ ପ୍ରଦୂଷିତ କରୁଛି ଏବଂ ବୃଷ୍ଟିପାତର ପରିମାଣ ହ୍ରାସପାଇ ମରୁଡ଼ି ପରିସ୍ଥିତି ସୃଷ୍ଟି ହେଉଛି ।

**(ଗ) ବୃକ୍ଷଲତାକୁ 'ସବୁଜ ସ୍ୱର୍ଣ୍ଣ' ବୋଲି କହିବାର ଯଥାର୍ଥତା କ'ଣ ?**

ଉ – ବୃକ୍ଷଲତା ବାୟୁମଣ୍ଡଳର ବିଶୁଦ୍ଧତା ରକ୍ଷା କରେ, ବୃଷ୍ଟିପାତର ପରିମାଣ ବୃଦ୍ଧି କରେ, ମୃତ୍ତିକା ସଂରକ୍ଷଣ କରେ, ବିଭିନ୍ନ ଖାଦ୍ୟ, ପାନୀୟ, ବସ୍ତ୍ର, ବାସଗୃହ ଇତ୍ୟାଦି ପ୍ରଦାନ କରେ । ମାନବ ସଭ୍ୟତା ଓ ଜୀବନକୁ ବୃକ୍ଷଲତାର ଦାନ ଅତୁଳନୀୟ । ତେଣୁ ଏହାକୁ 'ସବୁଜସ୍ୱର୍ଣ୍ଣ' ବୋଲି କୁହାଯାଏ । ଯଥାର୍ଥରେ ଏହା ସୁନାଠାରୁ ଅଧିକ ମୂଲ୍ୟବାନ୍ ।

**(ଘ) କେଉଁ ଉପାୟରେ ଜଙ୍ଗଲର ବୃଦ୍ଧି କରାଯାଇ ପାରିବ ?**

ଉ – ସାମାଜିକ ବନୀକରଣ, ମୃତ୍ତିକା ସଂରକ୍ଷଣ, ବନ ସଂରକ୍ଷଣ ଯୋଜନାକୁ ଫଳପ୍ରଦ କରି ଆମେ ନୂତନ ଅରଣ୍ୟ ସୃଷ୍ଟି ଓ ଜଙ୍ଗଲ ସୁରକ୍ଷା ଦିଗରେ କାର୍ଯ୍ୟ କଲେ ଜଙ୍ଗଲର ବୃଦ୍ଧି କରାଯାଇ ପାରିବ ।

**(ଙ) ମୃତ୍ତିକା କ୍ଷୟ ଘଟିବା ଫଳରେ କି କି କ୍ଷତି ହୁଏ ?**

ଉ – ମୃତ୍ତିକା କ୍ଷୟ ଘଟିବା ଫଳରେ ଜଳଭଣ୍ଡାର ଓ ନଦୀ, ପୁଷ୍କରିଣୀର ଶଯ୍ୟା ପୋତି ହୋଇଯାଏ । ଆମ ରାଜ୍ୟର ହୀରାକୁଦ ଜଳଭଣ୍ଡାର ଅନୁରୂପ ବିପଦର ସମ୍ମୁଖୀନ ହୋଇଛି । ପୁନଶ୍ଚ ମୃତ୍ତିକା କ୍ଷୟ ଫଳରେ ଭୂମି ଶୁଷ୍କ, ଟାଙ୍ଗର ଓ ଅନୁର୍ବର ହୋଇ ପଡ଼ିରହେ ।

**(ଚ) ଉଦ୍ଭିଦ ଜଗତର ବିନା ସାହାଯ୍ୟରେ ପ୍ରାଣୀ ଜଗତ ବଞ୍ଚିବା ଅସମ୍ଭବ କାହିଁକି ?**

ଉ – ପ୍ରାଣୀଜଗତର ବିନା ସାହାଯ୍ୟରେ ଉଦ୍ଭିଦଜଗତ ବଞ୍ଚିପାରେ; ମାତ୍ର ଉଦ୍ଭିଦଜଗତ ବିନା ପ୍ରାଣୀଜଗତ ବଞ୍ଚିବା ଅସମ୍ଭବ । ବାୟୁମଣ୍ଡଳର ବିଶୁଦ୍ଧତା, ବୃଷ୍ଟିପାତ, ମୃତ୍ତିକା ସଂରକ୍ଷଣ, ବିଭିନ୍ନ ଖାଦ୍ୟ, ପାନୀୟ, ବସ୍ତ୍ର, ବାସଗୃହ ଇତ୍ୟାଦି ପାଇଁ ପ୍ରାଣୀଜଗତ ଉଦ୍ଭିଦଜଗତ ଉପରେ ଏକାନ୍ତ ନିର୍ଭରଶୀଳ ।

୩ । ସରଳ ଭାଷାରେ ବୁଝାଇ ଲେଖ ।

**(କ) ସତେ ଯେପରି ମଣିଷ ଓ ପଶୁପକ୍ଷୀଙ୍କୁ ରୋଗମୁକ୍ତ କରି ସେମାନଙ୍କୁ ସୁସ୍ଥସବଳ ରଖିବା ପାଇଁ ସେମାନେ ଜନ୍ମ ନେଇଛନ୍ତି ।**

ଉ – *ସତେ ଯେପରି .............................. ଜନ୍ମ ନେଇଛନ୍ତି ।*

ଉକ୍ତ ଗଦ୍ୟାଂଶଟି ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଲିଖିତ *'ବୃକ୍ଷଲତା ଆମର ବନ୍ଧୁ'* ବିଷୟରୁ ଉଦ୍ଧୃତ । ବୃକ୍ଷଲତାର ଉପକାରିତା ଦର୍ଶାଇ ଚରକ ତାଙ୍କ ଗୁରୁଙ୍କୁ ଏପରି କହିଛନ୍ତି ।

ଥରେ ଗୁରୁ ଶିଷ୍ୟମାନଙ୍କୁ ପରୀକ୍ଷା କରିବାପାଇଁ ଚାହିଁଲେ । କେଉଁ ବୃକ୍ଷଲତାଗୁଡ଼ିକ ମନୁଷ୍ୟପାଇଁ ଦରକାରୀ ଓ କେଉଁଗୁଡ଼ିକ ଅଦରକାରୀ ପରୀକ୍ଷା କରି ଶିଷ୍ୟମାନଙ୍କୁ ଜଣାଇବାକୁ କହିଲେ । ଶିଷ୍ୟମାନେ ଜଙ୍ଗଲକୁ ଯାଇ କିଛି ଦିନ ପରେ ଫେରିଆସି କେଉଁ ବୃକ୍ଷଲତାଗୁଡ଼ିକ ଦରକାରୀ ଓ କେଉଁଗୁଡ଼ିକ ଅଦରକାରୀ ତାହା ଗୁରୁଙ୍କୁ ଜଣାଇଲେ । କିନ୍ତୁ ଚରକ ନାମକ ଜଣେ ଶିଷ୍ୟ ବର୍ଷକ ପରେ ଫେରିଲେ । ସେ ଗୁରୁଙ୍କୁ କହିଲେ ଯେ ସୃଷ୍ଟିରେ ପ୍ରତ୍ୟେକ ବୃକ୍ଷଲତା ଦରକାରୀ । ସେ କେତେ ଗାଁଗଣ୍ଡା, ବଣଜଙ୍ଗଲ, ପାହାଡ଼ ପର୍ବତ ବୁଲିଥିଲେ ମଧ୍ୟ କୌଣସିଠାରେ ଅଦରକାରୀ ବୃକ୍ଷଟିଏ ପାଇଲେ ନାହିଁ । ସମସ୍ତଙ୍କର କିଛି ନା କିଛି ଔଷଧୀୟ ଗୁଣ ଅଛି । ମଣିଷ ଓ ପଶୁପକ୍ଷୀଙ୍କ ରୋଗ ଭଲ କରି ସେମାନଙ୍କୁ ସୁସ୍ଥସବଳ ରଖିବା ପାଇଁ ଉଦ୍ଭିଦମାନେ ଜନ୍ମ ନେଇଛନ୍ତି । ତେଣୁ କୌଣସି ବୃକ୍ଷଲତା ଅଦରକାରୀ ନୁହେଁ ।

ବାସ୍ତବରେ ଲେଖକ ବୃକ୍ଷଲତାମାନଙ୍କର ଯେଉଁ ଉପାଦେୟତା ସମ୍ପର୍କରେ ଆଲୋକପାତ କରିଛନ୍ତି, ତାହା ଯଥାର୍ଥ ଅଟେ ।

**(ଖ) ସମ୍ପ୍ରତି ବୃକ୍ଷଲତା ଅଭାବରେ ମନୁଷ୍ୟ କିପରି ବିପଦର ସମ୍ମୁଖୀନ ହୋଇଛି, ତାହା ସହଜରେ ଅନୁମେୟ ।**

ଉ – *ସମ୍ପ୍ରତି ବୃକ୍ଷଲତା ............................ ସହଜରେ ଅନୁମେୟ ।*

ଉଦ୍ଧୃତାଂଶଟି ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଲିଖିତ '*ବୃକ୍ଷଲତା ଆମର ବନ୍ଧୁ*' ପ୍ରବନ୍ଧରୁ ଆନୀତ । ଏଠାରେ ଲେଖକ ବୃକ୍ଷଲତା ବିନା ମନୁଷ୍ୟ ଭୋଗୁଥିବା ଦୁର୍ଦ୍ଦଶା ସମ୍ପର୍କରେ ଆଲୋକପାତ କରିଛନ୍ତି ।

ବୃକ୍ଷଲତା ମନୁଷ୍ୟର ଏକାନ୍ତ ଉପକାରୀ ବନ୍ଧୁ । ସେମାନେ ମନୁଷ୍ୟର ଯେତେ ଉପକାର କରନ୍ତି, ତାହା କଳନା କରାଯାଇପାରିବ ନାହିଁ । ପରିବେଶ ସୁରକ୍ଷା, ମୃତ୍ତିକା ସଂରକ୍ଷଣ, ଜଳବାୟୁ ନିୟନ୍ତ୍ରଣ ତଥା ମନୁଷ୍ୟକୁ ଖାଦ୍ୟ ଓ ତା'ର ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ଯୋଗାଇବାରେ ବୃକ୍ଷଲତାର ଅଶେଷ ଭୂମିକା ରହିଛି । ବୃକ୍ଷଲତା ଅଭାବରେ ଅନିୟମିତ ବର୍ଷା ଯୋଗୁଁ ପୃଥିବୀର ବହୁ ଦେଶ ଦୁର୍ଗତିର ସମ୍ମୁଖୀନ ହେଉଛନ୍ତି । ବିଭିନ୍ନ ସ୍ଥାନରେ ଅନାବୃଷ୍ଟି ହୋଇ ଦୁର୍ଭିକ୍ଷ ଦେଖାଯାଉଛି । ବୃକ୍ଷଲତାର ଅଭାବରେ ବାୟୁରେ ଅଙ୍ଗାରକାମ୍ଳ ବାଷ୍ପର ପରିମାଣ ବଢ଼ିଚାଲିଛି । ଫଳରେ ପରିବେଶ ପ୍ରଦୂଷଣ ବୃଦ୍ଧି ପାଉଛି । ଆଜି ବୃକ୍ଷଲତାର ଅଭାବରେ ବହୁ ଦେଶରେ ମରୁଭୂମିର ଆୟତନ ବଢ଼ିଚାଲିଛି । ଏସବୁ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ବୃକ୍ଷଲତାର ଅଭାବରେ ମନୁଷ୍ୟ ଅନେକ ବିପଦର ସମ୍ମୁଖୀନ ହେଉଅଛି ।

ବାସ୍ତବରେ ଲେଖକଙ୍କର ଏହି ଉକ୍ତି ଯଥାର୍ଥ ଅଟେ ।

**୪ । 'ମୁକ୍ତ' ଶବ୍ଦ ଲଗାଇ ଯେଉଁପରି 'ରୋଗମୁକ୍ତ' ଶବ୍ଦ ହୋଇଛି, ସେହିପରି 'ମୁକ୍ତ' ଲଗାଇ ଆଉ ତିନୋଟି ଶବ୍ଦ ଲେଖ ।**

ଉ – ଚିନ୍ତାମୁକ୍ତ, ଦୋଷମୁକ୍ତ, କଷ୍ଟମୁକ୍ତ ।

**୫ । ଯେପରି 'ସଂପ୍ରସାରଣ' ଶବ୍ଦରୁ 'ସଂପ୍ରସାରିତ', 'ନିର୍ମାଣ' ଶବ୍ଦରୁ 'ନିର୍ମିତ' ହୋଇପାରୁଛି, ସେହିଭଳି ତଳଲିଖିତ ଶବ୍ଦଗୁଡ଼ିକର ରୂପ କ'ଣ ହେବ ଲେଖ ।**

ପଠନ, ଗ୍ରହଣ, ଲିଖନ, ଚର୍ବଣ, କମ୍ପନ

ଉ– ପଠନ – ପଠିତ　　　ଗ୍ରହଣ – ଗୃହୀତ
ଲିଖନ – ଲିଖିତ　　　ଚର୍ବଣ – ଚର୍ବିତ
କମ୍ପନ – କମ୍ପିତ

**୬ । ପଶୁ ଓ ପକ୍ଷୀ ମିଶିଲେ ପଶୁପକ୍ଷୀ ହେଉଛି । ସେହିପରି ପାଞ୍ଚଟି ଯୋଡ଼ାଶବ୍ଦ ଏହି ପାଠରୁ ଖୋଜି ଲେଖ ।**

ଉ– ଗଛଲତା, ବଣଜଙ୍ଗଲ, ଗାଁଗଣ୍ଡା, ପାହାଡ଼ପର୍ବତ, କଳକାରଖାନା ।

**୭ । 'ଶ୍ୟାମଳ ଅରଣ୍ୟ' । ଏଠାରେ 'ଶ୍ୟାମଳ' ଶବ୍ଦଟି ଏକ ବିଶେଷଣ ପଦ । ସେହିପରି 'ଅରଣ୍ୟ' ପୂର୍ବରୁ ଆଉ ୩ଟି ବିଶେଷଣ ପଦ ଲଗାଇ ନୂଆ ଶବ୍ଦ ଲେଖ ।**

ଉ – ଘନ ଅରଣ୍ୟ, ସବୁଜ ଅରଣ୍ୟ, ନୂତନ ଅରଣ୍ୟ ।

**୮ । 'ଉପକାର' ଶବ୍ଦ ସହିତ 'ଈ' ଲାଗିଲେ 'ଉପକାରୀ' ହେଉଛି । ସେହିପରି ଶେଷରେ 'ଈ' ଲାଗିଥିବା ପାଞ୍ଚଗୋଟି ଶବ୍ଦ ମନରୁ ଭାବି ଲେଖ ।**

ଉ– ଦରକାରୀ, ପରଦେଶୀ, ବିଦେଶୀ, ସରକାରୀ, ସ୍ୱଦେଶୀ ।



**୯ । ତଳେ ଦିଆଯାଇଥିବା ଅନୁଚ୍ଛେଦରୁ 'ଓ', 'ଏବଂ', 'ମାତ୍ର' ଉଠାଇ ନିଆଯାଇଛି । ଯଥା ସ୍ଥାନରେ ସେଗୁଡ଼ିକୁ ଯୋଗକରି ଅନୁଚ୍ଛେଦଟିକୁ ଆଉଥରେ ଲେଖ ।**

ବୃକ୍ଷଲତା ମୃତ୍ତିକା ସଂରକ୍ଷଣରେ ମଧ୍ୟ ସାହାଯ୍ୟ କରିଥାନ୍ତି । ସେମାନେ ଭୂମି ଭିତରେ ଚେର ବିସ୍ତାର କରି ଉପରେ ଡାଳପତ୍ର ଢାଙ୍କି ବର୍ଷା ଜଳସ୍ରୋତରୁ ମୃତ୍ତିକାକୁ ରକ୍ଷାକରନ୍ତି । ଯେଉଁ ଅଞ୍ଚଳରେ ଜଙ୍ଗଲ ନଷ୍ଟ ହୋଇଥାଏ ସେଠାରୁ ସହଜରେ ମାଟି ଧୋଇ ହୋଇଯାଏ । ସେହି ଭୂମି ଶୁଷ୍କ ଟାଙ୍ଗର ଅନୁର୍ବର ହୋଇ ପଡ଼ିରହେ ।

ଉ – ବୃକ୍ଷଲତା ମୃତ୍ତିକା ସଂରକ୍ଷଣରେ ମଧ୍ୟ ସାହାଯ୍ୟ କରିଥାନ୍ତି । ସେମାନେ ଭୂମି ଭିତରେ ଚେର ବିସ୍ତାର କରି ଏବଂ ଉପରେ ଡାଳପତ୍ର ଢାଙ୍କି ବର୍ଷା ଓ ଜଳସ୍ରୋତରୁ ମୃତ୍ତିକାକୁ ରକ୍ଷାକରନ୍ତି । ମାତ୍ର ଯେଉଁ ଅଞ୍ଚଳରେ ଜଙ୍ଗଲ ନଷ୍ଟ ହୋଇଥାଏ, ସେଠାରୁ ସହଜରେ ମାଟି ଧୋଇ ହୋଇଯାଏ । ସେହି ଭୂମି ଶୁଷ୍କ, ଟାଙ୍ଗର ଓ ଅନୁର୍ବର ହୋଇ ପଡ଼ିରହେ ।

**୧୦ । ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ନିମ୍ନ ବାକ୍ୟଗୁଡ଼ିକରେ ଥିବା ଶୂନ୍ୟସ୍ଥାନକୁ ପୂରଣ କରି ଲେଖ ।**

(କ) ସେମାନଙ୍କ ଶିକ୍ଷା କେବଳ ............... ମଧ୍ୟରେ ସୀମିତ ନୁହେଁ ।
(ଖ) ବୃକ୍ଷଲତା ............... ହେବାରେ ସାହାଯ୍ୟ କରନ୍ତି ।
(ଗ) ଏଥର ତୁମେ ଫେରିଯାଅ । ସମାଜ ...............ରେ ମନୋନିବେଶ କର ।
(ବର୍ଷା, ସେବା, ପୁସ୍ତକ ପଠନ, ସ୍ୱଗୃହରେ)

ଉ – (କ) ସେମାନଙ୍କ ଶିକ୍ଷା କେବଳ ପୁସ୍ତକ ପଠନ ମଧ୍ୟରେ ସୀମିତ ନୁହେଁ ।
(ଖ) ବୃକ୍ଷଲତା ବର୍ଷା ହେବାରେ ସାହାଯ୍ୟ କରନ୍ତି ।
(ଗ) ଏଥର ତୁମେ ଫେରିଯାଅ । ସମାଜ ସେବାରେ ମନୋନିବେଶ କର ।

**୧୧ । ଶବ୍ଦଗୁଡ଼ିକୁ ଉପଯୁକ୍ତ କ୍ରମରେ ସଜାଇ ବାକ୍ୟଟିକୁ ଠିକ୍ ଭାବରେ ଲେଖ ।**

ସଂଶ୍ଳେଷଣ ବାୟୁରୁ ଅଙ୍ଗାରକାମ୍ଳ ପ୍ରକ୍ରିୟାରେ ବୃକ୍ଷଲତା ଗ୍ରହଣ କରି ଆଲୋକ ଛାଡ଼ନ୍ତି ଅମ୍ଳଜାନ ବାଷ୍ପ ।

ଉ– ବୃକ୍ଷଲତା ଆଲୋକ ସଂଶ୍ଳେଷଣ ପ୍ରକ୍ରିୟାରେ ବାୟୁରୁ ଅଙ୍ଗାରକାମ୍ଳ ବାଷ୍ପ ଗ୍ରହଣ କରି ଅମ୍ଳଜାନ ଛାଡ଼ନ୍ତି ।

## ତୁମ ପାଇଁ କାମ

୧ । ବୃକ୍ଷଲତାଙ୍କ ଉପକାରିତା ସମ୍ପର୍କରେ ବର୍ଣ୍ଣନା କରି ତୁମର ସାନଭାଇ ପାଖକୁ ପତ୍ରଟିଏ ଲେଖ ।

୨ । ତୁମ ଘର ଚାରିପାଖରେ ଥିବା ବିଭିନ୍ନ ଗଛର ନାମ ଲେଖ । ସେଗୁଡ଼ିକ ମଧ୍ୟରୁ କେଉଁଗୁଡ଼ିକୁ ଔଷଧ ରୂପେ ବ୍ୟବହାର କରିହୁଏ, ତା'ର ଏକ ତାଲିକା ପ୍ରସ୍ତୁତ କର ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

**୧ । ଶବ୍ଦଗୁଡ଼ିକ ଠିକ୍ କ୍ରମରେ ସଜାଇ ବାକ୍ୟ ଗଠନ କର ।**

(କ) ଗୁଣ ଅନୁଧ୍ୟାନ ଦୋଷ ବୃକ୍ଷଲତାମାନଙ୍କର କଲେ ।
(ଖ) ପ୍ରତ୍ୟାବର୍ତ୍ତନ ଆଶ୍ରମକୁ ଶିଷ୍ୟଙ୍କର କିନ୍ତୁ ବିଳମ୍ବ ଜଣେ ହେଲା କରିବାରେ ।
(ଗ) କର ସେବାରେ ସମାଜ ମନୋନିବେଶ ।

(ଘ) ଅନାବୃଷ୍ଟି ଦୁର୍ଭିକ୍ଷ ଓ ଜିଲ୍ଲାରେ ଘଟୁଛି କଳାହାଣ୍ଡି ରାଜ୍ୟର ଆମ ବାରମ୍ବାର ।

(ଙ) ଦୁଷ୍କର୍ମର ନ ଘଟିଲେ ଆମ ରହିବ ସୀମା ନାହିଁ ଅବସାନ ଏହି ଦୁର୍ଦ୍ଦଶାର ।

ଉ– (କ) ବୃକ୍ଷଲତାମାନଙ୍କର ଦୋଷ ଗୁଣ ଅନୁଧ୍ୟାନ କଲେ ।

(ଖ) କିନ୍ତୁ ଜଣେ ଶିଷ୍ୟଙ୍କର ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କରିବାରେ ବିଳମ୍ବ ହେଲା ।

(ଗ) ସମାଜ ସେବାରେ ମନୋନିବେଶ କର ।

(ଘ) ଆମ ରାଜ୍ୟର କଳାହାଣ୍ଡି ଜିଲ୍ଲାରେ ବାରମ୍ବାର ଅନାବୃଷ୍ଟି ଓ ଦୁର୍ଭିକ୍ଷ ଘଟୁଛି ।

(ଙ) ଏହି ଦୁଷ୍କର୍ମର ଅବସାନ ନ ଘଟିଲେ ଆମ ଦୁର୍ଦ୍ଦଶାର ସୀମା ରହିବ ନାହିଁ ।

୨ । ଶୂନ୍ୟସ୍ଥାନରେ କ'ଣ ବସିବ ?

(କ) ପଠାଣି ସାମନ୍ତ – ସିଦ୍ଧାନ୍ତ ଦର୍ପଣ, ଚରକ – ☐

(ଖ) ଗୁରୁ – ପରୀକ୍ଷା, ଶିଷ୍ୟ – ☐

(ଗ) ଅଭିଶାପ – ଆଶୀର୍ବାଦ, ଅପକାରୀ – ☐

(ଘ) ପ୍ରତିଷ୍ଠା – ପ୍ରତିଷ୍ଠିତ, ପଣ୍ଡିତ – ☐

(ଙ) ପାପ – ପୁଣ୍ୟ, ବିନାଶ– ☐

(ଚ) ଆଲୋକ ସଂଶ୍ଳେଷଣ – ଅଙ୍ଗାରକାମ୍ଳ, ଶ୍ୱାସକ୍ରିୟା – ☐

ଉତ୍ତର

(କ) ଚରକ ସଂହିତା

(ଖ) ଅଧ୍ୟୟନ

(ଗ) ଉପକାରୀ

(ଘ) ପାଣ୍ଡିତ୍ୟ

(ଙ) ବିକାଶ

(ଚ) ଅମ୍ଳଜାନ

୩ । ବିପରୀତ ଶବ୍ଦ ଲେଖ ।

ସୀମିତ, ଉପକାର, ଦରକାରୀ, ପରବର୍ତ୍ତୀ, ସୁସ୍ଥ, ଶୁଷ୍କ, ଦୂଷିତ, ସଙ୍କୁଚିତ, ଉର୍ବର, ଅନୁରୂପ, ସମ୍ଭବ, ବିଚାର ।

ଉ–

| | | |
|---|---|---|
| ସୀମିତ– ଅସୀମ | ଉପକାର – ଅପକାର | ଦରକାରୀ – ଅଦରକାରୀ |
| ପରବର୍ତ୍ତୀ – ପୂର୍ବବର୍ତ୍ତୀ | ସୁସ୍ଥ – ଅସୁସ୍ଥ | ଶୁଷ୍କ – ଆର୍ଦ୍ର |
| ଦୂଷିତ – ବିଶୁଦ୍ଧ | ସଙ୍କୁଚିତ – ପ୍ରସାରିତ | ଉର୍ବର – ଅନୁର୍ବର |
| ଅନୁରୂପ – ପ୍ରତିରୂପ | ସମ୍ଭବ – ଅସମ୍ଭବ | ବିଚାର – ଅବିଚାର |

୪ । 'କ' ସ୍ତମ୍ଭ ସହିତ 'ଖ' ସ୍ତମ୍ଭର ମିଳନ କର ।

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ଶୁଷ୍କ | ବିଚାର ନକରି |
| ଦୁର୍ଲଭ | ସୀମାବଦ୍ଧ |
| ନିର୍ବିଚାର | ହୋମକାଠ |
| ବନୀକରଣ | ଶୁଖିଲା |
| ସମିଧ | ବିରଳ |
| ସୀମିତ | ନୂଆ ଜଙ୍ଗଲ ସୃଷ୍ଟି କରିବା |

ଉତ୍ତର

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ଶୁଷ୍କ | – ଶୁଖିଲା |
| ଦୁର୍ଲଭ | – ବିରଳ |
| ନିର୍ବିଚାର | – ବିଚାର ନକରି |
| ବନୀକରଣ | – ନୂଆ ଜଙ୍ଗଲ ସୃଷ୍ଟି କରିବା |
| ସମିଧ | – ହୋମକାଠ |
| ସୀମିତ | – ସୀମାବଦ୍ଧ |



୫ । ସଂକ୍ଷେପରେ ଉତ୍ତର ଦିଅ ।

**(କ) ପୂର୍ବେ କେଉଁ କେଉଁ କାର୍ଯ୍ୟକୁ ପାଠପଢ଼ାର ଅଙ୍ଗଭାବରେ ଗ୍ରହଣ କରାଯାଉଥିଲା ?**

ଉ– ପୂର୍ବେ ଉଦ୍ୟାନ କର୍ମ, ଗୋ-ସେବା, କୃଷିକାର୍ଯ୍ୟ, ରନ୍ଧନ, ସମିଧ ସଂଗ୍ରହ ଆଦି କାର୍ଯ୍ୟକୁ ପାଠପଢ଼ାର ଅଙ୍ଗଭାବରେ ଗ୍ରହଣ କରାଯାଉଥିଲା ।

**(ଖ) ଗୁରୁ ଶିଷ୍ୟମାନଙ୍କୁ ଗଛଲତା ସମ୍ପର୍କରେ କ'ଣ ଜଣାଇବାକୁ କହିଥିଲେ ?**

ଉ– ଗୁରୁ ଶିଷ୍ୟମାନଙ୍କୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଆଖପାଖରେ ଥିବା ବୃକ୍ଷଲତାକୁ ଦେଖି ସେଥିରୁ କେଉଁ ବୃକ୍ଷ ବା ଲତାଟି ମଣିଷର ଉପକାରରେ ଆସୁନାହିଁ ତାହା ଜଣାଇବାକୁ କହିଥିଲେ ।

**(ଗ) ବୃକ୍ଷଲତା ସମ୍ପର୍କରେ ପୁରାଣରେ କ'ଣ କୁହାଯାଇଛି ?**

ଉ– ବୃକ୍ଷଲତା ସମ୍ପର୍କରେ ପୁରାଣରେ କୁହାଯାଇଛି ଯେ, ସୁସନ୍ତାନମାନଙ୍କୁ ଜନ୍ମଦେବାଠାରୁ ବୃକ୍ଷରୋପଣ ଅଧିକ ପୁଣ୍ୟକାର୍ଯ୍ୟ ଅଟେ ।

**(ଘ) ଅନିୟମିତ ବର୍ଷା ହେବାର କାରଣ କ'ଣ ?**

ଉ– ଅରଣ୍ୟ ସମ୍ପଦ ହ୍ରାସ ପାଉଥିବାରୁ ବର୍ଷାର ଅନିୟମିତତା ଦେଖାଦେଇଛି । କାରଣ ବୃକ୍ଷଲତା ବର୍ଷା ହେବାରେ ସାହାଯ୍ୟ କରନ୍ତି ।

**(ଙ) କଳାହାଣ୍ଡିରେ ଅଳ୍ପବୃଷ୍ଟି ହେବାର ମୁଖ୍ୟ କାରଣ କ'ଣ ?**

ଉ– କଳାହାଣ୍ଡିରେ ଅଳ୍ପବୃଷ୍ଟି ହେବାର ମୁଖ୍ୟ କାରଣ ହେଲା – ଅରଣ୍ୟ ସମ୍ପଦର ବିନାଶ ।

**(ଚ) ବୃକ୍ଷଲତା ବାୟୁମଣ୍ଡଳକୁ ବିଶୁଦ୍ଧ କରେ କିପରି ?**

ଉ– ମନୁଷ୍ୟ ଓ ପଶୁପକ୍ଷୀ ଶ୍ୱାସକ୍ରିୟାରେ ଅମ୍ଳଜାନ ଗ୍ରହଣ କରନ୍ତି ଓ ଅଙ୍ଗାରକାମ୍ଳ ତ୍ୟାଗ କରନ୍ତି । କିନ୍ତୁ ଉଦ୍ଭିଦ ଆଲୋକ ସଂଶ୍ଳେଷଣ ପ୍ରକ୍ରିୟାରେ ବାୟୁରୁ ଅଙ୍ଗାରକାମ୍ଳ ବାଷ୍ପ ଗ୍ରହଣ କରି ଅମ୍ଳଜାନ ଛାଡ଼ନ୍ତି । ଫଳରେ ବାୟୁମଣ୍ଡଳ ବିଶୁଦ୍ଧ ରହେ ।

**(ଛ) ବୃକ୍ଷଲତା ମୃତ୍ତିକା ସଂରକ୍ଷଣରେ କିପରି ସାହାଯ୍ୟ କରିଥାଏ ?**

ଉ– ବୃକ୍ଷଲତା ଭୂମି ଭିତରେ ଚେର ଖେଳାଇ ଏବଂ ଉପରେ ଡାଳପତ୍ର ଢାଙ୍କି ବର୍ଷା ଓ ଜଳସ୍ରୋତରୁ ମୃତ୍ତିକାକୁ ରକ୍ଷା କରନ୍ତି । ଫଳରେ ମୃତ୍ତିକା ସଂରକ୍ଷିତ ହୋଇପାରେ ।

**(ଜ) ହୀରାକୁଦ ଜଳଭଣ୍ଡାର କ୍ରମେ ପୋତିହୋଇ ପଡୁଥିବାର କାରଣ କ'ଣ ?**

ଉ– ବଣଜଙ୍ଗଲ ନଷ୍ଟ ହୋଇଯିବା ଫଳରେ ମୃତ୍ତିକା କ୍ଷୟ ଘଟୁଛି । ଏହି ମୃତ୍ତିକା ଧୋଇହୋଇ ଆସି ଜଳଭଣ୍ଡାର ଶଯ୍ୟାରେ ଜମିରହି କ୍ରମଶଃ ତାହାକୁ ପୋତି ପକାଉଛି । ହୀରାକୁଦ ଜଳଭଣ୍ଡାର ପୋତିହୋଇ ପଡ଼ିବାର ଏହା ଏକ ପ୍ରମୁଖ କାରଣ ଅଟେ ।

**(ଝ) ଗୁରୁ ଶିଷ୍ୟମାନଙ୍କୁ ଗଛଲତା ସମ୍ପର୍କରେ କ'ଣ ଜଣାଇବାକୁ କହିଥିଲେ ?**

ଉ– ଥରେ ଗୁରୁ ଶିଷ୍ୟମାନଙ୍କୁ ପରୀକ୍ଷା କରିବାକୁ ସ୍ଥିର କଲେ । ତେଣୁ ସେ ଶିଷ୍ୟମାନଙ୍କୁ ଆଖପାଖର କେଉଁ ବୃକ୍ଷ ବା ଲତାଟି ଲୋକମାନଙ୍କ ଉପକାରରେ ଆସୁନାହିଁ ଜଣାଇବାକୁ କହିଥିଲେ ।

**(ଞ) ଅରଣ୍ୟ ସମ୍ପଦର ବୃଦ୍ଧିପାଇଁ ଆମ ଦେଶରେ କି ପଦକ୍ଷେପ ନିଆଯାଉଛି ?**

ଉ– ଅରଣ୍ୟ ସମ୍ପଦର ବୃଦ୍ଧିପାଇଁ ଆମ ଦେଶରେ ବିଭିନ୍ନ ଯୋଜନା କାର୍ଯ୍ୟକାରୀ ହେଉଛି । ମୃତ୍ତିକା ସଂରକ୍ଷଣ ବନ ସଂରକ୍ଷଣ ଓ ସାମାଜିକ ବନୀକରଣ ଯୋଜନା ଏସବୁର ଦୃଷ୍ଟାନ୍ତ ।

**(ଟ) ବୃକ୍ଷରୋପଣ ସମ୍ବନ୍ଧରେ ପୁରାଣରେ କ'ଣ କୁହାଯାଇଛି ?**

ଉ– ସୁସନ୍ତାନମାନଙ୍କୁ ଜନ୍ମଦେବା ଅପେକ୍ଷା ବୃକ୍ଷରୋପଣ ଅଧିକ ପୁଣ୍ୟକାର୍ଯ୍ୟ ବୋଲି ପୁରାଣରେ କୁହାଯାଇଛି । ଏହି କାରଣରୁ ଅତୀତରେ ବୃକ୍ଷରୋପଣ କରି ଲୋକେ ଅଧିକ ଆନନ୍ଦ ପାଉଥିଲେ ।

**୬ । ସରଳାର୍ଥ ଲେଖ ।**

**(କ) ଏପରିକି ଦୈନନ୍ଦିନ ଜୀବନରେ ବୃକ୍ଷଲତାର ପୂଜା ଏକ ବିଶିଷ୍ଟ ସ୍ଥାନ ଲାଭ କରିଥିଲା ।**

*ଉ – ଏପରିକି ଦୈନନ୍ଦିନ .......................... ଲାଭ କରିଥିଲା ।*

ଉକ୍ତ ଗଦ୍ୟାଂଶଟି ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଲିଖିତ *'ବୃକ୍ଷଲତା ଆମର ବନ୍ଧୁ'* ବିଷୟରୁ ଆନୀତ । ଏଠାରେ ପୁରାକାଳରେ ଆମ ସାମାଜିକ ଜୀବନରେ ବୃକ୍ଷଲତାର ସ୍ଥାନ କିପରି ଉଚ୍ଚରେ ଥିଲା, ତାହା ବର୍ଣ୍ଣିତ ।

ବୃକ୍ଷଲତା ମନୁଷ୍ୟର ଉପକାରୀ ବନ୍ଧୁ । ପୁରାଣରେ ବର୍ଣ୍ଣିତ ଅଛି ଯେ, ସୁସନ୍ତାନମାନଙ୍କୁ ଜନ୍ମଦେବାଠାରୁ ବୃକ୍ଷରୋପଣ ଅଧିକ ପୁଣ୍ୟ କାର୍ଯ୍ୟ । ଏହି କାରଣରୁ ପୂର୍ବେ ବୃକ୍ଷରୋପଣ କରି ଲୋକେ ଆନନ୍ଦଲାଭ କରୁଥିଲେ । ବିଭିନ୍ନ ପର୍ବପର୍ବାଣିରେ ଓ ଆମର ନିତିଦିନିଆ ଜୀବନରେ ବୃକ୍ଷପୂଜା ପ୍ରଚଳିତ ଥିଲା । ବୃକ୍ଷର ଉପକାର ମଣିଷ ପକ୍ଷେ ଅବର୍ଣ୍ଣନୀୟ ଓ ଅଭୁଲା । ବିଶେଷକରି ପ୍ରାଚୀନ କାଳରେ ମଣିଷ ବୃକ୍ଷବିଶେଷରୁ ଔଷଧ ସଂଗ୍ରହ କରୁଥିଲା ଓ ବୃକ୍ଷକୁ ପୂଜା କରୁଥିଲା ।

ଏହାଦ୍ୱାରା ବୃକ୍ଷର ମହତ୍ତ୍ୱ ସେ କାଳରେ ସମସ୍ତଙ୍କୁ ପ୍ରାୟ ଜଣାଥିଲା ବୋଲି ଜଣାପଡୁଛି ।

**(ଖ) ଏହି ଦୁଷ୍କର୍ମର ଅବସାନ ନ ଘଟିଲେ ଆମ ଦୁର୍ଦ୍ଦଶାର ସୀମା ରହିବ ନାହିଁ ।**

*ଉ – ଏହି ଦୁଷ୍କର୍ମର ................................ ରହିବ ନାହିଁ ।*

ଉକ୍ତ ଗଦ୍ୟାଂଶଟି ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଲିଖିତ *'ବୃକ୍ଷଲତା ଆମର ବନ୍ଧୁ'* ବିଷୟରୁ ଆସିଅଛି । ଜଙ୍ଗଲ ଧ୍ୱଂସ କରି ମଣିଷ ଯେଉଁ କୁକର୍ମ କରୁଛି, ତା'ର ଫଳ ଆମକୁ ଭୋଗ କରିବାକୁ ହେବ ବୋଲି ଲେଖକ ଏଠାରେ କହିଛନ୍ତି ।

ଜନସଂଖ୍ୟା ବୃଦ୍ଧି ଯୋଗୁଁ ଉଦ୍ଭିଦଜଗତ ନଷ୍ଟ ହେଉଛି । ଅଧିକ ବାସଗୃହ, ଶସ୍ୟକ୍ଷେତ୍ର ଓ କଳକାରଖାନା ପାଇଁ ମଣିଷ ସବୁଜ ଜଙ୍ଗଲକୁ ନଷ୍ଟ କରୁଛି । ପଶୁପକ୍ଷୀମାନେ ଲୋପ ପାଇବାକୁ ବସିଲେଣି । ଜଙ୍ଗଲଜାତ ପଦାର୍ଥ ସବୁ ସହଜରେ ମିଳୁନାହିଁ । ବାୟୁମଣ୍ଡଳ ଦୂଷିତ ହେଉଛି । ବର୍ଷା ହ୍ରାସ ପାଉଛି । ଆମେ ଗଛ ହାଣୁଛୁ । ନିଜ ପାଇଁ ନିଜେ ଆମେ ବିପଦକୁ ବରଣ କରୁଛୁ । କାରଣ ବୃକ୍ଷଲତା ଆମର ବନ୍ଧୁ । ବାୟୁମଣ୍ଡଳର ବିଶୁଦ୍ଧତା, ବର୍ଷା, ମୃତ୍ତିକା ସଂରକ୍ଷଣ, ଖାଦ୍ୟ, ବସ୍ତ୍ର ଓ ବାସଗୃହପାଇଁ ଆମେ ଉଦ୍ଭିଦ ଉପରେ ନିର୍ଭର କରୁଛୁ । ତେଣୁ ବୃକ୍ଷରୋପଣ କରି ଆମକୁ ନୂତନ ଜଙ୍ଗଲ ସୃଷ୍ଟି କରିବାକୁ ହେବ । ଉଦ୍ଭିଦର ଯତ୍ନ ନେବାକୁ ହେବ । ଗଛ କାଟିବା ବନ୍ଦ କରିବାକୁ ହେବ । ନଚେତ୍ ଆମ ଦୁର୍ଦ୍ଦଶାର ସୀମା ରହିବ ନାହିଁ ।

**(ଗ) "ଏହି କାରଣରୁ ପୂର୍ବେ ବୃକ୍ଷରୋପଣ କରି ଲୋକେ ଆନନ୍ଦ ପାଉଥିଲେ ।"**

*ଉ – ଏହି କାରଣରୁ ................................ ପାଉଥିଲେ ।*

ଉକ୍ତ ପଦ୍ୟାଂଶଟି 'ଆମ ସାହିତ୍ୟ ବହିର 'ବୃକ୍ଷଲତା ଆମର ବନ୍ଧୁ' ବିଷୟରୁ ଉଦ୍ଧୃତ । ଏଠାରେ ଲେଖକ ଡ. ଜଗନ୍ନାଥ ମହାନ୍ତି ବୃକ୍ଷଲତା କିପରି ଅଶେଷ କଲ୍ୟାଣ ସାଧନ କରିଥାଏ, ତାହା ଦର୍ଶାଇଛନ୍ତି ।

ବୃକ୍ଷବିନା ପୃଥିବୀରେ ଜୀବନଧାରଣ ସମ୍ଭବପର ହୋଇନଥାନ୍ତା । ବୃକ୍ଷଲତା ଆମର ଦୈନନ୍ଦିନ ଜୀବନରେ ଅତ୍ୟନ୍ତ ଉପକାରୀ । ବଞ୍ଚିବାପାଇଁ ମଣିଷ ପଶୁପକ୍ଷୀ ଏହି ଗଛଲତା ଉପରେ ନିର୍ଭର କରନ୍ତି । ସେଥିପାଇଁ ସର୍ବତ୍ର ଏବଂ ସବୁଯୁଗରେ ବନଲତାର ଗୁଣଗାନ କରାଯାଇଛି । ସାହିତ୍ୟ, ପୁରାଣ ଓ ଲୋକକଥା ମାନଙ୍କରେ ବୃକ୍ଷରୋପଣ ଏକ ମହାନ ପୁଣ୍ୟ କାର୍ଯ୍ୟ ବୋଲି ଉଲ୍ଲେଖ କରାଯାଇଛି । ସୁସନ୍ତାନମାନଙ୍କୁ ଜନ୍ମଦେବାଠାରୁ ବୃକ୍ଷରୋପଣ ଅଧିକ ପୁଣ୍ୟ କାର୍ଯ୍ୟବୋଲି ପୁରାଣରେ



ବର୍ଣ୍ଣିତ ଅଛି । ତେଣୁ ବୃକ୍ଷକୁ ଦେବାରାଧନା ଓ ଧର୍ମ କାର୍ଯ୍ୟରେ ମାଧ୍ୟମରୂପେ ଗ୍ରହଣ କରାଯାଇଛି । ଏବେ ମଧ୍ୟ ବୃକ୍ଷକୁ ଦାରୁଦେବତା ରୂପେ ପୂଜନ କରାଯାଉଛି ।

ସୁତରାଂ, ସେତେବେଳେ ବୃକ୍ଷର ମହତ୍ତ୍ୱକୁ ସମସ୍ତେ ଜାଣିଥିଲେ ବୋଲି ଜଣାଯାଏ ।

**୭ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।**

**(କ) ଜଙ୍ଗଲ ଅଭିବୃଦ୍ଧି ପାଇଁ ଆମ ଦେଶରେ କି କି ବ୍ୟବସ୍ଥା କରାଯାଇଛି ?**

ଉ– ବୃକ୍ଷଲତା ମନୁଷ୍ୟର ପରମ ବନ୍ଧୁ । ନିର୍ବିଚାରରେ ଜଙ୍ଗଲ ନଷ୍ଟ କରିବାଦ୍ୱାରା ମନୁଷ୍ୟ ନିଜ ଧ୍ୱଂସକୁ ନିଜେ ଆମନ୍ତ୍ରଣ କରୁଛି । ସତେ ଯେପରି ସେ ଯେଉଁ ଡାଳରେ ବସିଛି, ସେଇ ଡାଳର ମୂଳକୁ ହାଣୁଛି । ଏହି ଦୁଷ୍କର୍ମର ଅବସାନ ନ ଘଟିଲେ ମନୁଷ୍ୟର ଦୁର୍ଦ୍ଦଶାର ସୀମା ରହିବ ନାହିଁ । ତେଣୁ ଅରଣ୍ୟ ସଂରକ୍ଷଣ ପାଇଁ ଏବେ ଆମ ଦେଶରେ ଅନେକ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଉଛି । ମୃତ୍ତିକା ସଂରକ୍ଷଣ, ବନ ସଂରକ୍ଷଣ, ସାମାଜିକ ବନୀକରଣ ଯୋଜନା ପ୍ରଭୃତି ଏହାର ଦୃଷ୍ଟାନ୍ତ । ଏତଦ୍‌ବ୍ୟତୀତ ବୃକ୍ଷରୋପଣ ସପ୍ତାହ, ବିଶ୍ୱ ପରିବେଶ ଦିବସ ଇତ୍ୟାଦି ପାଳନ କରି ଜନସଚେତନତା ସୃଷ୍ଟି କରିବାପାଇଁ ଉଦ୍ୟମ କରାଯାଉଛି ।

**(ଖ) ଅନାବୃଷ୍ଟି ଓ ଅନିୟମିତ ବୃଷ୍ଟିର କାରଣ କ'ଣ ?**

ଉ– ପୃଥିବୀରେ ଜନସଂଖ୍ୟାର ଦ୍ରୁତ ଅଭିବୃଦ୍ଧି ଫଳରେ ଅରଣ୍ୟ ନଷ୍ଟ ହେବାରେ ଲାଗିଛି । ଅରଣ୍ୟ କଟାଯାଇ ଚାଷଭୂମି, ବାସଭୂମି ଓ କଳକାରଖାନା ନିର୍ମାଣ ପାଇଁ ବ୍ୟବହୃତ ହେଉଛି । ମଣିଷ ନିର୍ବିଚାରରେ ଜଙ୍ଗଲ ଧ୍ୱଂସ କରିଚାଲିଛି । ଅରଣ୍ୟ ବୃଷ୍ଟିପାତ କରାଇବାରେ ସହାୟକ ହୋଇଥାଏ । ଅରଣ୍ୟ ସଂପଦର ପରିମାଣ ହ୍ରାସ ପାଇବା ଫଳରେ ବୃଷ୍ଟିପାତର ପରିମାଣ ହ୍ରାସ ପାଉଛି । ବେଳେବେଳେ ଅନାବୃଷ୍ଟି ନତୁବା ଅନିୟମିତ ବୃଷ୍ଟି ହେଉଛି । ଜଙ୍ଗଲ ନଷ୍ଟ କାରଣରୁ ଆମ ରାଜ୍ୟର କଳାହାଣ୍ଡି ଜିଲ୍ଲାରେ ବାରମ୍ବାର ଅନାବୃଷ୍ଟି ଓ ଦୁର୍ଭିକ୍ଷ ଘଟୁଛି ।

**(ଗ) ଜଙ୍ଗଲ କାଟିଦେବାଦ୍ୱାରା ଆମର କି କି କ୍ଷତି ହେଉଛି ?**

ଉ– ଜଙ୍ଗଲ କାଟିଦେବାଦ୍ୱାରା ମୃତ୍ତିକା କ୍ଷୟ ହୋଇ ମାଟି ଶୁଷ୍କ, ଟାଙ୍ଗର ଓ ଅନୁର୍ବର ହୋଇଯାଉଛି । ମରୁଭୂମିର ସଂପ୍ରସାରଣ ଘଟୁଛି । ମୃତ୍ତିକା କ୍ଷୟ ଯୋଗୁଁ ଜଳଭଣ୍ଡାର ଓ ନଦୀଶଯ୍ୟା ପୋତି ହୋଇଯାଉଛି । ଅରଣ୍ୟଲବ୍ଧ ବହୁ ଔଷଧ, ଖାଦ୍ୟପଦାର୍ଥ ଓ କଞ୍ଚାମାଲର ଅଭାବ ବଢ଼ିଚାଲିଛି । ଏପରିକି ବହୁ ପଶୁପକ୍ଷୀ ମଧ୍ୟ ଆଶ୍ରୟ ନପାଇ ଲୋପ ପାଇଯାଉଛନ୍ତି । ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ଗ୍ୟାସ୍‌ର ପରିମାଣ ବୃଦ୍ଧିପାଇ ବାୟୁମଣ୍ଡଳକୁ ପ୍ରଦୂଷିତ କରୁଛି ଏବଂ ବୃଷ୍ଟିପାତର ପରିମାଣ ହ୍ରାସପାଇ ମରୁଡ଼ି ପରିସ୍ଥିତି ସୃଷ୍ଟି ହେଉଛି ।

**(ଘ) ବୃକ୍ଷଲତାକୁ 'ସବୁଜ ସ୍ୱର୍ଣ୍ଣ' କହିବାର ଯଥାର୍ଥତା କ'ଣ ?**

ଉ– ସୁନା ନିଜର ଉଜ୍ଜ୍ୱଳତା ଓ ସୁନ୍ଦର ରଙ୍ଗ ପାଇଁ ସମସ୍ତଙ୍କୁ ଆକୃଷ୍ଟ କରେ । ଏହାର ମୂଲ୍ୟ ଖୁବ୍ ଅଧିକ ଓ ଲୋକେ ଏହାକୁ ଯତ୍ନର ସହ ସାଇତି ରଖନ୍ତି । ମାତ୍ର ବୃକ୍ଷଲତାର ଉପକାରିତା ସୁନାଠାରୁ ଅଧିକ । ବୃକ୍ଷଲତ ବାୟୁମଣ୍ଡଳର ବିଶୁଦ୍ଧତା ରକ୍ଷା କରେ, ବୃଷ୍ଟିପାତର ପରିମାଣ ବୃଦ୍ଧି କରେ, ମୃତ୍ତିକା ସଂରକ୍ଷଣ କରେ, ବିଭିନ୍ ଖାଦ୍ୟ, ପାନୀୟ, ବସ୍ତ୍ର, ବାସଗୃହ ଇତ୍ୟାଦି ଯୋଗାଇଦିଏ । ମାନବ ସଭ୍ୟତା ଓ ଜୀବନକୁ ବୃକ୍ଷଲତାର ଦା ଅତୁଳନୀୟ । ତେଣୁ ଏହାକୁ 'ସବୁଜସ୍ୱର୍ଣ୍ଣ' ବୋଲି କୁହାଯାଏ । ଯଥାର୍ଥରେ ଏହା ସୁନାଠାରୁ ଅଧିକ ମୂଲ୍ୟବାନ୍

# ଅଲିମ୍ପିକ୍ କ୍ରୀଡ଼ା

• ବୀରେନ୍ଦ୍ର କୁମାର ସାମନ୍ତରାୟ
ଜନ୍ମ : ୧୧.୬.୧୯୪୬

## ଲେଖକ ପରିଚୟ

ବୀରେନ୍ଦ୍ର କୁମାର ସାମନ୍ତରାୟ (୧୯୪୬) ଖୋର୍ଦ୍ଧା ଜିଲ୍ଲାର ପାଳସାହିରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ପ୍ରତିଷ୍ଠିତ ଶିଶୁସାହିତ୍ୟ ଲେଖକ ଭାବରେ ପରିଚିତ । ଶିଶୁ ସାହିତ୍ୟ ପତ୍ରିକା *'ଟୁଇକୁମୁଣି'* ତାଙ୍କ ସମ୍ପାଦନାରେ ଦୀର୍ଘ ୨୫ ବର୍ଷ କାଳ ଧରି ପ୍ରକାଶ ପାଉଥିଲା । *'ରାଜାର ସ୍ୱପ୍ନ'* ପୁସ୍ତକ ପାଇଁ ସେ ଜାତୀୟ ପୁରସ୍କାର ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି । ତାଙ୍କ ରଚିତ ଶତାଧିକ ପୁସ୍ତକ ମଧ୍ୟରୁ *'ପିଲାଙ୍କ ବିଶ୍ୱକୋଷ'* ଓ *'ଉତ୍କଳ ପ୍ରଦୀପ'* ପୁସ୍ତକ ଦୁଇଟି ଅତ୍ୟନ୍ତ ଉପାଦେୟ ।

## ବିଷୟ ସୂଚନା

ଦେଶ ଦେଶ ମଧ୍ୟରେ ମୈତ୍ରୀ ଓ ସଦ୍ଭାବ ପ୍ରତିଷ୍ଠା ନିମିତ୍ତ କ୍ରୀଡ଼ାର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ରାଜ୍ୟ, ସର୍ବଭାରତୀୟ, ଏସିଆ ମହାଦେଶ ଓ ଆନ୍ତର୍ଜାତୀୟ ସ୍ତରରେ ଯେଉଁସବୁ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୁଏ, ତନ୍ମଧ୍ୟରୁ ଅଲିମ୍ପିକ୍ କ୍ରୀଡ଼ା ଖୁବ୍ ମହତ୍ତ୍ୱପୂର୍ଣ୍ଣ । ପ୍ରତି ଚାରିବର୍ଷରେ ଥରେ ପୃଥିବୀର ବିଭିନ୍ନ ଦେଶରେ ଅନୁଷ୍ଠିତ ଏହି ପ୍ରତିଯୋଗିତା ପୃଥିବୀର କ୍ରୀଡ଼ାବିତ୍‌ମାନଙ୍କ ପାଇଁ ଏକ ସ୍ୱପ୍ନ । ଖ୍ରୀ.ପୂ. ୭୭୬ରୁ ୨୦୦୮ ମସିହା ମଧ୍ୟରେ ଅନୁଷ୍ଠିତ ଏହି କ୍ରୀଡ଼ା ପ୍ରତିଯୋଗିତାର ଇତିହାସ ଖୁବ୍ ସଂକ୍ଷେପରେ ପିଲାମାନଙ୍କ ପାଇଁ ଏହି ବିଷୟରେ ସନ୍ନିବେଶିତ କରାଯାଇଛି ।

## ସାରକଥା

ଜାତି, ଧର୍ମ ତଥା ବର୍ଣ୍ଣ ନିର୍ବିଶେଷରେ କ୍ରୀଡ଼ା ସମସ୍ତଙ୍କୁ ଏକତା ରଜ୍ଜୁରେ ବାନ୍ଧି ରଖିଥାଏ । କ୍ରୀଡ଼ା ଯୁବସମାଜକୁ ଅଗ୍ରଗାମୀ ହେବା ପାଇଁ ପ୍ରେରଣା ଦେବା ସହ ଶରୀର ଗଠନ ଓ ଶୃଙ୍ଖଳା ଶିକ୍ଷା ଦିଗରେ ସହାୟକ ହୋଇଥାଏ । ତେଣୁ ପୃଥିବୀର ବିଭିନ୍ନ ଦେଶରେ ବିଭିନ୍ନ ସମୟରେ ନାନାପ୍ରକାର କ୍ରୀଡ଼ା ଉତ୍ସବମାନ ଆୟୋଜିତ ହୋଇଥାଏ । ତନ୍ମଧ୍ୟରେ ଅଲିମ୍ପିକ୍ କ୍ରୀଡ଼ା ସର୍ବଶ୍ରେଷ୍ଠ । ପ୍ରାଚୀନ ଗ୍ରୀସ୍‌ରେ ସର୍ବପ୍ରଥମେ ଖ୍ରୀ.ପୂ. ୭୭୬ରେ ଏହି କ୍ରୀଡ଼ା ଅନୁଷ୍ଠିତ ହୋଇଥିଲା । ଗ୍ରୀସ୍ ଦେଶର ଅଲିମ୍ପିଆ ପାହାଡ଼ ଉପରେ ଗ୍ରୀକ୍ ଦେବତା ଜିଉସ୍‌ଙ୍କୁ ଭକ୍ତି ଓ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ପ୍ରତି ଚାରିବର୍ଷରେ ଥରେ ଏକ ବିରାଟ ମେଳା ଆୟୋଜିତ ହେଉଥିଲା ଏବଂ ସେହି ମେଳାରେ ଯୋଗ ଦେଉଥିବା ଯୁବକମାନଙ୍କ ମଧ୍ୟରେ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହେଉଥିଲା । ଏହା ପାଞ୍ଚଦିନ ଧରି ଚାଲୁଥିଲା । ଅଲିମ୍ପିଆ ପଡ଼ିଆରେ ହେଉଥିବାରୁ ଏହାର ନାମ ଥିଲା ଅଲିମ୍ପିକ୍ କ୍ରୀଡ଼ା ।

ପ୍ରାଚୀନ ଗ୍ରୀସ୍‌ର ଅଧିବାସୀମାନେ ଉତ୍ତମ ସ୍ୱାସ୍ଥ୍ୟ ଓ ଶରୀର ଗଠନ ନିମିତ୍ତ କ୍ରୀଡ଼ା ଉପରେ ଗୁରୁତ୍ୱ ଦେଉଥିଲେ । ଅଲିମ୍ପିକ୍ କ୍ରୀଡ଼ାକୁ ସେମାନେ ଏକ ପବିତ୍ର ଉତ୍ସବ ରୂପେ ଗଣନା କରୁଥିଲେ । ଏହି କ୍ରୀଡ଼ାରେ ବିଜୟୀ ପ୍ରତିଯୋଗୀମାନଙ୍କୁ ପବିତ୍ର ତଥା ଶାନ୍ତିର ପ୍ରତୀକ ଅଲିଭ ଡାଳର ଏକ ମୁକୁଟ ପିନ୍ଧାଇ ଦିଆଯାଉଥିଲା ।

ପ୍ରତିଯୋଗିତାରେ ବହୁ ଲୋକଙ୍କ ଉପସ୍ଥିତି ଯୋଗୁଁ ନିଜ ଶାସନ ପ୍ରତି ବିପଦ ଆଶଙ୍କା କରି ସମ୍ରାଟ ଥିଓଡରସ୍ ୩୯୪ ଖ୍ରୀ.ଅ.ରୁ ଏହାକୁ ବନ୍ଦ କରି ଦେଇଥିଲେ । ପ୍ରାୟ ଦେଢ଼ହଜାର ବର୍ଷ ପରେ ଫ୍ରାନ୍‌ସର ଜଣେ କ୍ରୀଡ଼ାପ୍ରେମୀ ବାରେନ୍ ପିଏରି





କୋବର୍ତ୍ତା ଚଉଦଟି ଦେଶର ୨୪୧ ଜଣ ଖେଳାଳିଙ୍କୁ ନେଇ ୧୮୯୬ ମସିହା ଏପ୍ରିଲ୍ ୬ ତାରିଖ ଦିନ ଗ୍ରୀସ୍‌ର ଏଥେନ୍‌ସ ନଗରୀରେ ପୁନଶ୍ଚ ଅଲିମ୍ପିକ୍ କ୍ରୀଡ଼ାର ଆୟୋଜନ କରିଥିଲେ । ତା'ପରଠାରୁ ପ୍ରତି ଚାରିବର୍ଷରେ ଥରେ ଲେଖାଏଁ ଏହା ଅନୁଷ୍ଠିତ ହେଉଛି । ଗତ ୨୦୦୮ ମସିହାରେ ଚୀନ୍‌ର ବେଜିଙ୍ଗଠାରେ ଅନୁଷ୍ଠିତ ଏହି ପ୍ରତିଯୋଗିତାରେ ୨୦୫ଟି ଦେଶର ୧୦,୫୦୦ ଜଣ ଖେଳାଳି ଭାଗ ନେଇଥିଲେ ।

ଅଲିମ୍ପିକ୍ କ୍ରୀଡ଼ାର ପରିଚାଳନା ପାଇଁ 'ଆନ୍ତର୍ଜାତୀୟ ଅଲିମ୍ପିକ୍ କମିଟି' ନାମରେ ଏକ ଅନୁଷ୍ଠାନ ଅଛି । ଏହାର ମୁଖ୍ୟ କାର୍ଯ୍ୟାଳୟ ସୁଇଜରଲ୍ୟାଣ୍ଡର ଲୁସେନ୍ ସହରରେ ଅବସ୍ଥିତ । ବିଭିନ୍ନ ଦେଶର ପ୍ରତିନିଧିମାନେ ଏହି କମିଟିରେ ସଭ୍ୟ ଅଛନ୍ତି । ଆନ୍ତର୍ଜାତୀୟ ଅଲିମ୍ପିକ କମିଟି ଭଳି ବିଭିନ୍ନ ଦେଶରେ ମଧ୍ୟ ଗୋଟିଏ ଲେଖାଏଁ ଅଲିମ୍ପିକ କମିଟି ଅଛି । ଏହି କମିଟି ନିଜ ଦେଶରୁ ଖେଳାଳି ନିର୍ବାଚନ କରନ୍ତି । କ୍ରୀଡ଼ା ପ୍ରତିଯୋଗିତା ଆରମ୍ଭରୁ ଗ୍ରୀକ୍ ଦେବତା ଜିଉସ୍‌ଙ୍କ ମନ୍ଦିରରୁ ଅଗ୍ନି ଆଣି ପ୍ରଧାନ ଷ୍ଟାଡ଼ିୟମ୍ ସମ୍ମୁଖରେ ଜଳାଇ ରଖାଯାଏ । ତାହାକୁ 'ଅଲିମ୍ପିକ୍ ଜ୍ୟୋତି' କହନ୍ତି । ଏହି ଅଗ୍ନିକୁ ମଶାଲରେ ଧରି ବିଭିନ୍ନ ଦେଶରେ ଶୋଭାଯାତ୍ରା କରାଯାଏ । ଯେଉଁ ଦେଶରେ ଏହା ଅନୁଷ୍ଠିତ ହୁଏ, ସେ ଦେଶର ଶାସନମୁଖ୍ୟ ଏହାକୁ ଉଦ୍‌ଘାଟନ କରନ୍ତି । ଆନ୍ତର୍ଜାତିକ ଅଲିମ୍ପିକ୍ କମିଟିର ସଭାପତି ତାଙ୍କୁ ମଞ୍ଚ ଉପରକୁ ପାଛୋଟି ନିଅନ୍ତି । ମଞ୍ଚ ସମ୍ମୁଖରେ ପ୍ରତିଯୋଗୀମାନେ ଶୋଭାଯାତ୍ରାରେ ନିଜ ନିଜ ଦେଶର ଜାତୀୟ ପତାକା ଧରି ଚାଲନ୍ତି । ଅଲିମ୍ପିକ୍ ପତାକାର ରଙ୍ଗ ଧଳା ଓ ସେଥିରେ ଛନ୍ଦାଛନ୍ଦି ହୋଇ ବିଭିନ୍ନ ରଙ୍ଗର ପାଞ୍ଚଟି ବଳୟ ବା ବୃତ୍ତ ଅଙ୍କିତ ହୋଇଛି । ଏହି ବଳୟ ଏସିଆ, ଇଉରୋପ, ଆମେରିକା, ଆଫ୍ରିକା ଓ ଅଷ୍ଟ୍ରେଲିଆ ଆଦି ପାଞ୍ଚଟି ମହାଦେଶର ପ୍ରତୀକ । ବଳୟଗୁଡ଼ିକ ଛନ୍ଦାଛନ୍ଦି ହୋଇ ରହିବାର ଅର୍ଥ ପରସ୍ପର ମଧ୍ୟରେ ଏକତା ଓ ବନ୍ଧୁତ୍ୱ ରକ୍ଷା କରିବା ।

ବିଭିନ୍ନ ଦେଶରୁ ଆସିଥିବା ଖେଳାଳିମାନେ 'ଅଲିମ୍ପିକ୍ ଗ୍ରାମ'ରେ ରହନ୍ତି । ୧୮୯୬ ମସିହାରେ ଅନୁଷ୍ଠିତ ଅଲିମ୍ପିକ୍ କ୍ରୀଡ଼ାରେ ମୋଟ ନଅଟି ବିଷୟରେ ପ୍ରତିଯୋଗିତା ହୋଇଥିବାବେଳେ ଏବେ ୩୫ ପ୍ରକାରର ଖେଳରେ ୪୦୦ ପ୍ରକାର ପ୍ରତିଯୋଗିତା ହେଉଛି । ପ୍ରଥମେ ମହିଳାମାନଙ୍କୁ ଖେଳିବାପାଇଁ ସୁଯୋଗ ମିଳୁନଥିଲେ ମଧ୍ୟ ଏବେ ମହିଳାମାନେ ଯୋଗଦେଇ ନିଜର କୃତିତ୍ୱ ଦେଖାଉଛନ୍ତି । ୨୦୦୦ ମସିହାରେ ଅଷ୍ଟ୍ରେଲିଆର ସିଡ୍‌ନୀଠାରେ ଅନୁଷ୍ଠିତ ଅଲିମ୍ପିକ୍ କ୍ରୀଡ଼ାରେ ଭାଗନେଇ ଭାରତର କରନାମ ମାଲେଶ୍ୱରୀ ଭାରୋତ୍ତୋଳନରେ ବ୍ରୋଞ୍ଜ୍ ପଦକ ଲାଭ କରିଥିଲେ ।

ବିଜୟୀ ଖେଳାଳୀମାନଙ୍କୁ ପ୍ରଥମ ସ୍ଥାନ ପାଇଁ ସ୍ୱର୍ଣ୍ଣପଦକ, ଦ୍ୱିତୀୟ ସ୍ଥାନ ପାଇଁ ରୌପ୍ୟ ପଦକ ଓ ତୃତୀୟ ସ୍ଥାନ ପାଇଁ ବ୍ରୋଞ୍ଜ ପଦକ ଦିଆଯାଏ । ଖେଳର ଶେଷଦିନ ଖେଳାଳିମାନେ ଶୋଭାଯାତ୍ରାରେ ପଡ଼ିଆ ମଧ୍ୟକୁ ଆସନ୍ତି । ଅଲିମ୍ପିକ୍ ସଙ୍ଗୀତ ଗାନ କରାଯାଇ ଅଲିମ୍ପିକ୍ ପତାକାକୁ ଅବତରଣ କରାଯାଏ । ପରେ ପ୍ରଥମ ଦିନରୁ ଜଳୁଥିବା ଅଲିମ୍ପିକ୍ ଜ୍ୟୋତିକୁ ଲିଭାଇ ଉତ୍ସବର ପରିସମାପ୍ତି ଘୋଷଣା କରାଯାଏ । ହକି ଖେଳରେ ଆମ ଭାରତ ଆଠଥର ସ୍ୱର୍ଣ୍ଣପଦକ, ଦୁଇଥର ରୌପ୍ୟ ପଦକ ଓ ଥରେ ବ୍ରୋଞ୍ଜ ପଦକ ଲାଭ କରିଛି । ୨୦୦୮ ମସିହା ବେଜିଙ୍ଗ୍‌ରେ ଅନୁଷ୍ଠିତ ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତାରେ ଭାରତର କ୍ରୀଡ଼ାବିତ୍ ଅଭିନବ ବିନ୍ଦ୍ରା ବନ୍ଧୁକ ଚାଳନାରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ଲାଭ କରିଛନ୍ତି । ବ୍ୟକ୍ତିଗତ ସ୍ୱର୍ଣ୍ଣପଦକ ଲାଭ କରିବାରେ ସେ ହେଉଛନ୍ତି ଭାରତରେ ପ୍ରଥମ । ଏହାଛଡ଼ା କୁସ୍ତିରେ ସୁଶୀଳ କୁମାର ଓ ବକ୍‌ସିଂରେ ବିଜେନ୍ଦ୍ର ସିଂହ ପ୍ରତ୍ୟେକେ ଗୋଟିଏ ଲେଖାଏ ବ୍ରୋଞ୍ଜ ପଦକ ଲାଭ କରିଛନ୍ତି । କେବଳ ପଦକ ଲାଭ ନୁହେଁ କ୍ରୀଡ଼ାରେ ଭାଗ ନେଇ ଉତ୍ତମ କ୍ରୀଡ଼ାନୈପୁଣ୍ୟ ପ୍ରଦର୍ଶନ କରିବା ହେଉଛି ଏହି ପ୍ରତିଯୋଗିତାର ପ୍ରଧାନ ଉଦ୍ଦେଶ୍ୟ ।

## କଠିନ ଶବ୍ଦାର୍ଥ

ମୈତ୍ରୀ – ମିତ୍ରତା । ଅଗ୍ରଗାମୀ – ଆଗକୁ ଯିବା । ରଜ୍ଜୁ – ଦଉଡ଼ି । କ୍ରୀଡ଼ା – ଖେଳ । ଆନ୍ତର୍ଜାତିକ – ପୃଥିବୀ ସ୍ତରରେ । ସମ୍ମାନାର୍ଥେ – ସମ୍ମାନ ପାଇଁ । ନିର୍ଗତ – ବାହାରିବା । ଆବର୍ଜନା → ଦୂଷିତ ପଦାର୍ଥ । ପ୍ରତିରୋଧ – ବିରୋଧ । ଅଲିଭ୍ – ଏକ ପ୍ରକାର ଗଛ । ପୁନଃ – ପୁଣିଥରେ । ଷ୍ଟାଡ଼ିଅମ୍ – ଖେଳ ନିମିତ୍ତ ନିର୍ମିତ ଆବଦ୍ଧ ପଡ଼ିଆ । ବାଦ୍ୟ – ବାଜା ।

ଆୟୋଜକ – ଆୟୋଜନକାରୀ । ଭ୍ରାତୃଭାବ – ଭାଇଚାରାଭାବ । ମୁଷ୍ଟିଯୁଦ୍ଧ – ମୁଥ ଲଢ଼େଇ । ଖଡ୍ଗ ଯୁଦ୍ଧ – ଖଣ୍ଡାଯୁଦ୍ଧ । ସନ୍ତରଣ – ପହଁରିବା । ସ୍ୱର୍ଣ୍ଣ – ସୁନା । ରୌପ୍ୟ – ରୁପା । ପରିସମାପ୍ତି – ଶେଷ । ନୈପୁଣ୍ୟ – ନିପୁଣତା । ପ୍ରଦର୍ଶନ – ଦେଖାଇବା । ପ୍ରଧାନ – ମୁଖ୍ୟ ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) କେଉଁ ଦେଶ ଅଲିମ୍ପିକ୍ କ୍ରୀଡ଼ାର ଜନ୍ମସ୍ଥଳୀ ରୂପେ ପରିଚିତ ?**

ଉ – ପ୍ରାଚୀନ ଗ୍ରୀସ୍ ଦେଶ ଅଲିମ୍ପିକ୍ କ୍ରୀଡ଼ାର ଜନ୍ମସ୍ଥଳୀ ରୂପେ ପରିଚିତ ।

**(ଖ) ଗ୍ରୀସ୍ ଦେଶର କେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ମେଳା ଆୟୋଜିତ ହେଉଥିଲା ?**

ଉ – ଗ୍ରୀସ୍ ଦେଶର ଅଲିମ୍ପିଆ ପାହାଡ଼ରେ ପୂଜା ପାଉଥିବା ପ୍ରସିଦ୍ଧ ଦେବତା 'ଜିଉସ୍'ଙ୍କ ଉଦ୍ଦେଶ୍ୟରେ ମେଳା ଆୟୋଜିତ ହେଉଥିଲା ।

**(ଗ) ଗ୍ରୀସ୍ ଦେଶରେ ଅଲିଭ ଡାଳକୁ କାହାର ପ୍ରତୀକ ଭାବରେ ବିବେଚନା କରାଯାଏ ?**

ଉ – ଗ୍ରୀସ୍ ଦେଶରେ ଅଲିଭ ଡାଳକୁ ପବିତ୍ର ତଥା ଶାନ୍ତିର ପ୍ରତୀକ ଭାବରେ ବିବେଚନା କରାଯାଏ ।

**(ଘ) ଆନ୍ତର୍ଜାତୀୟ ଅଲିମ୍ପିକ୍ କମିଟିର ମୁଖ୍ୟ କାର୍ଯ୍ୟାଳୟ କେଉଁଠାରେ ଅବସ୍ଥିତ ?**

ଉ – ଆନ୍ତର୍ଜାତୀୟ ଅଲିମ୍ପିକ୍ କମିଟିର ମୁଖ୍ୟ କାର୍ଯ୍ୟାଳୟ ସୁଇଜରଲ୍ୟାଣ୍ଡର ଲୁସେନ୍ ସହରରେ ଅବସ୍ଥିତ ।

**(ଙ) ଭାରତର କେଉଁ ମହିଳା ଖେଳାଳି ସର୍ବପ୍ରଥମେ ବ୍ରୋଞ୍ଜ୍ ପଦକ ଲାଭ କରିଥିଲେ ?**

ଉ – ଭାରତର କରନାମ ମାଲେଶ୍ୱରୀ ଭାରୋତ୍ତୋଳନରେ ସର୍ବପ୍ରଥମେ ବ୍ରୋଞ୍ଜ୍ ପଦକ ଲାଭ କରିଥିଲେ ।

୨ । ଉତ୍ତର ଲେଖ ।

**(କ) କ୍ରୀଡ଼ା କେଉଁ କେଉଁ ଦିଗରେ ସହାୟକ ହୋଇଥାଏ ?**

ଉ – ଦେଶ ଦେଶ ମଧ୍ୟରେ ମୈତ୍ରୀ ଓ ସଦ୍‌ଭାବ ପ୍ରତିଷ୍ଠା କ୍ଷେତ୍ରରେ କ୍ରୀଡ଼ା ସହାୟକ ହୁଏ । ଏହା ଯୁବସମାଜକୁ ଅଗ୍ରଗାମୀ ହେବକୁ ପ୍ରେରଣା ଦେବା ସହିତ ଶରୀର ଗଠନ ତଥା ଶୃଙ୍ଖଳା ଶିକ୍ଷା ଦିଗରେ ସହାୟକ ହୁଏ । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଏହା ସମସ୍ତଙ୍କୁ ଏକତା ରଜ୍ଜୁରେ ବାନ୍ଧି ରଖିଥାଏ ।

**(ଖ) ଅଲିମ୍ପିକ୍ କ୍ରୀଡ଼ାର ଏପରି ନାମକରଣ କାହିଁକି କରାଯାଇଛି ?**

ଉ– ପ୍ରାଚୀନ ଗ୍ରୀସ୍‌ର ଆଲଫିଅସ୍ ନଦୀକୂଳରେ ଥିବା 'ଅଲିମ୍ପିଆ' ନାମକ ଏକ ବିରାଟ ପଡ଼ିଆରେ ଏହି କ୍ରୀଡ଼ା ଅନୁଷ୍ଠିତ ହେଉଥିବାରୁ ଏହାର ନାମକରଣ ଅଲିମ୍ପିକ୍ କ୍ରୀଡ଼ା କରାଯାଇଛି ।

**(ଗ) ଅଲିମ୍ପିକ୍ କ୍ରୀଡ଼ାରେ ବ୍ୟବହୃତ ପତାକାରେ ଥିବା ବଳୟଗୁଡ଼ିକ କାହାର ପ୍ରତୀକ ଅଟନ୍ତି ?**

ଉ– ଅଲିମ୍ପିକ୍ କ୍ରୀଡ଼ାରେ ବ୍ୟବହୃତ ପତାକାରେ ଥିବା ବଳୟଗୁଡ଼ିକୁ ପାଞ୍ଚ ରଙ୍ଗବିଶିଷ୍ଟ । ଲାଲ୍, ନୀଳ, ସବୁଜ, ହଳଦୀ ଓ କଳା ରଙ୍ଗର ଏହି ବଳୟ ପାଞ୍ଚଟି ଏସିଆ, ଇଉରୋପ, ଆମେରିକା, ଆଫ୍ରିକା ଓ ଅଷ୍ଟ୍ରେଲିଆ – ଏହି ପାଞ୍ଚଟି ମହାଦେଶର ପ୍ରତୀକ । ବଳୟଗୁଡ଼ିକ ଛନ୍ଦାଛନ୍ଦି ହୋଇ ରହିବାର ଅର୍ଥ ପରସ୍ପର ମଧ୍ୟରେ ଏକତା ଓ ବନ୍ଧୁତ୍ୱ ରକ୍ଷା କରିବା ।



**(ଘ) ଅଲିମ୍ପିକ୍ କ୍ରୀଡ଼ାରେ ସ୍ଥାନ ପାଇଥିବା କେତୋଟି ପ୍ରତିଯୋଗିତାର ନାମ ଲେଖ ।**

ଉ– ଏବେ ମାରାଥନ ଦୌଡ଼, ମୁଷ୍ଟିଯୁଦ୍ଧ, ଖଡ୍‌ଗ ଯୁଦ୍ଧ, ଭାରୋତ୍ତୋଳନ, ଲକ୍ଷ୍ୟଭେଦ, ହକି, ଫୁଟ୍‌ବଲ୍, ଟେନିସ୍, ସାଇକେଲ ଚାଳନା, ସନ୍ତରଣ, ଲମ୍ବ ଡିଆଁ ଓ ଉଚ୍ଚ ଡିଆଁ ଆଦି ୩୫ ପ୍ରକାର ଖେଳର ପ୍ରାୟ ୪୦୦ ପ୍ରକାର ପ୍ରତିଯୋଗିତା ଅଲିମ୍ପିକ୍ କ୍ରୀଡ଼ାରେ ସ୍ଥାନ ପାଇଛି ।

**(ଙ) ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତାର ପ୍ରଧାନ ଉଦ୍ଦେଶ୍ୟ କ'ଣ ?**

ଉ– କେବଳ ପଦକ ଲାଭ ନୁହେଁ, କ୍ରୀଡ଼ାରେ ଅଂଶଗ୍ରହଣ କରି ଉତ୍ତମ କ୍ରୀଡ଼ାନୈପୁଣ୍ୟ ପ୍ରଦର୍ଶନ କରିବା ହେଉଛି ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତାର ପ୍ରଧାନ ଉଦ୍ଦେଶ୍ୟ ।

୩ । ସରଳ ଭାଷାରେ ବୁଝାଇ ଲେଖ :

**(କ) ଏହା ସମସ୍ତଙ୍କୁ ଏକତା ରଜ୍ଜୁରେ ବାନ୍ଧି ଦେଇଥାଏ ।**

ଉ – *ଏହା ସମସ୍ତଙ୍କୁ ........................ ବାନ୍ଧି ଦେଇଥାଏ ।*

ଶଂସିତ ଗଦ୍ୟାଂଶଟି ପଠିତ ସାହିତ୍ୟ ବହିର *'ଅଲିମ୍ପିକ୍ କ୍ରୀଡ଼ା'* ବିଷୟରୁ ଉଦ୍ଧୃତ । ଏଠାରେ ପ୍ରାବନ୍ଧିକ ବୀରେନ୍ଦ୍ର କୁମାର ସାମନ୍ତରାୟ କ୍ରୀଡ଼ା କିପରି ଏକତାର ରଜ୍ଜୁରେ ସମସ୍ତଙ୍କୁ ଆବଦ୍ଧ କରି ରଖେ, ସେ ସମ୍ପର୍କରେ ଆଲୋକପାତ କରିଛନ୍ତି ।

ଆମର ଦୈନନ୍ଦିନ ଜୀବନରେ କ୍ରୀଡ଼ାର ସ୍ଥାନ ଖୁବ୍ ଗୁରୁତ୍ୱପୂର୍ଣ୍ଣ । କ୍ରୀଡ଼ା ଯୁବସମାଜକୁ ଆଗକୁ ଅଗ୍ରସର ହେବା ନିମିତ୍ତ ପ୍ରେରଣା ଯୋଗାଇଥାଏ । ଏହା ଶରୀର ଗଠନ ତଥା ଶୃଙ୍ଖଳା ଶିକ୍ଷା ଦିଗରେ ମଧ୍ୟ ସହାୟକ ହୋଇଥାଏ । କ୍ରୀଡ଼ା ଯୋଗୁଁ ଦେଶ ଦେଶ ମଧ୍ୟରେ ମୈତ୍ରୀ ତଥା ସଦ୍‌ଭାବ ପ୍ରତିଷ୍ଠା ସମ୍ଭବ ହୁଏ । କ୍ରୀଡ଼ାରେ ଜାତି ଧର୍ମର ପ୍ରଭେଦ ନଥାଏ । ବରଂ ଏହା ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଏକତା ରଜ୍ଜୁରେ ବାନ୍ଧିରଖେ । ଯାହାଫଳରେ ସମସ୍ତଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା ହୋଇ ଭବିଷ୍ୟତରେ ଏହା ଦୃଢ଼ୀଭୂତ ହୁଏ । ତେଣୁ କ୍ରୀଡ଼ା ଏକ ଏପରି ମାଧ୍ୟମ, ଯାହା ସମଗ୍ର ପୃଥିବୀର ମଣିଷଙ୍କୁ ଏକ କରି ରଖିବାକୁ ଚେଷ୍ଟା କରିଥାଏ । ତେଣୁ କ୍ରୀଡ଼ାଦ୍ୱାରାହିଁ ସମସ୍ତ ବିଭେଦର ପ୍ରାଚୀର ହଟିଯାଇ ଏକତାର ଶୂନ୍ୟ ମନ୍ଦିର ଗଢ଼ିଉଠେ ।

ବାସ୍ତବରେ ଲେଖକଙ୍କର ଏହି ବକ୍ତବ୍ୟ ଯଥାର୍ଥ ଅଟେ ।

**(ଖ) ଦେଶ ଦେଶ ମଧ୍ୟରେ ଭ୍ରାତୃଭାବ ଓ ସୁସମ୍ପର୍କ ବୃଦ୍ଧିରେ ଏହା ସହାୟକ ହୋଇଥାଏ ।**

ଉ – *ଦେଶ ଦେଶ ............................. ସହାୟକ ହୋଇଥାଏ ।*

ଶଂସିତ ଗଦ୍ୟାଂଶଟି ବୀରେନ୍ଦ୍ର କୁମାର ସାମନ୍ତରାୟଙ୍କ ରଚିତ *'ଅଲିମ୍ପିକ୍ କ୍ରୀଡ଼ା'* ପ୍ରବନ୍ଧରୁ ଉଦ୍ଧୃତ । ଏଠାରେ ପ୍ରାବନ୍ଧିକ ଅଲିମ୍ପିକ୍ ଗ୍ରାମର ପ୍ରତିଷ୍ଠା କିପରି ସୁସମ୍ପର୍କ ତଥା ଭ୍ରାତୃଭାବ ବଢ଼ାଇଥାଏ, ସେ ସମ୍ପର୍କରେ ଆଲୋକପାତ କରିଛନ୍ତି ।

ପ୍ରତି ଚାରିବର୍ଷରେ ଥରେ ପୃଥିବୀର ଯେକୌଣସି ଏକ ଦେଶରେ ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୁଏ । ଯେଉଁ ଦେଶରେ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୁଏ, ସେହି ଦେଶର ଜାତୀୟ ସଙ୍ଗୀତ ଗାନ କରାଯିବା ସହିତ ଜାତୀୟ ପତାକା ଓ ଅଲିମ୍ପିକ୍ ପତାକା ଉତ୍ତୋଳନ କରି ଉତ୍ସବକୁ ସେହି ଦେଶର ଶାସନମୁଖ୍ୟ ହିଁ ଉଦ୍‌ଘାଟନ କରନ୍ତି । ଖେଳାଳିମାନେ ରହିବାପାଇଁ ଏକ ଶିବିରର ଆୟୋଜନ କରାଯାଇଥାଏ । ତାହାକୁ 'ଅଲିମ୍ପିକ୍ ଗ୍ରାମ' କୁହାଯାଏ ।

ଏହି ଅଲିମ୍ପିକ୍ ଗ୍ରାମରେ ହିଁ ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ଖେଳାଳିମାନେ ରହିଥା'ନ୍ତି । ଏକାଠି ରହିବା ଫଳରେ ସେମାନଙ୍କ ମନରୁ ସମସ୍ତ ବିଭେଦର ପାଚେରୀ ଦୂରେଇ ଯାଏ । ପ୍ରତିବଦଳରେ ଦେଶ ଦେଶ ମଧ୍ୟରେ ଭ୍ରାତୃଭାବ ପ୍ରତିଷ୍ଠା

ହୁଏ । ଏହି ଭ୍ରାତୃଭାବ ସୁସମ୍ପର୍କ ରକ୍ଷା କରିବାରେ ବେଶ୍ ସହାୟକ ହୁଏ । ଏହି ଅଲିମ୍ପିକ୍ ଗ୍ରାମରେ ଥିଲାବେଳେ ସେମାନଙ୍କ ମନରେ କୌଣସି ସଂକୀର୍ଣ୍ଣତା ସ୍ଥାନ ପାଇନଥାଏ । ବରଂ ସେମାନେ ନିଜକୁ ଗୋଟିଏ ପୃଥିବୀର ତଥା ଏକ ପରିବାରର ଅନ୍ତର୍ଭୁକ୍ତ ବୋଲି ଅନୁଭବ କରିଥା'ନ୍ତି ।

ବାସ୍ତବରେ ଅଲିମ୍ପିକ୍ ଗ୍ରାମରେ ରହଣି ହିଁ ଦେଶ ଦେଶ ମଧ୍ୟରେ ସୁସମ୍ପର୍କ ବଢ଼ାଇଥାଏ ।

**୪ । ପ୍ରତି ବାକ୍ୟର କିଛି ଅଂଶ 'କ' ସ୍ତମ୍ଭରେ ଓ ଅବଶିଷ୍ଟ ଅଂଶ 'ଖ' ସ୍ତମ୍ଭରେ ରହିଛି । ଦୁଇ ସ୍ତମ୍ଭରେ ଥିବା ବାକ୍ୟାଂଶଗୁଡ଼ିକୁ ଏକାଠି ସଜାଡ଼ି ଲେଖ ।**

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ପ୍ରାଚୀନ ଗ୍ରୀସ୍‌ର ଅଧିବାସୀମାନେ | ଏହାକୁ ବନ୍ଦ କରିଦେଇଥିଲେ । |
| ସୁଇଜରଲ୍ୟାଣ୍ଡର ଲୁସେନ ସହରରେ | ସର୍ବଶ୍ରେଷ୍ଠ ବୋଲି ଗ୍ରହଣ କରାଯାଉଛି । |
| ଗ୍ରୀସ୍ ଦେଶ ହେଉଛି | ଅତ୍ୟନ୍ତ କ୍ରୀଡ଼ାପ୍ରିୟ ଥିଲେ । |
| ସବୁଗୁଡ଼ିକ ମଧ୍ୟରେ ଅଲିମ୍ପିକ୍ କ୍ରୀଡ଼ାକୁ | ଏହାର ମୁଖ୍ୟ କାର୍ଯ୍ୟାଳୟ ଅବସ୍ଥିତ । |
| ସମ୍ରାଟ୍ ଥିଓଡ଼ର୍‌ସ୍ | ଅଲିମ୍ପିକ୍ କ୍ରୀଡ଼ାର ଜନ୍ମସ୍ଥଳୀ । |

ଉ– (i) ପ୍ରାଚୀନ ଗ୍ରୀସ୍‌ର ଅଧିବାସୀମାନେ ଅତ୍ୟନ୍ତ କ୍ରୀଡ଼ାପ୍ରିୟ ଥିଲେ ।

(ii) ସୁଇଜରଲ୍ୟାଣ୍ଡର ଲୁସେନ ସହରରେ ଏହାର ମୁଖ୍ୟ କାର୍ଯ୍ୟାଳୟ ଅବସ୍ଥିତ ।

(iii) ଗ୍ରୀସ୍ ଦେଶ ହେଉଛି ଅଲିମ୍ପିକ୍ କ୍ରୀଡ଼ାର ଜନ୍ମସ୍ଥଳୀ ।

(iv) ସବୁଗୁଡ଼ିକ ମଧ୍ୟରେ ଅଲିମ୍ପିକ୍ କ୍ରୀଡ଼ାକୁ ସର୍ବଶ୍ରେଷ୍ଠ ବୋଲି ଗ୍ରହଣ କରାଯାଉଛି ।

(v) ସମ୍ରାଟ ଥିଓଡ଼ର୍‌ସ୍ ଏହାକୁ ବନ୍ଦ କରିଦେଇଥିଲେ ।

**୫ । 'ଖେଳ୍' ସହିତ 'ଆଳି' ଲାଗିଲେ 'ଖେଳାଳି' ଶବ୍ଦ ହୁଏ । ସେହିପରି 'ଆଳି' ଯୋଗକରି ଆଉ ପାଞ୍ଚଟି ନୂଆ ଶବ୍ଦ ଲେଖ ।**

ଉ– ପଢ଼୍ + ଆଳି = ପଢ଼ାଳି, ରନ୍ଧ୍ + ଆଳି = ରନ୍ଧାଳି, ଧର୍ + ଆଳି = ଧରାଳି,
କଟ୍ + ଆଳି = କଟାଳି, ଦେଖ୍ + ଆଳି = ଦେଖାଳି ।

**୬ । ନିମ୍ନ ଅନୁଚ୍ଛେଦଟିରେ ଅଶୁଦ୍ଧି ଥିଲେ ଶୁଦ୍ଧ କରି ଲେଖ ।**

ଏହା ହେଉଛି ଏକ ଆନ୍ତର୍ଜାତିକ କ୍ରୀଡ଼ା ପ୍ରତିଯୋଗିତା ଏବଂ ଏଥିରେ ଯେଉଁମାନେ ବିଜୟୀ ହୁଅନ୍ତି, ସେମାନଙ୍କୁ ବିଶ୍ୱର ଶ୍ରେଷ୍ଠ ଖେଳାଳୀ ଭାବରେ ସମ୍ମାନ ଦିଆଯାଏ ।

ଉ – ଏହା ହେଉଛି ଏକ ଆନ୍ତର୍ଜାତିକ କ୍ରୀଡ଼ା ପ୍ରତିଯୋଗିତା ଏବଂ ଏଥିରେ ଯେଉଁମାନେ ବିଜୟୀ ହୁଅନ୍ତି, ସେମାନଙ୍କୁ ବିଶ୍ୱର ଶ୍ରେଷ୍ଠ ଖେଳାଳି ଭାବରେ ସମ୍ମାନ ଦିଆଯାଏ ।

**୭ । 'କ୍ରୀଡ଼ା କସରତ' ପରି ଆଉ ପାଞ୍ଚଯୋଡ଼ା ଶବ୍ଦ ଭାବି ଲେଖ ।**

ଉ – ଥଟ୍ଟାତାମସା, ବନ୍ଧୁବାନ୍ଧବ, ଚାଲିଚଳଣି, ଆମୋଦପ୍ରମୋଦ, ଧନଦୌଲତ ।

**୮ । ଏମାନେ ଯେଉଁ କ୍ରୀଡ଼ା ପ୍ରତିଯୋଗିତା ସହିତ ସମ୍ପୃକ୍ତ, ସେହି କ୍ରୀଡ଼ାର ନାମ ଲେଖ ।**

ମାଲେଶ୍ୱରୀ, ଅଭିନବ ବିନ୍ଦ୍ରା, ସୁଶୀଲ କୁମାର, ବିଜେନ୍ଦ୍ର ସିଂ



ଉ–

| କ୍ରୀଡ଼ାବିତ୍ | କ୍ରୀଡ଼ାର ନାମ |
|---|---|
| ମାଲେଶ୍ୱରୀ | ଭାରୋତ୍ତୋଳନ |
| ଅଭିନବ ବିନ୍ଦ୍ରା | ବନ୍ଧୁକ ଚାଳନା |
| ସୁଶୀଲ କୁମାର | କୁସ୍ତି |
| ବିଜେନ୍ଦ୍ର ସିଂ | ବକ୍ସିଂ |

**୯ । ଅଗ୍ରଗାମୀ, ସହାୟକ, ଏକତା ରଜ୍ଜୁ, ପ୍ରତିଯୋଗିତା, ଆନ୍ତର୍ଜାତିକ, ସର୍ବଶ୍ରେଷ୍ଠ, ନିର୍ବିଶେଷ– ଏହି ଶବ୍ଦଗୁଡ଼ିକୁ ବ୍ୟବହାର କରି ଅଲିମ୍ପିକ୍ କ୍ରୀଡ଼ା ସମ୍ପର୍କରେ ଅନୁଚ୍ଛେଦଟିଏ ଲେଖ ।**

ଉ – କ୍ରୀଡ଼ା ଯୁବସମାଜକୁ କେବଳ **ଅଗ୍ରଗାମୀ** ହେବାପାଇଁ ପ୍ରେରଣା ଯୋଗାଇ ନଥାଏ, ଏହା ଶରୀର ଗଠନ ତଥା ଶୃଙ୍ଖଳା ଶିକ୍ଷା ଦିଗରେ ମଧ୍ୟ **ସହାୟକ** ହୋଇଥାଏ । ଜାତି, ଧର୍ମ ଓ ବର୍ଣ୍ଣ **ନିର୍ବିଶେଷରେ** ଏହା ସମସ୍ତଙ୍କୁ **ଏକତା ରଜ୍ଜୁରେ** ବାନ୍ଧି ଦେଇଥାଏ । ପୃଥିବୀର ବିଭିନ୍ନ ଦେଶରେ ଅନୁଷ୍ଠିତ କ୍ରୀଡ଼ାଉତ୍ସବ ମଧ୍ୟରେ ଅଲିମ୍ପିକ୍ କ୍ରୀଡ଼ାକୁ **ସର୍ବଶ୍ରେଷ୍ଠ** ବୋଲି ଗ୍ରହଣ କରାଯାଇଛି । ଏହା ହେଉଛି ଏକ **ଆନ୍ତର୍ଜାତିକ** କ୍ରୀଡ଼ା **ପ୍ରତିଯୋଗିତା** ।

**୧୦ । ଫୁଟ୍‌ବଲ୍ ପରି ପଡ଼ିଆରେ ଖେଳା ଯାଉଥିବା ଆଉ ପାଞ୍ଚଟି ଖେଳର ନାମ ଲେଖ । ସେହି ଖେଳରେ ଆମ ଓଡ଼ିଶାରୁ ଯଦି କିଏ ଦେଶ ବିଦେଶରେ ସୁନାମ ଅର୍ଜନ କରିଥା'ନ୍ତି, ତେବେ ତାଙ୍କ ନାମ ଲେଖ ।**

ଉ – ଭଲିବଲ୍, କ୍ରିକେଟ୍, ହକି, ବାସ୍କେଟ୍‌ବଲ, ବ୍ୟାଡ଼୍‌ମିଣ୍ଟନ ।

ଆମ ଓଡ଼ିଶାରୁ ହକିରେ ଦିଲୀପ ତିର୍କୀ ଓ ପ୍ରବୋଧ ତିର୍କୀ ଏବଂ କ୍ରିକେଟ୍‌ରେ ଦେବାଶିଷ ମହାନ୍ତି ଓ ଶିବସୁନ୍ଦର ଦାସ ଦେଶ ବିଦେଶରେ ସୁନାମ ଅର୍ଜନ କରିଛନ୍ତି ।

**୧୧ । ନିମ୍ନରେ ଥିବା କୋଠରିରେ କେତେଗୁଡ଼ିଏ ଅକ୍ଷର ଦିଆଯାଇଛି । ସେଗୁଡ଼ିକ ମଧ୍ୟରୁ କେଉଁଟି ସ୍ୱରବର୍ଣ୍ଣ, କେଉଁଟି ବ୍ୟଞ୍ଜନ ବର୍ଣ୍ଣ ଓ କେଉଁଟି ଯୁକ୍ତବର୍ଣ୍ଣ ତାକୁ ଅଲଗା କରି ଲେଖ ।**

| | | | | | |
|---|---|---|---|---|---|
| ତ | ଷ୍ଠ | ର | ନ୍ମ | ନ | ଏ |
| ଇ | କ | ଡ | ମ୍ପ | ସ୍କ | ଟ |
| ଉ | ନ୍ତ | ସ | ଳ | ଙ୍ଗ | ମ |
| ନ୍ନ | ଯ | ନ୍ଧ | ଷ୍ଟ | ଜ୍ଞ | ଔ |

ଉ–

| ସ୍ୱରବର୍ଣ୍ଣ | ବ୍ୟଞ୍ଜନ ବର୍ଣ୍ଣ | ଯୁକ୍ତବର୍ଣ୍ଣ |
|---|---|---|
| ଏ, ଇ, ଉ, ଔ | ତ, ର, ନ, କ, ଡ, ଟ, ସ, ଳ, ମ, ଯ | ଷ୍ଠ, ନ୍ମ, ମ୍ପ, ସ୍କ, ନ୍ତ, ଙ୍ଗ, ନ୍ନ, ନ୍ଧ, ଷ୍ଟ, ଜ୍ଞ |

**୧୨ । ଅଲିମ୍ପିକ୍ କ୍ରୀଡ଼ା ଯେପରି ପ୍ରତି ଚାରିବର୍ଷରେ ଥରେ ଅନୁଷ୍ଠିତ ହୁଏ, ସେହିପରି ଆଉ କେଉଁ କ୍ରୀଡ଼ା ପ୍ରତିଯୋଗିତା ପ୍ରତି ଚାରିବର୍ଷରେ ଅନୁଷ୍ଠିତ ହୋଇଥାଏ, ତାହାର ନାମ ଲେଖ ।**

ଉ – ଏସିଆଡ଼୍ କ୍ରୀଡ଼ା, ବିଶ୍ୱକପ୍ ଫୁଟ୍‌ବଲ୍, ବିଶ୍ୱକପ୍ କ୍ରିକେଟ୍ ।

**ତୁମ ପାଇଁ କାମ**

୧। ଦେଶ ବିଦେଶର ବିଖ୍ୟାତ ଖେଳାଳିମାନଙ୍କର ଫଟୋ ଖବରକାଗଜ ଓ ପତ୍ରପତ୍ରିକାରୁ ସଂଗ୍ରହ କର। ସେଗୁଡ଼ିକୁ ଗୋଟିଏ ଖାତାରେ ସଜାଇ ରଖ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

**୧। ବାକ୍ୟଗଠନ କର।**

**ପ୍ରଦର୍ଶନ** – ବିଦ୍ୟାଳୟସ୍ତରୀୟ କ୍ରୀଡ଼ା ଉତ୍ସବରେ ଆମ ବିଦ୍ୟାଳୟ ଉତ୍ତମ ***ପ୍ରଦର୍ଶନ*** କରିଥିଲା।

**ପ୍ରତିରୋଧ** – ଗାନ୍ଧିଜୀ ସର୍ବଦା ହିଂସା ଓ ଅନ୍ୟାୟର ***ପ୍ରତିରୋଧ*** କରୁଥିଲେ।

**ବିବେଚନା** – ଦୁର୍ବଳଙ୍କୁ ହେୟ ***ବିବେଚନା*** କରିବା ଅନୁଚିତ୍।

**୨। ସଂକ୍ଷେପରେ ଉତ୍ତର ଦିଅ।**

**(କ) ଗ୍ରୀସ୍ ଦେଶର ଲୋକେ କିପରି ଅଲିମ୍ପିକ୍ କ୍ରୀଡ଼ାକୁ ପାଳନ କରୁଥିଲେ ?**

ଉ– ଗ୍ରୀସ୍‌ବାସୀ ଅଲିମ୍ପିକ୍ କ୍ରୀଡ଼ାକୁ ଏକ ପବିତ୍ର ଉତ୍ସବ ରୂପେ ଗଣନା କରୁଥିଲେ। ଯେଉଁ ବର୍ଷ ଏହି କ୍ରୀଡ଼ା ଅନୁଷ୍ଠିତ ହେଉଥିଲା, ସେ ବର୍ଷକୁ ଲୋକେ ଶାନ୍ତିର ବର୍ଷ ରୂପେ ପାଳନ କରୁଥିଲେ। ଏପରିକି ଗ୍ରୀସ୍‌ର ରାଜାମାନେ ନିଜ ନିଜ ମଧ୍ୟରେ ଚାଲିଥିବା ଯୁଦ୍ଧ ମଧ୍ୟ ବନ୍ଦ କରି ଦେଉଥିଲେ। କେହି ଜଣେ ଅଲିମ୍ପିକ୍ ଉତ୍ସବକୁ ଯାଉଥିଲେ, ବାଟରେ କେହି ତା'ର ପ୍ରତିରୋଧ କରୁ ନ ଥିଲେ। ଅଲିମ୍ପିକ୍ କ୍ରୀଡ଼ାରେ ବିଜୟୀ ପ୍ରତିଯୋଗୀଙ୍କ ମୁଣ୍ଡରେ ସେମାନେ ପବିତ୍ର ଓ ଶାନ୍ତିର ପ୍ରତୀକ ଅଲିଭ୍ ଡାଳର ମୁକୁଟ ପିନ୍ଧାଉଥିଲେ।

**(ଖ) ଆଧୁନିକ ଅଲିମ୍ପିକ୍ କେବେ ଓ କାହାଦ୍ୱାରା ଆରମ୍ଭ ହୋଇଥିଲା ?**

ଉ– ଫ୍ରାନ୍ସର ବାରେନ୍ ପିଏଦା କୋବର୍ତ୍ତା ନାମକ ଜଣେ କ୍ରୀଡ଼ାପ୍ରେମୀ ୧୮୯୬ ମସିହା ଏପ୍ରିଲ ଛ' ତାରିଖ ଦିନ ଗ୍ରୀସ୍‌ର ଏଥେନ୍ସ୍ ନଗରୀରେ ଏହି କ୍ରୀଡ଼ାର ଆୟୋଜନ କଲେ। ଏଥିରେ ଚଉଦଟି ଦେଶର ୨୪୧ ଜଣ ଖେଳାଳି ଭାଗ ନେଇଥିଲେ। ଏହିଠାରୁ ଆଧୁନିକ ଅଲିମ୍ପିକ୍ କ୍ରୀଡ଼ା ଆରମ୍ଭ ହେଲା।

**(ଗ) ଅଲିମ୍ପିକ୍ କ୍ରୀଡ଼ା ଉତ୍ସବର ପରିସମାପ୍ତି କିପରି ଘୋଷଣା କରାଯାଏ ?**

ଉ– ପ୍ରଥମ ଦିନ ପରି ଶେଷଦିନ ମଧ୍ୟ ନୃତ୍ୟ, ଗୀତ, ବାଦ୍ୟ ପରିବେଷଣ କରାଯାଏ। ଖେଳର ଶେଷଦିନ ସବୁ ଦେଶର ଖେଳାଳି ନିଜ ନିଜ ଦେଶର ଜାତୀୟ ପତାକା ଧରି ଗୋଟିଏ ଧାଡ଼ିରେ ଶୋଭାଯାତ୍ରା କରି ପଡ଼ିଆ ମଧ୍ୟକୁ ଆସନ୍ତି। ଅଲିମ୍ପିକ୍ ସଙ୍ଗୀତ ଗାନ କରାଯାଇ ଅଲିମ୍ପିକ୍ ପତାକାକୁ ଅବତରଣ କରାଯାଏ। ଏହାପରେ ପ୍ରଥମ ଦିନରୁ ଜଳୁଥିବା ଅଲିମ୍ପିକ୍ ଜ୍ୟୋତିକୁ ଲିଭାଇ ଦେଇ ଏହି କ୍ରୀଡ଼ା ଉତ୍ସବର ପରିସମାପ୍ତି ଘୋଷଣା କରାଯାଏ।

**(ଘ) ଭାରତ କେଉଁ କ୍ଷେତ୍ରରେ ଅଲିମ୍ପିକ୍‌ରେ ପଦକ ହାସଲ କରିଛି ?**

ଉ– ହକି, ଭାରୋତ୍ତୋଳନ, ବନ୍ଧୁକ ଚାଳନା, କୁସ୍ତି ଓ ବକ୍‌ସିଂ ଆଦି କ୍ରୀଡ଼ାରେ ଭାରତ ଅଲିମ୍ପିକ୍‌ରେ ପଦକ ହାସଲ କରିଛି।

**(ଙ) କାହାକୁ ଅଲିମ୍ପିକ୍ ଜ୍ୟୋତି କୁହାଯାଏ ?**

ଉ– ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା ଆରମ୍ଭ ହେବା ପୂର୍ବରୁ ଗ୍ରୀକ୍ ଦେବତା ଜିଉସ୍‌ଙ୍କ ମନ୍ଦିରରୁ ଅଗ୍ନିଆଣି ପ୍ରଧାନ ଷ୍ଟାଡ଼ିୟମ୍ ସମ୍ମୁଖରେ ଜଳାଇ ରଖାଯାଏ। ତାହାକୁ 'ଅଲିମ୍ପିକ୍ ଜ୍ୟୋତି' ବୋଲି କୁହାଯାଏ।



**୩। ସରଳାର୍ଥ ଲେଖ।**

**"ବଳୟଗୁଡ଼ିକ ଛନ୍ଦାଛନ୍ଦି ହୋଇ ରହିବାର ଅର୍ଥ ହେଉଛି ପରସ୍ପର ମଧ୍ୟରେ ଏକତା ଓ ବନ୍ଧୁତ୍ୱ ରକ୍ଷା କରିବା।"**

ଉ – *"ବଳୟ .............................. ରକ୍ଷାକରିବା।"*

ଶଂସିତ ଗଦ୍ୟାଂଶଟି 'ଅଲିମ୍ପିକ୍ କ୍ରୀଡ଼ା' ପ୍ରବନ୍ଧରୁ ଆନୀତ। ଉକ୍ତ ପ୍ରସଙ୍ଗରେ ପ୍ରାବନ୍ଧିକ ବୀରେନ୍ଦ୍ର କୁମାର ସାମନ୍ତରାୟ ଅଲିମ୍ପିକ୍ ପତାକାରେ ଥିବା ବଳୟର ବୈଶିଷ୍ଟ୍ୟ ସମ୍ପର୍କରେ ସୂଚନା ଦେଇଛନ୍ତି।

ଅଲିମ୍ପିକ୍ ପତାକାର ରଙ୍ଗ ଧଳା ଏବଂ ଏଥିରେ ଛନ୍ଦାଛନ୍ଦି ହୋଇ ବିଭିନ୍ନ ରଙ୍ଗର ପାଞ୍ଚଟି ବଳୟ ବା ବୃତ୍ତ ଅଙ୍କିତ ହୋଇଛି। ବଳୟଗୁଡ଼ିକର ରଙ୍ଗ ଲାଲ୍, ନୀଳ, ସବୁଜ, ହଳଦୀ ଏବଂ କଳା। ଏଗୁଡ଼ିକ ଏସିଆ, ଇଉରୋପ, ଆମେରିକା, ଆଫ୍ରିକା ଓ ଅଷ୍ଟ୍ରେଲିଆ ମହାଦେଶର ପ୍ରତୀକ। ଏହି ବଳୟଗୁଡ଼ିକ ଛନ୍ଦାଛନ୍ଦି ହୋଇ ରହିବାର ଅର୍ଥ ହେଉଛି ପରସ୍ପର ମଧ୍ୟରେ ଏକତା ଓ ବନ୍ଧୁତ୍ୱ ରକ୍ଷା କରିବା।

ବାସ୍ତବରେ ପ୍ରସଙ୍ଗଟି ଯଥାର୍ଥ ଅଟେ।

**୪। ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ।**

**(କ) କେଉଁ ଭାରତୀୟ କ୍ରୀଡ଼ାବିତ୍‌ମାନେ ଅଲିମ୍ପିକ୍ କ୍ରୀଡ଼ାରେ ସୁନାମ ଅର୍ଜନ କରିଛନ୍ତି ?**

ଉ– ୨୦୦୦ ମସିହାରେ ଅଷ୍ଟ୍ରେଲିଆର ସିଡ୍‌ନୀଠାରେ ଅନୁଷ୍ଠିତ ଅଲିମ୍ପିକ୍ କ୍ରୀଡ଼ାରେ ଭାରତୀୟ ମହିଳା କ୍ରୀଡ଼ାବିତ୍ କରନାମ ମାଲେଶ୍ୱରୀ ଭାରୋତ୍ତୋଳନରେ ବ୍ରୋଞ୍ଜ ପଦକ ଲାଭ କରିଥିଲେ। ୨୦୦୮ ବେଜିଂ ଅଲିମ୍ପିକ୍‌ରେ ଭାରତୀୟ କ୍ରୀଡ଼ାବିତ୍ ଅଭିନବ ବିନ୍ଦ୍ରା ବନ୍ଧୁକ ଚାଳନାରେ ସ୍ୱର୍ଣ୍ଣ ପଦକ ପାଇଥିଲେ। ବ୍ୟକ୍ତିଗତ ସ୍ୱର୍ଣ୍ଣପଦକ ପାଇବାରେ ସେ ପ୍ରଥମ ଭାରତୀୟ। ଏହା ବ୍ୟତୀତ କୁସ୍ତିରେ ସୁଶୀଲ କୁମାର ଓ ବକ୍ସିଂରେ ବିଜେନ୍ଦ୍ର ସିଂ ପ୍ରତ୍ୟେକ ବ୍ରୋଞ୍ଜ ପଦକ ଲାଭ କରିଥିଲେ। ଦଳଗତ କ୍ରୀଡ଼ା ହକିରେ ଭାରତ ଆଠଥର ସ୍ୱର୍ଣ୍ଣ, ଦୁଇଥର ରୌପ୍ୟ ଓ ଥରେ ବ୍ରୋଞ୍ଜ ପଦକ ଲାଭ କରିଛି।

**(ଖ) ଅଲିମ୍ପିକ୍ କ୍ରୀଡ଼ା ଉତ୍ସବର ପରିସମାପ୍ତି କିପରି ଘୋଷଣା କରାଯାଏ ?**

ଉ– ପ୍ରଥମ ଦିନ ପରି ଶେଷଦିନ ମଧ୍ୟ ନୃତ୍ୟ, ଗୀତ, ବାଦ୍ୟ ପରିବେଷଣ କରାଯାଏ। ଖେଳର ଶେଷଦିନ ସବୁ ଦେଶର ଖେଳାଳି ନିଜ ନିଜ ଦେଶର ଜାତୀୟ ପତାକା ଧରି ଗୋଟିଏ ଧାଡ଼ିରେ ଶୋଭାଯାତ୍ରା କରି ପଡ଼ିଆ ମଧ୍ୟକୁ ଆସନ୍ତି। ଅଲିମ୍ପିକ୍ ସଙ୍ଗୀତ ଗାନ କରାଯାଇ ଅଲିମ୍ପିକ୍ ପତାକାକୁ ଅବତରଣ କରାଯାଏ। ଏହାପରେ ପ୍ରଥମ ଦିନରୁ ଜଳୁଥିବା ଅଲିମ୍ପିକ୍ ଜ୍ୟୋତିକୁ ଲିଭାଇ ଦେଇ ଏହି କ୍ରୀଡ଼ା ଉତ୍ସବର ପରିସମାପ୍ତି ଘୋଷଣା କରାଯାଏ।

**(ଗ) ଗ୍ରୀସ୍ ଦେଶର ଲୋକେ ଅଲିମ୍ପିକ୍ କ୍ରୀଡ଼ାକୁ କିପରି ପାଳନ କରୁଥିଲେ ?**

ଉ– ଗ୍ରୀସ୍‌ବାସୀ ଅଲିମ୍ପିକ୍ କ୍ରୀଡ଼ାକୁ ଏକ ପବିତ୍ର ଉତ୍ସବ ରୂପେ ଗଣନା କରୁଥିଲେ। ଯେଉଁ ବର୍ଷ ଏହି କ୍ରୀଡ଼ା ଅନୁଷ୍ଠିତ ହେଉଥିଲା, ସେ ବର୍ଷକୁ ଲୋକେ ଶାନ୍ତିର ବର୍ଷ ରୂପେ ପାଳନ କରୁଥିଲେ। ଏପରିକି ଗ୍ରୀସ୍‌ର ରାଜାମାନେ ନିଜ ନିଜ ମଧ୍ୟରେ ଚାଲିଥିବା ଯୁଦ୍ଧ ମଧ୍ୟ ବନ୍ଦ କରି ଦେଉଥିଲେ। କେହି ଜଣେ ଅଲିମ୍ପିକ୍ ଉତ୍ସବକୁ ଯାଉଥିଲେ, ବାଟରେ କେହି ତା'ର ପ୍ରତିରୋଧ କରୁ ନ ଥିଲେ। ଅଲିମ୍ପିକ୍ କ୍ରୀଡ଼ାରେ ବିଜୟୀ ପ୍ରତିଯୋଗୀଙ୍କ ମୁଣ୍ଡରେ ସେମାନେ ପବିତ୍ର ତଥା ଶାନ୍ତିର ପ୍ରତୀକ ଅଲିଭ୍ ଡାଳର ମୁକୁଟ ପିନ୍ଧାଉଥିଲେ।

**(ଘ) ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା କିପରି ଆରମ୍ଭ ହୁଏ ?**

ଉ– ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା ଆରମ୍ଭ ହେବା ପୂର୍ବରୁ ଗ୍ରୀକ୍ ଦେବତା ଜିଉସ୍‌ଙ୍କ ମନ୍ଦିରରୁ ଅଗ୍ନି ଆଣି ପ୍ରଧାନ ଷ୍ଟାଡ଼ିଅମର ସମ୍ମୁଖରେ ଜଳାଇ ରଖାଯାଏ। ତାହାକୁ 'ଅଲିମ୍ପିକ୍ ଜ୍ୟୋତି' ବୋଲି କୁହାଯାଏ। ଏହି ଅଗ୍ନିକୁ

ମଶାଲରେ ଧରି ବିଭିନ୍ନ ଦେଶରେ ଶୋଭାଯାତ୍ରା କରାଯାଏ । ଶୋଭାଯାତ୍ରାବେଳେ ବିଭିନ୍ନ ଦେଶରେ ମଶାଲକୁ ସ୍ୱାଗତ କରାଯାଏ । ଏହି ପ୍ରତିଯୋଗିତା ନୃତ୍ୟ, ଗୀତ, ବାଦ୍ୟ ଓ ନାନା ପ୍ରକାର ଆତସବାଜି କାର୍ଯ୍ୟକ୍ରମ ମଧ୍ୟରେ ଖୁବ୍ ଆଡ଼ମ୍ବରରେ ଆରମ୍ଭ ହୁଏ । ଯେଉଁ ଦେଶରେ ଏହା ହୁଏ, ସେ ଦେଶର ଶାସନମୁଖ୍ୟ ଏହାକୁ ଉଦ୍‌ଘାଟନ କରନ୍ତି । ଆନ୍ତର୍ଜାତିକ ଅଲିମ୍ପିକ୍ କମିଟିର ସଭାପତି ତାଙ୍କୁ ମଞ୍ଚ ଉପରକୁ ପାଛୋଟି ନିଅନ୍ତି । ମଞ୍ଚ ସମ୍ମୁଖରେ ସର୍ବପ୍ରଥମେ ଗ୍ରୀସ୍ ଦେଶର, ତା'ପରେ ବର୍ଣ୍ଣମାଳା କ୍ରମାନୁସାରେ ଅନ୍ୟାନ୍ୟ ଦେଶର ଓ ସର୍ବଶେଷରେ ଆୟୋଜକ ଦେଶର ପ୍ରତିନିଧିମାନେ ନିଜ ନିଜ ଦେଶର ଜାତୀୟ ପତାକାକୁ ଭୂମି ସହିତ ସମାନ୍ତରାଳଭାବେ ଧରି ଶୋଭାଯାତ୍ରାରେ ଯାଆନ୍ତି ।

**(ଙ) ଅଲିମ୍ପିକ୍ କ୍ରୀଡ଼ାର ଏପରି ନାମକରଣ କାହିଁକି କରାଯାଇଛି ?**

ଉ– ଖ୍ରୀ.ପୂ. ୭୭୬ରେ ଗ୍ରୀସ୍ ଦେଶରେ ପ୍ରଥମ କରି ଅଲିମ୍ପିକ୍ କ୍ରୀଡ଼ା ଅନୁଷ୍ଠିତ ହୋଇଥିଲା । କେତେକଙ୍କ ମତରେ ଗ୍ରୀକ୍‌ମାନେ ଗ୍ରୀସ୍‌ର ଅଲିମ୍ପିଆ ନାମକ ପାହାଡ଼ ଉପରେ ଥିବା ପ୍ରସିଦ୍ଧ ଦେବତା 'ଜିଉସ୍'ଙ୍କୁ ପୂଜା କରୁଥିଲେ । ତାଙ୍କୁ ଭକ୍ତି ଓ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ପ୍ରତି ଚାରିବର୍ଷରେ ଥରେ ସେଠାରେ ଏକ ବିରାଟ ମେଳାର ଆୟୋଜନ ହେଉଥିଲା । ଏଥିରେ ଯୋଗଦେଉଥିବା ଯୁବକମାନଙ୍କ ମଧ୍ୟରେ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହେଉଥିଲା । ଏହା ଅଲିମ୍ପିକ୍ କ୍ରୀଡ଼ା ନାମରେ ପରିଚିତ । ଆଉ କେହି କେହି କହନ୍ତି, ପ୍ରାଚୀନ ଗ୍ରୀସ୍‌ର ଆଲଫିଅସ୍ ନଦୀକୂଳରେ ଥିବା 'ଅଲିମ୍ପିଆ' ନାମକ ଏକ ବିରାଟ ପଡ଼ିଆରେ ଏହି କ୍ରୀଡ଼ାର ଆୟୋଜନ ହେଉଥିଲା । ଏହା ପାଞ୍ଚଦିନ ଯାଏ ଚାଲୁଥିଲା । ଏହା ମଧ୍ୟ ଗ୍ରୀକ୍ ଦେବତା ଜିଉସ୍‌ଙ୍କ ସମ୍ମାନାର୍ଥେ ଅନୁଷ୍ଠିତ ହେଉଥିଲା । ଅଲିମ୍ପିଆ ପଡ଼ିଆରେ ଅନୁଷ୍ଠିତ ହେଉଥିବାରୁ ଏହାର ନାମ ଥିଲା ଅଲିମ୍ପିକ୍ କ୍ରୀଡ଼ା ।



# ଓଡ଼ିଶାର ସଂସ୍କୃତି

• ଡକ୍ଟର ଚାରୁବାଳା ମହାନ୍ତି

ଜନ୍ମ : ୧୩.୨.୧୯୫୦

ମୃତ୍ୟୁ : ୧.୧୦.୧୯୯୬

## ଲେଖିକା ପରିଚୟ

ଡକ୍ଟର ଚାରୁବାଳା ମହାନ୍ତି (୧୯୫୦-୧୯୯୬) ଜଗତ୍‌ସିଂହପୁର ଜିଲ୍ଲାର ଅରେଇକଣା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ବହୁ ପ୍ରବନ୍ଧ ଓ କବିତା ପ୍ରକାଶ ପାଇଛି । '*ଭିଜା ରାତିର ସୂର୍ଯ୍ୟୋଦୟ*' ତାଙ୍କ ଲିଖିତ ଏକ କବିତା ସଂକଳନ ।

## ବିଷୟ ସୂଚନା

ସମାଜରେ ଘଟୁଥିବା ନାନାପ୍ରକାର ସମସ୍ୟାକୁ ଲେଖିକା ତାଙ୍କ ଲେଖାମାନଙ୍କରେ ରୂପ ଦେଇଛନ୍ତି । ଭାରତୀୟ ସଂସ୍କୃତିର କେନ୍ଦ୍ରବିନ୍ଦୁ ହେଉଛି ଉତ୍କଳ । ଉତ୍କଳର ପରମ୍ପରା ଓ ସଂସ୍କୃତି ମହାନ୍ । ନିଜ ପରମ୍ପରା ଓ ସଂସ୍କୃତିରୁ ଦୂରେଇଗଲେ ସାମାଜିକ ଜୀବନ ଦୁଃଖମୟ ହେବ । ଉକ୍ତ ପ୍ରବନ୍ଧରେ ଲେଖିକା ଓଡ଼ିଶାର ସଂସ୍କୃତିର ମହତ୍ତ୍ୱ ଓ ଆଦର୍ଶ ଉପରେ ଆଲୋଚନା କରିଛନ୍ତି ।

## ସାରକଥା

ଭାରତର ପ୍ରାଚୀନ ସଭ୍ୟତା କେତେ ମୁନିଋଷି ଓ ମହାପୁରୁଷଙ୍କଦ୍ୱାରା ପରିପୁଷ୍ଟ ହୋଇଛି । ଆଧ୍ୟାତ୍ମିକତା ହେଉଛି ଭାରତୀୟ ସଂସ୍କୃତିର ମୂଳାଧାର । ବିଜ୍ଞାନ, ସାହିତ୍ୟ, ସଙ୍ଗୀତ, ଚିତ୍ରକଳା, ଧର୍ମ, ଶିକ୍ଷା, ସ୍ଥାପତ୍ୟ ଆଦି ପ୍ରତ୍ୟେକ ସାଂସ୍କୃତିକ ବିଭବ ମୂଳରେ ଆଧ୍ୟାତ୍ମିକ ଭାବଧାରା ନିହିତ । ଏହା ଭାରତୀୟଙ୍କୁ ଏକ ବିଶିଷ୍ଟ ଜାତିରେ ପରିଣତ କରିଛି । ଓଡ଼ିଶାର ସଂସ୍କୃତି ସେହି ମହାନ୍ ସଂସ୍କୃତିର ଅଂଶବିଶେଷ । ଓଡ଼ିଶା ଆପଣାର ସ୍ୱତନ୍ତ୍ର ଆଦର୍ଶ ଓ ପରମ୍ପରାକୁ ନେଇ ସମଗ୍ର ବିଶ୍ୱରେ ଖ୍ୟାତିଲାଭ କରିଛି । ଓଡ଼ିଆ ଜାତିର ବୀରତ୍ୱ ଯୋଗୁଁ ଓଡ଼ିଶାର ସୀମା ଦିନେ ଗଙ୍ଗାଠାରୁ ଗୋଦାବରୀ ଯାଏ ବିସ୍ତୃତ ଥିଲା । ଚଣ୍ଡାଶୋକକୁ ଏହି ଓଡ଼ିଶା ଧର୍ମାଶୋକରେ ପରିଣତ କରିଥିଲା । ଓଡ଼ିଶାର ଧର୍ମପଦ ସମୂହ ସ୍ୱାର୍ଥ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲା ।

'ବସୁଧୈବ କୁଟୁମ୍ବକଂ' ଓଡ଼ିଆ ସଂସ୍କୃତିର ମୂଳ ଆଦର୍ଶ । ଶକ୍ତି, ଶିବ, ଜଗନ୍ନାଥ ଆରାଧନା ମାଧ୍ୟମରେ ଓଡ଼ିଶା ଏହି ଆଦର୍ଶକୁ ଅନୁସରଣ କରିଆସୁଛି । ଓଡ଼ିଆମାନେ ନାନା ପୂଜା, ଓଷା, ବ୍ରତ ପାଳନ କରନ୍ତି । ଜଗତର ହିତ ସାଧନପାଇଁ ଦେବତାଙ୍କ ଆଶୀର୍ବାଦ ଭିକ୍ଷା ଏସବୁ ପର୍ବପର୍ବାଣି ପାଳନର ଉଦ୍ଦେଶ୍ୟ । ଏସବୁ ପରସ୍ପର ମଧ୍ୟରେ ମିତ୍ରତା ବଢ଼ାଇବାରେ ସହାୟକ ହୋଇଛି । ମହାପ୍ରସାଦ, ମକରଚାଉଳ, ଆମ୍ବ ବଉଳ ଦେଇ ବନ୍ଧୁ ହେବା ଓଡ଼ିଶାର ଏକ ପ୍ରାଚୀନ ପରମ୍ପରା ।

ଓଡ଼ିଶାର ବିଭିନ୍ନ ଶିଳାଲିପି ଓ ମନ୍ଦିର ଏହାର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ସ୍ୱାକ୍ଷର ବହନ କରେ । କୋଣାର୍କର ସୂର୍ଯ୍ୟ ମନ୍ଦିର, ପୁରୀର ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜ ଓ ରାଜାରାଣୀ ମନ୍ଦିର, ଖିଚିଂର କୀଚକେଶ୍ୱରୀ ମନ୍ଦିର ଦେହରେ ଖୋଦିତ ମୂର୍ତ୍ତି ଓ ବିଭିନ୍ନ ଚିତ୍ରକଳା ଓଡ଼ିଆଙ୍କ ଶିଳ୍ପଚାତୁରୀର ନିଦର୍ଶନ । ସୁନାରୁପାର ତାରକସି କାମ, ପିତଳର ସୂକ୍ଷ୍ମ କାରୁକାର୍ଯ୍ୟ, ମୃଣ୍ମୟ ଶିଳ୍ପ, ଶିଙ୍ଗ କାମ, ଚାନ୍ଦୁଆ ଓ ପଟଚିତ୍ର ତିଆରି କ୍ଷେତ୍ରରେ ଓଡ଼ିଶା ପ୍ରସିଦ୍ଧି ଲାଭ କରିଛି ।

ଓଡ଼ିଶା ବସ୍ତ୍ରଶିଳ୍ପ କ୍ଷେତ୍ରରେ ପୃଥିବୀରେ ଖ୍ୟାତିଲାଭ କରିଛି । ସମ୍ବଲପୁର, ବ୍ରହ୍ମପୁର ଓ ନୂଆପାଟଣାର ହାତବୁଣା ଲୁଗା କାରିଗରୀ ନିପୁଣତାର ପରିଚାୟକ । ସୂକ୍ଷ୍ମବସ୍ତ୍ର ଓ ପଣ୍ୟଦ୍ରବ୍ୟ ନେଇ ଓଡ଼ିଆ ସାଧବପୁଅ ବୋଇତରେ ଦରିଆପାରିକୁ ଯାଇ ବାଣିଜ୍ୟ ବ୍ୟବସାୟ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧି ଦେଇଥିଲା ।

ଓଡ଼ିଆ ଭାଷା ପୃଥିବୀର ଏକ ଉନ୍ନତ ଭାଷାରୂପେ ମାନ୍ୟତାପ୍ରାପ୍ତ । ଓଡ଼ିଆ ଭାଷାରେ ଲିଖିତ *ମହାଭାରତ*, *ରାମାୟଣ*, *ଭାଗବତ*, ବହୁ ପୁରାଣ ଓ କାବ୍ୟକବିତା ଏହାର ସଂସ୍କୃତିକୁ ପରିପୁଷ୍ଟ କରିଛି । ଓଡ଼ିଆ ଭାଷାରେ ବହୁ ଢଗଢମାଳି ଓ ଲୋକଗଳ୍ପ ମଧ୍ୟ ପ୍ରଚଳିତ । ଓଡ଼ିଶାର ଉଚ୍ଚକୋଟୀର ନୃତ୍ୟ ଓ ସଙ୍ଗୀତ ଏହାର ମହାନ୍ ସଂସ୍କୃତିର ନିଦର୍ଶନ । ଛନ୍ଦୋମୟ ସୁଲଳିତ ଭଙ୍ଗୀପାଇଁ ଭାରତୀୟ ନୃତ୍ୟମାନଙ୍କ ମଧ୍ୟରେ ଓଡ଼ିଶୀ ସ୍ୱତନ୍ତ୍ର ସ୍ଥାନ ଲାଭ କରିଛି । ଲୋକ ପରମ୍ପରାକୁ ନେଇ ସମୃଦ୍ଧ ସମ୍ବଲପୁରୀ, ଛଉ, ଦଣ୍ଡ, ପାଇକ, ରଣପା, ଗୋଟିପୁଅ ଆଦି ନୃତ୍ୟ ଜୀବନକୁ ରସସିକ୍ତ କରିଥାଏ । ଓଡ଼ିଶୀ ନୃତ୍ୟ କେବଳ ଓଡ଼ିଶାରେ ନୁହେଁ, ଦେଶବିଦେଶରେ ବେଶ୍ ଆଦୃତ ହୋଇପାରିଛି । ପାଲା, ଦାସକାଠିଆ, ରାସଲୀଳା ପ୍ରଭୃତି ଓଡ଼ିଶାର ସାଂସ୍କୃତିକ ଜୀବନକୁ ଉନ୍ନତ କରିଛି ।

ଓଡ଼ିଶାର ସାମାଜିକ ଓ ପାରିବାରିକ ଜୀବନ ଖୁବ୍ ମଧୁର । ପରିବାରର ସମସ୍ତେ ସ୍ନେହ ଓ ପ୍ରୀତିରେ ବନ୍ଧା । ବିପଦ ଆପଦରେ ପଡ଼ୋଶୀମାନଙ୍କ ସାହାଯ୍ୟ ଓ ସହଯୋଗ ମିଳିଥାଏ । ଅତିଥିପରାୟଣତା ଓଡ଼ିଆ ଜାତିର ପ୍ରଧାନ ବୈଶିଷ୍ଟ୍ୟ । ସାଧାରଣ ବସନ, ଭୂଷଣ ଓ ଆଡ଼ମ୍ବରଶୂନ୍ୟ ଜୀବନଯାପନ କରିବାକୁ ଓଡ଼ିଆମାନେ ଭଲ ପାଆନ୍ତି । ଚାକଚାକ୍ୟ ପ୍ରଦର୍ଶନ ଅପେକ୍ଷା ସୁଗୁଣମଣ୍ଡିତ ହେବାକୁ ସେମାନେ ପସନ୍ଦ କରନ୍ତି ।

ଜ୍ଞାନବିଜ୍ଞାନର ପ୍ରସାର ହେତୁ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ ଅନେକ ପରିବର୍ତ୍ତନ ପରିଲକ୍ଷିତ ହେଉଛି । ପୁରାତନ ପର୍ବପର୍ବାଣିର ବିଲୋପ ସଙ୍ଗେ ସଙ୍ଗେ ନୂତନ ପର୍ବପର୍ବାଣି ସେ ସ୍ଥାନରେ ସୃଷ୍ଟି ହେଉଛି । ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଶିଳ୍ପ, ଚିତ୍ରକଳା ଓ ସାମାଜିକ ରୀତିନୀତି ବଦଳିଯାଉଛି । ଏ ପରିବର୍ତ୍ତନ ପ୍ରବାହରେ ଭାସି ନ ଯାଇ ଆପଣା ମୌଳିକତା ରକ୍ଷା କରି ପ୍ରଗତି ପଥରେ ଆଗେଇଯିବା ଆମର ଏକମାତ୍ର ଧ୍ୟେୟ ହେବା ଉଚିତ ।

## କଠିନ ଶବ୍ଦାର୍ଥ

ପ୍ରାଚୀନ – ପୁରୁଣା । ପରିପୁଷ୍ଟ – ପରିବର୍ଦ୍ଧିତ । ଆଧ୍ୟାତ୍ମିକତା – ଈଶ୍ୱର ବିଶ୍ୱାସ । ଅବିଚ୍ଛେଦ୍ୟ – ଯାହାକୁ ଅଲଗା କରିହେବ ନାହିଁ । ପରମ୍ପରା – ଚଳଣି । ସୃଜନୀଶକ୍ତି – ସୃଷ୍ଟି କରିବାର କ୍ଷମତା । ବିସ୍ତୃତ – ବିସ୍ତାରିତ । ଖ୍ୟାତି – ପ୍ରସିଦ୍ଧି । ବୈଶିଷ୍ଟ୍ୟ – ବିଶେଷତ୍ୱ । ବସୁଧା – ପୃଥିବୀ । କୁଟୁମ୍ବ – ପରିବାର । କାମନା – ଇଚ୍ଛା । ଆରାଧନା – ପୂଜା । ସ୍ଥାପତ୍ୟ – ଗୃହ ବା ମନ୍ଦିରର ନିର୍ମାଣକଳା । ଭାସ୍କର୍ଯ୍ୟ – ପଥର ଦେହରେ ମୂର୍ତ୍ତି ନିର୍ମାଣ । ନିଦର୍ଶନ – ନମୁନା । ଶିଳାଲିପି – ପଥର ଉପରେ ଖୋଳାଯାଇଥିବା ଲେଖା । ଦୃଷ୍ଟାନ୍ତ – ଉଦାହରଣ । ଦିଗ୍‌ଦର୍ଶନ – ବାଟ ଦେଖାଇବା । ସମୃଦ୍ଧ – ଋଦ୍ଧିମନ୍ତ, ଧନଶାଳୀ । ଐତିହାସିକ – ଇତିହାସ ସମ୍ବନ୍ଧୀୟ । ମିତ୍ରତା – ବନ୍ଧୁତା । ସଂହତି – ଏକତାଭାବ । ସ୍ୱାକ୍ଷର – ନିଜର ଅକ୍ଷର, ହସ୍ତାକ୍ଷର । ପର୍ଯ୍ୟଟକ – ଭ୍ରମଣକାରୀ । ଅମୂଲ୍ୟ – ମୂଲ୍ୟବାନ୍ । ପଣ୍ୟଦ୍ରବ୍ୟ – ବିକ୍ରୟଯୋଗ୍ୟ ଦ୍ରବ୍ୟ । ଆଦୃତ – ଆଦର ପାଇଥିବା । ଲାଘବ – କମାଇ ଦେବା । ବୟନଶିଳ୍ପ – ବସ୍ତ୍ରଶିଳ୍ପ ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

(କ) ସଂସ୍କୃତି କହିଲେ ଆମେ କ'ଣ ବୁଝୁ ?

ଉ – ସଂସ୍କୃତି କହିଲେ ଆମେ ସାମାଜିକ ଜୀବନର ପରମ୍ପରା, ଆଦର୍ଶ ଓ ରୀତିନୀତିକୁ ବୁଝୁ ।



(ଖ) ଦେଶ ଦେଶ ବା ଜାତି ଜାତି ମଧ୍ୟରେ ସଂସ୍କୃତିଗତ ପାର୍ଥକ୍ୟ କାହିଁକି ରହେ ?

ଉ – ଯେଉଁ ଜାତିର ଆଦର୍ଶ, ଭାବଧାରା, ଜ୍ଞାନ, ସୃଜନୀଶକ୍ତି ଓ ଆତ୍ମବିଶ୍ୱାସ ଯେତେ ବିସ୍ତୃତ, ସେ ଜାତିର ସଂସ୍କୃତି ସେତେ ଉନ୍ନତ । ଏହି ଦୃଷ୍ଟିରୁ ଦେଶ ଦେଶ ବା ଜାତି ଜାତି ମଧ୍ୟରେ ସଂସ୍କୃତିଗତ ପାର୍ଥକ୍ୟ ଦେଖାଯାଏ ।

(ଗ) ବିଭିନ୍ନ ପର୍ବପର୍ବାଣି ପାଳନଦ୍ୱାରା ଆମର କି ଉପକାର ହୁଏ ?

ଉ – ନାନା ପର୍ବପର୍ବାଣି ପାଳନ କରିବାଦ୍ୱାରା ଆମ ମନରେ ଭଗବଦ୍ ଚିନ୍ତା, ସତ୍ୟ, ଦୟା, ନିଷ୍ଠା, ପବିତ୍ରତା ଆଦି ଗୁଣର ବିକାଶ ଘଟେ । ସମାଜରେ ପରସ୍ପର ମଧ୍ୟରେ ମିତ୍ରଭାବ ବୃଦ୍ଧିପାଏ, ଭାବର ଆଦାନ ପ୍ରଦାନ ମଧ୍ୟ ହୁଏ । ଏହା ଜାତୀୟ ସଂହତି ଓ ଏକତା ରକ୍ଷା ଦିଗରେ ସହାୟକ ହୋଇଥାଏ ।

(ଘ) ଓଡ଼ିଶାର ସାମାଜିକ ଓ ପାରିବାରିକ ଜୀବନ ମଧୁର କାହିଁକି ?

ଉ – ଓଡ଼ିଶାର ସାମାଜିକ ଓ ପାରିବାରିକ ଜୀବନ ମଧୁର କାରଣ ପରିବାରରେ ସମସ୍ତେ ସ୍ନେହ, ପ୍ରୀତି ଓ ଆଦର ଯତ୍ନରେ ବନ୍ଧା । ବିଭିନ୍ନ ପାରିବାରିକ ଉତ୍ସବରେ ବନ୍ଧୁବାନ୍ଧବଙ୍କର ଉପସ୍ଥିତି ଉତ୍ସବକୁ ଆନନ୍ଦମୁଖର କରିଥାଏ । ବିପଦ ଆପଦବେଳେ ପଡ଼ୋଶୀ ତଥା ଅନ୍ୟମାନଙ୍କ ସାହାଯ୍ୟ, ସହଯୋଗ ଯୋଗୁଁ ଦୁଃଖ ଅନେକ ପରିମାଣରେ ଲାଘବ ହୋଇଥାଏ ।

(ଙ) ଓଡ଼ିଶାର ସଂସ୍କୃତି ବିଦେଶରେ କାହିଁକି ପରିଚିତ ?

ଉ – ସମଗ୍ର ବସୁଧାକୁ ଗୋଟିଏ କୁଟୁମ୍ବ ଭାବି ସମୁଦାୟ ମାନବ ଜାତିର ସୁଖ କାମନା କରିବା ଓଡ଼ିଆ ସଂସ୍କୃତିର ମୂଳ ଆଦର୍ଶ । ଏହି ସଂସ୍କୃତି ବିଶ୍ୱକୁ ଶାନ୍ତି, ସମତା ଓ ଭ୍ରାତୃତ୍ୱର ନିଦର୍ଶନ ଦେଇଛି । ସମୂହ ସ୍ୱାର୍ଥ ନିମନ୍ତେ ବ୍ୟକ୍ତିଗତ ସ୍ୱାର୍ଥକୁ ବଳି ଦେବା ଓଡ଼ିଆ ସଂସ୍କୃତିର ବୈଶିଷ୍ଟ୍ୟ । ଓଡ଼ିଶାର ସ୍ଥାପତ୍ୟ, ଭାସ୍କର୍ଯ୍ୟ, ବସ୍ତ୍ରଶିଳ୍ପ, ସାହିତ୍ୟ ଓ ଓଡ଼ିଶୀ ନୃତ୍ୟଯୋଗୁଁ ଓଡ଼ିଶାର ସଂସ୍କୃତି ବିଦେଶରେ ପରିଚିତ ହୋଇପାରିଛି ।

୨ । ତଳଲିଖିତ ବାକ୍ୟଗୁଡ଼ିକରୁ ରେଖାଙ୍କିତ ଶବ୍ଦଗୁଡ଼ିକୁ ଉଠାଇଦେଇ ତା' ସ୍ଥାନରେ ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ଲେଖ ।

(କ) ମୁନିଋଷିମାନେ ଏ ମାଟିରେ ଜନ୍ମଗ୍ରହଣ କରି ଏହାକୁ <u>ପରିବର୍ଦ୍ଧନ</u> କରିଛନ୍ତି ।

(ଖ) ଭାରତୀୟ ସଂସ୍କୃତିର ଆଧାର ହେଉଛି <u>ଈଶ୍ୱର ବିଶ୍ୱାସ</u> ।

(ଗ) ଓଡ଼ିଶାର ସଂସ୍କୃତି, ମହାନ୍ ଭାରତୀୟ ସଂସ୍କୃତିର <u>ଏପରି ଅଙ୍ଗ ଯାହାକୁ ଅଲଗା କରିହେବ ନାହିଁ</u> ।

(ଘ) ଧର୍ମପଦର କାହାଣୀ ତ୍ୟାଗର ଏକ ଉଜ୍ଜ୍ୱଳ <u>ଉଦାହରଣ</u> ।

(ଙ) <u>ବସ୍ତ୍ରଶିଳ୍ପରେ</u> ଓଡ଼ିଶା ପ୍ରାଚୀନ କାଳରୁ ସାରା ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛି ।

(ଚ) ବିଦେଶରେ ମଧ୍ୟ ଓଡ଼ିଶାର ନୃତ୍ୟକଳା <u>ଆଦରଲାଭ କରିଛି</u> ।

(ସମୃଦ୍ଧ, ବୟନଶିଳ୍ପ, ଅବିଚ୍ଛେଦ୍ୟ ଅଙ୍ଗ, ଦୃଷ୍ଟାନ୍ତ, ଆଧ୍ୟାତ୍ମିକତା, ଆଦୃତ)

ଉ – (କ) ମୁନିଋଷିମାନେ ଏ ମାଟିରେ ଜନ୍ମଗ୍ରହଣ କରି ଏହାକୁ <u>ସମୃଦ୍ଧ</u> କରିଛନ୍ତି ।

(ଖ) ଭାରତୀୟ ସଂସ୍କୃତିର ଆଧାର ହେଉଛି <u>ଆଧ୍ୟାତ୍ମିକତା</u> ।

(ଗ) ଓଡ଼ିଶାର ସଂସ୍କୃତି, ମହାନ୍ ଭାରତୀୟ ସଂସ୍କୃତିର <u>ଅବିଚ୍ଛେଦ୍ୟ ଅଙ୍ଗ</u> ।

(ଘ) ଧର୍ମପଦର କାହାଣୀ ତ୍ୟାଗର ଏକ ଉଜ୍ଜ୍ୱଳ <u>ଦୃଷ୍ଟାନ୍ତ</u> ।

(ଙ) <u>ବୟନଶିଳ୍ପରେ</u> ଓଡ଼ିଶା ପ୍ରାଚୀନ କାଳରୁ ସାରା ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛି ।

(ଚ) ବିଦେଶରେ ମଧ୍ୟ ଓଡ଼ିଶାର ନୃତ୍ୟକଳା <u>ଆଦୃତ</u> ।

୩। ନିମ୍ନ ଚକ୍ରରେ ଥିବା ଶବ୍ଦଗୁଡ଼ିକ ମଧ୍ୟରୁ ଯେଉଁଗୁଡ଼ିକ ସଂସ୍କୃତିକୁ ସମୃଦ୍ଧ କରିଛି, ତାକୁ ସଂସ୍କୃତି ସହ ଯୋଡ଼ି ଲେଖ।

ଉତ୍ତର




୪। **ଓଡ଼ିଶାର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ନମୁନା ଭାବରେ କିଛି ମନ୍ଦିରର ନାମ ଦିଆଯାଇଛି। ସେହିପରି ଅନ୍ୟ କେତୋଟି ମନ୍ଦିରର ନାମ ଲେଖ।**

ଜଗନ୍ନାଥ ମନ୍ଦିର, ଲିଙ୍ଗରାଜ ମନ୍ଦିର

ଉ – କୋଣାର୍କର ସୂର୍ଯ୍ୟ ମନ୍ଦିର, ଖିଚିଂର କୀଚକେଶ୍ୱରୀ ମନ୍ଦିର, ଭୁବନେଶ୍ୱରର ରାଜାରାଣୀ ମନ୍ଦିର।

୫। **ଓଡ଼ିଶାର କାରୁଶିଳ୍ପ ମଧ୍ୟରୁ 'ସୁନା ରୁପା'ର ତାରକସି କାମ ଅନ୍ୟତମ। ସେହିପରି ଓଡ଼ିଶାର ଅନ୍ୟ କାରୁଶିଳ୍ପର ନାମ ଲେଖ।**

ଉ – ପିତଳର ସୂକ୍ଷ୍ମ କାରୁକାର୍ଯ୍ୟ, ମୃଣ୍ମୟ ଶିଳ୍ପ, ଶିଙ୍ଗରୁ ତିଆରି ନାନା ପଦାର୍ଥ, ଚାନ୍ଦୁଆ, ପଟ୍ଟଚିତ୍ର।

୬। **ନିମ୍ନରେ ଗୋଟିଏ ଅନୁଚ୍ଛେଦ ଦିଆଯାଇଛି। ତାକୁ ପଢ଼ି ପ୍ରଶ୍ନସବୁ ତିଆରି କର, ଯାହାର ଉତ୍ତର ଏହି ଅନୁଚ୍ଛେଦରୁ ମିଳିବ।**

ସାମାଜିକ ଜୀବନର ପରମ୍ପରା, ଆଦର୍ଶ ଓ ରୀତିନୀତିକୁ ଆମେ ସଂସ୍କୃତି ବୋଲି କହିଥାଉ। ଯେଉଁ ଜାତିର ଆଦର୍ଶ, ଭାବଧାରା, ଜ୍ଞାନ, ସୃଜନୀଶକ୍ତି ଓ ଆତ୍ମବିଶ୍ୱାସ ଯେତେ ବିସ୍ତୃତ, ସେ ଜାତିର ସଂସ୍କୃତି ସେତେ ଉନ୍ନତ। ଏହି ଦୃଷ୍ଟିରୁ ଦେଶ ଦେଶ ବା ଜାତି ଜାତି ମଧ୍ୟରେ ସଂସ୍କୃତିଗତ ପାର୍ଥକ୍ୟ ସର୍ବଦା ବିଦ୍ୟମାନ। ଓଡ଼ିଶା ଆପଣାର ସ୍ୱତନ୍ତ୍ର ଆଦର୍ଶ ଓ ପରମ୍ପରାକୁ ନେଇ ସମଗ୍ର ବିଶ୍ୱରେ ଖ୍ୟାତିଲାଭ କରିଛି। ଉତ୍କଳର ସଂସ୍କୃତିକୁ ସମୃଦ୍ଧ କରିଛି ଏହାର ଐତିହାସିକ ଘଟଣାବଳୀ। ଓଡ଼ିଆ ଜାତିର ବୀରତ୍ୱ ଯୋଗୁଁ ଓଡ଼ିଶାର ସୀମା ଦିନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା। ଏହି ଓଡ଼ିଶାରେ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇଥିଲେ। ବ୍ୟକ୍ତିଗତ ସ୍ୱାର୍ଥକୁ ସମୂହ ସ୍ୱାର୍ଥ ପାଇଁ ଅକାତରରେ ବଳିଦେବା ଓଡ଼ିଆ ସଂସ୍କୃତିର ବୈଶିଷ୍ଟ୍ୟ। ଧର୍ମପଦ କାହାଣୀ ତା'ର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ।

ଉ – (୧) ସଂସ୍କୃତି କହିଲେ ଆମେ କ'ଣ ବୁଝୁ ?

(୨) କୌଣସି ଜାତିର ସଂସ୍କୃତି କିପରି ଉନ୍ନତ ହୋଇଥାଏ ?

(୩) ଦେଶ ଦେଶ ଓ ଜାତି ଜାତି ମଧ୍ୟରେ ସଂସ୍କୃତିଗତ ପାର୍ଥକ୍ୟ କାହିଁକି ରହିଥାଏ ?

(୪) ଓଡ଼ିଶା କାହିଁକି ସମଗ୍ର ବିଶ୍ୱରେ ଖ୍ୟାତିଲାଭ କରିଛି ?



(୫) ଉତ୍କଳର ସଂସ୍କୃତି କିପରି ସମୃଦ୍ଧ ହୋଇଛି ?

(୬) ଦିନେ ଓଡ଼ିଶାର ସୀମା କେଉଁଠାରୁ କେଉଁଯାଏ ବିସ୍ତୃତ ଥିଲା ?

(୭) ଚଣ୍ଡାଶୋକ କେଉଁଠି ଧର୍ମାଶୋକରେ ପରିଣତ ହୋଇଥିଲେ ?

(୮) ଓଡ଼ିଆ ସଂସ୍କୃତିର ବୈଶିଷ୍ଟ୍ୟ କ'ଣ ?

(୯) ଧର୍ମପଦର କାହାଣୀ କେଉଁ ଶିକ୍ଷା ଦିଏ ?

୭। **ସରଳ ଭାଷାରେ ବୁଝାଇ ଲେଖ।**

**(କ) ସମଗ୍ର ବିଶ୍ୱକୁ ଏହି ସଂସ୍କୃତି ଦେଇଛି ଶାନ୍ତି, ସମତା ଓ ଭ୍ରାତୃତ୍ୱର ଦିଗ୍‌ଦର୍ଶନ।**

ଉ – *ସମଗ୍ର ବିଶ୍ୱକୁ ...................... ଭ୍ରାତୃତ୍ୱର ଦିଗ୍‌ଦର୍ଶନ।*

ଉକ୍ତ ଗଦ୍ୟାଂଶଟି ଡକ୍ଟର ଚାରୁବାଳା ମହାନ୍ତିଙ୍କ ଲିଖିତ *'ଓଡ଼ିଶାର ସଂସ୍କୃତି'* ବିଷୟରୁ ଉଦ୍ଧୃତ। ଏଠାରେ ଓଡ଼ିଶାର ସଂସ୍କୃତିର ମହାନତା ସମ୍ପର୍କରେ ଆଲୋକପାତ କରାଯାଇଛି।

ଓଡ଼ିଶା ଆପଣାର ସଂସ୍କୃତି ଓ ପରମ୍ପରାକୁ ନେଇ ସାରା ପୃଥିବୀରେ ବେଶ୍ ପ୍ରସିଦ୍ଧ। ଓଡ଼ିଆ ଜାତିର ବୀରତ୍ୱ ଯୋଗୁଁ ଏହାର ସୀମା ଦିନେ ଗଙ୍ଗାଠାରୁ ଗୋଦାବରୀଯାଏ ବିସ୍ତୃତ ଥିଲା। ଏଇ ମାଟିରେ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇଥିଲେ। ସମୂହ ସ୍ୱାର୍ଥପାଇଁ ଓଡ଼ିଆ ପୁଅ ଆପଣାର ସ୍ୱାର୍ଥକୁ ବଳିଦିଏ। ଧର୍ମପଦ ତା'ର ଜ୍ୱଳନ୍ତ ଉଦାହରଣ। ସମଗ୍ର ମାନବଜାତିକୁ ନିଜ କୁଟୁମ୍ବ ଭାବି ସେମାନଙ୍କ ସୁଖ କାମନା କରିବା ଓଡ଼ିଆ ସଂସ୍କୃତିର ମୂଳ ଆଦର୍ଶ। ଶିବ, ଶକ୍ତି ଓ ଜଗନ୍ନାଥଙ୍କ ଆରାଧନା କରି ଓଡ଼ିଶା ସମଗ୍ର ମାନବ ଜାତିକୁ ଆପଣା କରିନେଇଛି। ସମଗ୍ର ବିଶ୍ୱରେ ଏହି ସଂସ୍କୃତି ଶାନ୍ତି, ସମତା ଓ ଭ୍ରାତୃତ୍ୱର ବାର୍ତ୍ତା ପ୍ରଚାର କରିଛି।

ବାସ୍ତବରେ ଓଡ଼ିଶାର ସଂସ୍କୃତି ଅନନ୍ୟ।

**(ଖ) ନୃତ୍ୟ ମାଧ୍ୟମରେ ଓଡ଼ିଶାର ସଂସ୍କୃତି ସମଗ୍ର ବିଶ୍ୱରେ ପ୍ରତିଷ୍ଠାଲାଭ କରିଛି।**

ଉ – *ନୃତ୍ୟ ମାଧ୍ୟମରେ ...................... ପ୍ରତିଷ୍ଠାଲାଭ କରିଛି।*

ଉକ୍ତ ଗଦ୍ୟାଂଶଟି ଡକ୍ଟର ଚାରୁବାଳା ମହାନ୍ତିଙ୍କ ଲିଖିତ *'ଓଡ଼ିଶାର ସଂସ୍କୃତି'* ପ୍ରବନ୍ଧରୁ ଆସିଅଛି। ଏଠାରେ ଓଡ଼ିଶାର ନୃତ୍ୟକଳା କିପରି ବିଶ୍ୱରେ ପ୍ରସିଦ୍ଧିଲାଭ କରିଛି, ତାହା ବର୍ଣ୍ଣିତ ହୋଇଛି।

ନୃତ୍ୟ ଓ ସଙ୍ଗୀତ ସଂସ୍କୃତିର ଅନ୍ୟତମ ବିଭବ। ଓଡ଼ିଶାର ଉଚ୍ଚକୋଟୀର ନୃତ୍ୟସଙ୍ଗୀତ ଏହାର ନିଦର୍ଶନ। ଛନ୍ଦୋମୟ ସୁଲଳିତ ଭଙ୍ଗୀ ନିମନ୍ତେ ଭାରତୀୟ ନୃତ୍ୟମାନଙ୍କ ମଧ୍ୟରେ ଓଡ଼ିଶୀ ନୃତ୍ୟର ସ୍ଥାନ ସ୍ୱତନ୍ତ୍ର। ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲୋକ-ପରମ୍ପରାକୁ ନେଇ ଗଢ଼ିଉଠିଥିବା ସମ୍ବଲପୁରୀ, ଛଉ, ଦଣ୍ଡ, ପାଇକ, ରଣପା ଓ ଗୋଟିପୁଅ ଆଦି ଲୋକନୃତ୍ୟ ଜୀବନକୁ ସରସ, ସୁନ୍ଦର କରିଥାଏ। ପାଲା, ଦାସକାଠିଆ, ଯାତ୍ରା, ରାମଲୀଳା ପ୍ରଭୃତି ମାଧ୍ୟମରେ ଓଡ଼ିଆ ସାହିତ୍ୟ ବହୁ କାଳରୁ ସୁପ୍ରଚାରିତ ହୋଇ ଓଡ଼ିଶାର ସାଂସ୍କୃତିକ ଜୀବନକୁ ଉନ୍ନତ କରିଛି। ଦେଶବିଦେଶରେ ଓଡ଼ିଶାର ନୃତ୍ୟକଳା ବିଶେଷ ଭାବରେ ଆଦରଲାଭ କରିଛି। ଏହାଦ୍ୱାରା ଓଡ଼ିଶାର ସଂସ୍କୃତି ବିଶ୍ୱରେ ପ୍ରତିଷ୍ଠା ଲାଭ କରିଛି।

**(ଗ) ବାହ୍ୟ ଚାକଚକ୍ୟ ଅପେକ୍ଷା ଅନ୍ତରର ସଦ୍‌ଗୁଣରେ ମଣ୍ଡିତ ହେବାକୁ ଓଡ଼ିଆ ଶ୍ରେୟ ମନେକରେ।**

ଉ – *ବାହ୍ୟ ଚାକଚକ୍ୟ .......................... ଶ୍ରେୟ ମନେକରେ।*

ଉକ୍ତ ଗଦ୍ୟାଂଶଟି ଡକ୍ଟର ଚାରୁବାଳା ମହାନ୍ତିଙ୍କ ଲିଖିତ *'ଓଡ଼ିଶାର ସଂସ୍କୃତି'* ବିଷୟରୁ ଆସିଅଛି। ଏଠାରେ ଓଡ଼ିଶ ଜନଜୀବନର ମହତ୍ତ୍ୱ ବର୍ଣ୍ଣିତ ହୋଇଛି।

ଓଡ଼ିଶାର ସାମାଜିକ ଓ ପାରିବାରିକ ଜୀବନ ମହାନ୍। ଓଡ଼ିଆ ପରିବାରରେ ସମସ୍ତେ ପରସ୍ପର ସ୍ନେହ, ପ୍ରୀତି ଓ ଆଦର ଯତ୍ନରେ ବନ୍ଧା। ବିଭିନ୍ନ ପାରିବାରିକ ଉତ୍ସବରେ ବନ୍ଧୁବାନ୍ଧବ ଓ ଆତ୍ମୀୟସ୍ୱଜନମାନଙ୍କୁ ଶଙ୍ଖୁଳିବା ଏକ ସାଧାର

ପ୍ରଥା । ବନ୍ଧୁବାନ୍ଧବମାନଙ୍କ ଉପସ୍ଥିତି ଉତ୍ସବକୁ ଆନନ୍ଦମୁଖର କରିଥାଏ । ସେମାନଙ୍କର ଶାରୀରିକ ଓ ଆର୍ଥିକ ସହଯୋଗଦ୍ୱାରା କର୍ତ୍ତାଙ୍କ କାମ ସହଜ ହୋଇଥାଏ । ବିପଦ ଆପଦବେଳେ ପଡ଼ୋଶୀ ତଥା ଅନ୍ୟମାନଙ୍କ ସାହାଯ୍ୟ ମଧ୍ୟ ଦୁଃଖକୁ ଅନେକ ପରିମାଣରେ ଲାଘବ କରେ । ଅତିଥିପରାୟଣତା ଓଡ଼ିଆ ଜାତିର ଅନ୍ୟତମ ବୈଶିଷ୍ଟ୍ୟ । ବସନ, ଭୂଷଣ ଓ ଚଳଣିରେ ଓଡ଼ିଆମାନେ ଆଡ଼ମ୍ବରଶୂନ୍ୟ ଓ ସରଳ । ବାହ୍ୟ ଚାକଚକ୍ୟ ଅପେକ୍ଷା ଓଡ଼ିଆମାନେ ସଦ୍‌ଗୁଣର ବିକାଶ କରିବାକୁ ଚାହାଁନ୍ତି; ତେଣୁ ସେମାନଙ୍କ ଦୃଷ୍ଟି ଅନ୍ତର୍ମୁଖୀ ।

୮ । **ଯେପରି 'ସମାଜ'ରୁ 'ସାମାଜିକ' ହୁଏ, ସେହିପରି ତଳେ ଦିଆଯାଇଥିବା ଶବ୍ଦଗୁଡ଼ିକର ରୂପ କଅଣ ହେବ ଲେଖ ।**

ପରିବାର, ବ୍ୟବହାର, ଶରୀର, ସମୂହ, ସଂସ୍କୃତି, ଧର୍ମ, ପରମ୍ପରା

ଉ – ପରିବାର – ପାରିବାରିକ   ବ୍ୟବହାର – ବ୍ୟାବହାରିକ

ଶରୀର – ଶାରୀରିକ   ସମୂହ – ସାମୂହିକ

ସଂସ୍କୃତି – ସାଂସ୍କୃତିକ   ଧର୍ମ – ଧାର୍ମିକ

ପରମ୍ପରା – ପାରମ୍ପରିକ

୯ । **ନିମ୍ନରେ ଦିଆଯାଇଥିବା ଶବ୍ଦଗୁଡ଼ିକୁ ନେଇ ବାକ୍ୟ ଗଠନ କର ।**

ବିଭବ, ସମନ୍ୱୟ, ସ୍ୱାକ୍ଷର, ସମୃଦ୍ଧ, ବିଦ୍ୟମାନ

ଉ– ବିଭବ – କଳା ଓ ସ୍ଥାପତ୍ୟ ସଂସ୍କୃତିର ଅନ୍ୟତମ **ବିଭବ** ।

ସମନ୍ୱୟ – ମୁନିଋଷିମାନେ ସର୍ବଧର୍ମ **ସମନ୍ୱୟ** ଉପରେ ଗୁରୁତ୍ୱ ଦେଇଛନ୍ତି ।

ସ୍ୱାକ୍ଷର – ଏହି ଲେଖାଟି ଲୋକଙ୍କ ମୌଳିକ ବିଚାରଧାରାର **ସ୍ୱାକ୍ଷର** ବହନ କରିଛି ।

ସମୃଦ୍ଧ – ଓଡ଼ିଆ ଭାଷା ସାହିତ୍ୟ ବହୁ କଥା କାହାଣୀଦ୍ୱାରା **ସମୃଦ୍ଧ** ହୋଇପାରିଛି ।

ବିଦ୍ୟମାନ – କାରୁକାର୍ଯ୍ୟ ବିମଣ୍ଡିତ କୋଣାର୍କ ମନ୍ଦିର ଆଜି ସଗର୍ବେ **ବିଦ୍ୟମାନ** ।

### ତୁମ ପାଇଁ କାମ

୧ । ତୁମ ଅଞ୍ଚଳରେ ପାଳିତ ହେଉଥିବା ପର୍ବପର୍ବାଣିର ତାଲିକା କର ।

୨ । ବିଭିନ୍ନ ପର୍ବ ଦିନରେ ତୁମ ଘରେ ତିଆରି କରାଯାଉଥିବା ପିଠାପଣାର ନାମ ଲେଖ ।

୩ । ତୁମ ଖାତାରେ ଗୋଟିଏ ଲୁଗାଧଡ଼ିର ଚିତ୍ର ଅଙ୍କନ କର ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧ । **ସଂକ୍ଷେପରେ ଉତ୍ତର ଦିଅ ।**

**(କ) ଓଡ଼ିଆମାନଙ୍କର ପର୍ବପର୍ବାଣି ପାଳନର ମୂଳ ଲକ୍ଷ୍ୟ କ'ଣ ?**

ଉ– ଗୃହ, ଶରୀର ଓ ମନକୁ ନିର୍ମଳ କରି ବିଶ୍ୱାସ ଓ ନିଷ୍ଠାର ସହ ପୂଜା ଅର୍ଚ୍ଚନା ମାଧ୍ୟମରେ ଓଡ଼ିଆମାନେ ଜଗତର ହିତପାଇଁ ଦେବତାଙ୍କ ଆଶୀର୍ବାଦ ପାଇବା ନିମନ୍ତେ ବିଭିନ୍ନ ପର୍ବପର୍ବାଣି ପାଳନ କରନ୍ତି । ଏହାହିଁ ସେମାନଙ୍କର ପର୍ବ ପାଳନର ମୂଳ ଲକ୍ଷ୍ୟ ।



**(ଖ) ଓଡ଼ିଶୀ ନୃତ୍ୟ ନୃତ୍ୟକଳାରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି କାହିଁକି ?**

ଉ– ଓଡ଼ିଶାର ବିଭିନ୍ନ ନୃତ୍ୟକଳା ମଧ୍ୟରେ 'ଓଡ଼ିଶୀ' ନୃତ୍ୟ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଛନ୍ଦୋମୟ ସୁଲଳିତ ଭଙ୍ଗୀ ନିମନ୍ତେ ଭାରତୀୟ ନୃତ୍ୟମାନଙ୍କ ମଧ୍ୟରେ ଏହାର ସ୍ଥାନ ଉଚ୍ଚରେ । ତେଣୁ ଏହି ନୃତ୍ୟ ବିଦେଶୀମାନଙ୍କୁ ମଧ୍ୟ ଆକୃଷ୍ଟ କରିଥାଏ ।

**(ଗ) 'ଓଡ଼ିଶାର ସଂସ୍କୃତି' ପ୍ରବନ୍ଧଟି ଆମକୁ କି ଶିକ୍ଷା ଦିଏ ?**

ଉ– *'ଓଡ଼ିଶାର ସଂସ୍କୃତି'* ପ୍ରବନ୍ଧଟି ଆମର ଗୌରବମୟ ସଂସ୍କୃତି ଓ ପରମ୍ପରାର ଭାବଧାରା ବହନ କରିଛି । ବର୍ତ୍ତମାନ ଜ୍ଞାନ ବିଜ୍ଞାନର ପ୍ରସାର ଫଳରେ ମାନବଜାତି କୁପଥଗାମୀ ହେଉଛି । ତା'ର ସାମାଜିକ ଓ ସାଂସ୍କୃତିକ ଜୀବନରେ ନାନା ପରିବର୍ତ୍ତନ ଘଟୁଛି । କିନ୍ତୁ ଯାହାହେଉ ପଛକେ ଆମେ ଆମର ସଂସ୍କୃତି ଓ ପରମ୍ପରାରୁ କେବେ ବିଚ୍ଛିନ୍ନ ହେବା ନାହିଁ । ଏପରି କଲେ ନିଜର ସମ୍ମାନହାନି ଘଟିବା ସଙ୍ଗେ ସଙ୍ଗେ ଓଡ଼ିଶା ତା'ର ପୂର୍ବ ଗୌରବ ହରାଇ ବସିବ । ତେଣୁ ଆମେ ଓଡ଼ିଶାବାସୀ ଆପଣାର ମୌଳିକତାକୁ ବଜାୟ ରଖି ବିକାଶ ପଥରେ ଅଗ୍ରସର ହେବା ଉଚିତ । ଆମ୍ଭେମାନେ ଉକ୍ତ ପ୍ରବନ୍ଧଟିରୁ ଏହି ଶିକ୍ଷାଲାଭ କରୁ ।

**(ଘ) ଧର୍ମପଦ କାହାଣୀ ଆମକୁ କ'ଣ ଶିକ୍ଷାଦିଏ ?**

ଉ– ବ୍ୟକ୍ତିଗତ ସ୍ୱାର୍ଥକୁ ସମୂହ ସ୍ୱାର୍ଥପାଇଁ ଅକାତରରେ ବଳିଦେବାକୁ ଧର୍ମପଦ କାହାଣୀ ଆମକୁ ଶିକ୍ଷା ଦିଏ । ଅର୍ଥାତ୍ ଭୋଗରେ ନୁହେଁ, ତ୍ୟାଗରେ ଆମକୁ ବଞ୍ଚିବାକୁ ହେବ ।

**(ଙ) ଭାରତୀୟ ସଂସ୍କୃତିର ଆଧାର କ'ଣ ?**

ଉ– ଭାରତୀୟ ସଂସ୍କୃତିର ଆଧାର ହେଉଛି ଆଧ୍ୟାତ୍ମିକତା ବା ଈଶ୍ୱର ବିଶ୍ୱାସ ।

**(ଚ) ଓଡ଼ିଶାର୍ ସ୍ଥାପତ୍ୟର କେଉଁ ନିଦର୍ଶନ ରହିଛି ?**

ଉ– ଓଡ଼ିଶାର ସ୍ଥାପତ୍ୟର ନିଦର୍ଶନ ରୂପେ କୋଣାର୍କର ସୂର୍ଯ୍ୟମନ୍ଦିର, ପୁରୀର ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜ ଓ ରାଜାରାଣୀ ମନ୍ଦିର, ଖିଚିଂର କୀଚକେଶ୍ୱରୀ ମନ୍ଦିର ଦେହରେ ଖୋଦିତ ମୂର୍ତ୍ତି ଓ ବିଭିନ୍ନ ଚିତ୍ରକଳା ଏ ଜାତିର କଳାଚାତୁରୀର ମହନୀୟତା ଦର୍ଶାଇଛି ।

**(ଛ) ଓଡ଼ିଶାର ପାଞ୍ଚଗୋଟି ସୁନ୍ଦର ହସ୍ତଶିଳ୍ପର ନାମ ଲେଖ ।**

ଉ– ଓଡ଼ିଶାର ପାଞ୍ଚଗୋଟି ସୁନ୍ଦର ହସ୍ତଶିଳ୍ପ ହେଲା – (୧) ସୁନାରୁପାର ତାରକସି କାମ, (୨) ପିତଳର ସୂକ୍ଷ୍ମ କାରୁକାର୍ଯ୍ୟ, (୩) ଶିଙ୍ଗରୁ ତିଆରି ବିଭିନ୍ନ ପଦାର୍ଥ, (୪) ଚାନ୍ଦୁଆ, (୫) ପଟ୍ଟଚିତ୍ର ।

**(ଜ) ଓଡ଼ିଶାର କେଉଁ କୁଟୀରଶିଳ୍ପ ବିଶ୍ୱପ୍ରସିଦ୍ଧ ?**

ଉ– ଓଡ଼ିଶାର କୁଟୀର ଶିଳ୍ପଭାବେ ବୟନଶିଳ୍ପ ବିଶ୍ୱପ୍ରସିଦ୍ଧ । ସମ୍ବଲପୁର, ବ୍ରହ୍ମପୁର ଓ ନୂଆପାଟଣାର ହାତବୁଣା ବସ୍ତ୍ର ଓଡ଼ିଆ କାରିଗର ହାତର କଳାନିପୁଣତାକୁ ବିଶ୍ୱ ସମ୍ମୁଖରେ ଉପସ୍ଥାପନ କରିଥାଏ ।

**(ଝ) ଓଡ଼ିଆ ଭାଷାରେ ରଚିତ ପୁରାଣ ଓ କାବ୍ୟ-କବିତାଗୁଡ଼ିକ ଓଡ଼ିଶାର ସଂସ୍କୃତିକୁ ସମୃଦ୍ଧ କରିଛି କିପରି ?**

ଉ– ଓଡ଼ିଆ ଭାଷାରେ ରଚିତ *ମହାଭାରତ, ରାମାୟଣ, ଭାଗବତ* ଏବଂ ଅନ୍ୟ ପୁରାଣସବୁ ସୁନ୍ଦର ଛନ୍ଦଲହରୀରେ ଓଡ଼ିଶାର ପୁରପଲ୍ଲୀରେ ଶ୍ରଦ୍ଧା ଓ ଭକ୍ତିରେ ପାଠ କରାଯାଏ । ଏବେ ମଧ୍ୟ ବହୁ ଢଗଢ଼ମାଳି, ଲୋକଗୀତ ଓ ଲୋକଗଳ୍ପ ସମାଜରେ ଆଦରଲାଭ କରିଛି । ଏଗୁଡ଼ିକ ଓଡ଼ିଶାର ସଂସ୍କୃତିକୁ ସମୃଦ୍ଧ କରିଛି ।

**(ଞ) ଓଡ଼ିଶାର ଚାରିଗୋଟି ଲୋକନୃତ୍ୟର ନାମ ଲେଖ ।**

ଉ– ଓଡ଼ିଶାର ଚାରିଗୋଟି ଲୋକନୃତ୍ୟର ନାମ ହେଲା – (୧) ସମ୍ବଲପୁରୀ ନୃତ୍ୟ, (୨) ଦଣ୍ଡ ନୃତ୍ୟ, (୩) ଛଉ ନୃତ୍ୟ, (୪) ଗୋଟିପୁଅ ନୃତ୍ୟ ।

**(ଟ) କେଉଁ କାରଣରୁ ଓଡ଼ିଶାର ସାମାଜିକ ରୀତିନୀତିରେ ପରିବର୍ତ୍ତନ ଦେଖାଯାଇଛି ?**

ଉ– ଜ୍ଞାନବିଜ୍ଞାନର ପ୍ରସାର ଫଳରେ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ ନାନା ପରିବର୍ତ୍ତନ ଘଟିଛି । ପୂର୍ବର କେତେକ ପର୍ବପର୍ବାଣି ଲୋପ ହୋଇ ନୂଆ ପର୍ବର ସୃଷ୍ଟି ହୋଇଛି ଏବଂ ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଶିଳ୍ପ, ଚିତ୍ରକଳା ଓ ସାମାଜିକ ରୀତିନୀତିରେ ପରିବର୍ତ୍ତନ ଘଟିଛି ।

**୨ । ସରଳ ଭାଷାରେ ବୁଝାଇ ଦିଅ ।**

**(କ) ଏହି ପରିବର୍ତ୍ତନର ପ୍ରବାହରେ ଆପଣାର ମୌଳିକତାକୁ ବଜାୟ ରଖି ବିକାଶ ପଥରେ ଅଗ୍ରସର ହେବାହିଁ ଆମର ଲକ୍ଷ୍ୟ ।**

ଉ – *ଏହି ପରିବର୍ତ୍ତନର ........................ ଆମର ଲକ୍ଷ୍ୟ ।*

ଉକ୍ତ ଗଦ୍ୟାଂଶଟି ଡକ୍ଟର ଚାରୁବାଳା ମହାନ୍ତିଙ୍କ ଲିଖିତ *'ଓଡ଼ିଶାର ସଂସ୍କୃତି'* ବିଷୟରୁ ଆସିଅଛି । ଏଠାରେ ଲେଖିକା ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ସାଂସ୍କୃତିକ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେଇଛନ୍ତି ।

ଜ୍ଞାନବିଜ୍ଞାନର ପ୍ରସାର ଫଳରେ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ ପରିବର୍ତ୍ତନ ଘଟିଛି । ପୂର୍ବର କେତେକ ପର୍ବପର୍ବାଣି ଲୋପ ପାଇବା ସଙ୍ଗେ ସଙ୍ଗେ କେତେକ ନୂତନ ପର୍ବପର୍ବାଣି ସୃଷ୍ଟି ହୋଇଛି । ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଶିଳ୍ପ, ଚିତ୍ରକଳା ଓ ସାମାଜିକ ରୀତିନୀତିରେ ମଧ୍ୟ ବହୁ ପରିବର୍ତ୍ତନ ଦେଖାଦେଇଛି । ଏହି ପରିବର୍ତ୍ତନର ପ୍ରବାହରେ ଆପଣାର ମୌଳିକତା ବଜାୟ ରଖିବା ଉଚିତ । କାରଣ ନିଜସ୍ୱତାକୁ ହଜେଇ ଦେଲେ ସଂସ୍କୃତିର ସ୍ୱାତନ୍ତ୍ର୍ୟ ପ୍ରତି ସନ୍ଦେହ ସୃଷ୍ଟି ହୁଏ । ତେଣୁ ସାଂସ୍କୃତିକ ମୌଳିକତାକୁ ବଜାୟ ରଖି ଆମକୁ ଆଗେଇବାକୁ ପଡ଼ିବ । ପ୍ରଗତି ସହ ନିଜ ସାଂସ୍କୃତିକ ସ୍ୱାତନ୍ତ୍ର୍ୟର ସହାବସ୍ଥାନ ଆମର ଲକ୍ଷ୍ୟ ହେବା ଉଚିତ ।

**(ଖ) ''ଆମ ଓଡ଼ିଶାର ସଂସ୍କୃତି ଏହି ମହାନ ଭାରତୀୟ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ ।''**

ଉ – *ଆମ ଓଡ଼ିଶାର ........................ ଅବିଚ୍ଛେଦ୍ୟ ଅଙ୍ଗ ।*

ଶଂସିତ ଗଦ୍ୟାଂଶଟି ଆମ ପଠିତ ''ଆମ ସାହିତ୍ୟ ପୁସ୍ତକର 'ଓଡ଼ିଶାର ସଂସ୍କୃତି' ବିଷୟରୁ ଉଦ୍ଧୃତ । ଏଠାରେ ଲେଖିକା ଡଃ ଚାରୁବାଳା ମହାନ୍ତି ଭାରତୀୟ ଓ ଉତ୍କଳୀୟ ସଂସ୍କୃତି ମଧ୍ୟରେ ଥିବା ଐକ୍ୟ ବିଷୟରେ ସୂଚନା ପ୍ରଦାନ କରିଛନ୍ତି ।

ଏ ଦେଶ ମୁନିଋଷି ଓ ମହାପୁରୁଷମାନଙ୍କର ଦେଶ । ଏ ଦେଶର ସଂସ୍କୃତି ଅତି ପ୍ରାଚୀନ । ଧର୍ମ ଏହାର ଭିତ୍ତିଭୂମି । ଏ ସଂସ୍କୃତିର ଦାନ ସମଗ୍ର ମାନବ ସଭ୍ୟତାକୁ ପ୍ରଭାବିତ କରିଛି । ଏହି ମହାଭାରତୀୟ ସଂସ୍କୃତିର ମହାନତାରେ ବିଭିନ୍ନ ରାଜ୍ୟର ସଂସ୍କୃତି ବିଶେଷ ଭାବେ ଅନୁପ୍ରାଣିତ ହୋଇଛି । ଆମ ଓଡ଼ିଶା ଏହି ପ୍ରାଚୀନ ମହାନ ସଂସ୍କୃତିର ସଂସ୍ପର୍ଶରେ ଆସିଛି । ଆମ ରାଜ୍ୟର ସଂସ୍କୃତିକୁ ଭାରତୀୟ ସଂସ୍କୃତିର ଏକ ସ୍ୱତନ୍ତ୍ର ବିକଶିତ ରୂପ ଭାବରେ ପ୍ରକାଶ କରାଯାଇଛି । ଆମର ଆଚାର ବିଚାର, ଚାଲିଚଳନ ଓ ଭାଷା, ସାହିତ୍ୟ, କଳା, ଭାସ୍କର୍ଯ୍ୟ ଆଦି ବିଭିନ୍ନ ଦୃଷ୍ଟିରୁ ଅଲଗା ଜଣାଯାଉଥିଲେ ମଧ୍ୟ ଏହା ମହାଭାରତୀୟ ସଂସ୍କୃତିଦ୍ୱାରା ଉଦ୍‌ବୁଦ୍ଧ ହୋଇଛି । ଏଠାରେ ଅନୈକ୍ୟ ଭିତରେ ଐକ୍ୟ ପ୍ରତିଷ୍ଠିତ ହୋଇଛି ।

ବାସ୍ତବରେ ପ୍ରସଙ୍ଗଟି ପ୍ରଶଂସନୀୟ ଅଟେ ।

**୩ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।**

**(କ) ଓଡ଼ିଶାର ସାଂସ୍କୃତିକ ଜୀବନରେ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତର ଗୁରୁତ୍ୱ ବିଚାର କର ।**

ଉ– ପ୍ରତେକ ଦେଶର ସଂସ୍କୃତିକୁ ତାହାର ନୃତ୍ୟ ଓ ସଙ୍ଗୀତ ଋଦ୍ଧିମନ୍ତ କରିଥାଏ । ତେଣୁ ନୃତ୍ୟ ଓ ସଙ୍ଗୀତ ସଂସ୍କୃତିର ଅନ୍ୟତମ ବିଭାବ ଅଟେ । ଓଡ଼ିଶାର ଉଚ୍ଚକୋଟୀର ନୃତ୍ୟ ଓ ସଙ୍ଗୀତ ଏହାର ମହାନ୍ ସଂସ୍କୃତିର ନିଦର୍ଶନ । ଛନ୍ଦୋମୟ ସୁଲଳିତ ଭଙ୍ଗୀ ନିମନ୍ତେ ଭାରତୀୟ ନୃତ୍ୟମାନଙ୍କ ମଧ୍ୟରେ ଓଡ଼ିଶୀ ନୃତ୍ୟ ସ୍ୱତନ୍ତ୍ର ସ୍ଥାନ ଲାଭ କରିଛି । କେବଳ ଓଡ଼ିଶାରେ ନୁହେଁ ଦେଶ ବିଦେଶରେ ମଧ୍ୟ ଓଡ଼ିଶୀ ନୃତ୍ୟ ଆଦୃତି ଲାଭ କରିଛି । ସେହିପରି ଓଡ଼ିଶୀ ସଙ୍ଗୀତ ମଧ୍ୟ ଓଡ଼ିଶାର ସଂସ୍କୃତିକୁ ମହିମାମଣ୍ଡିତ କରିଛି ।



**(ଖ) ଓଡ଼ିଶାର ଭାଷା ଓ ସାହିତ୍ୟ ଏହାର ସଂସ୍କୃତିର ଅମୂଲ୍ୟ ସମ୍ପଦ କିପରି ?**

ଉ– ଓଡ଼ିଶାର ଭାଷା ଓ ସାହିତ୍ୟ ଏହାର ଜାତୀୟ ଜୀବନକୁ ପ୍ରାଣବନ୍ତ କରିଛି । ପୃଥିବୀର ଉନ୍ନତ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଭାଷା ଅନ୍ୟତମ । ଏହାର ନିଜସ୍ୱ ଲିପି ଅଛି । ଏହି ଭାଷାରେ ରଚିତ 'ମହାଭାରତ', 'ରାମାୟଣ', 'ଭାଗବତ' ପରି ବହୁ ପୁରାଣ ଓ କାବ୍ୟ କବିତା ଏହାର ସଂସ୍କୃତିକୁ ଋଦ୍ଧିମନ୍ତ କରିଛି । ଓଡ଼ିଶାର ପୁରପଲ୍ଲୀର ଲୋକେ ଏସବୁକୁ ଶ୍ରଦ୍ଧା ଓ ଭକ୍ତି ସହକାରେ ପାଠ କରିଥା'ନ୍ତି । ଓଡ଼ିଆ ଭାଷାରେ ଅନେକ ଢଗଢ଼ମାଳି ଓ ଲୋକଗଳ୍ପ ମଧ୍ୟ ପ୍ରଚଳିତ ଅଛି । ଏସବୁ ଓଡ଼ିଆ ସଂସ୍କୃତିକୁ ସମୃଦ୍ଧ କରୁଥିବାରୁ ଏସବୁକୁ ଓଡ଼ିଆ ସଂସ୍କୃତିର ଅମୂଲ୍ୟ ସମ୍ପଦ ଭାବେ ବିବେଚନା କରାଯାଏ ।

**(ଗ) ଜ୍ଞାନ ବିଜ୍ଞାନର ପ୍ରସାର ଫଳରେ ଓଡ଼ିଆ ସଂସ୍କୃତିର କି ପରିବର୍ତ୍ତନ ଘଟିଛି ?**

ଉ– ଜ୍ଞାନ ବିଜ୍ଞାନର ପ୍ରସାର ଫଳରେ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ ଏବେ ନାନା ପରିବର୍ତ୍ତନ ସଂଘଟିତ ହୋଇଛି । ପୂର୍ବରୁ ପାଳିତ ହେଉଥିବା କେତେକ ପର୍ବପର୍ବାଣି ଏବେ ଲୋପ ପାଇଗଲାଣି । ଏଗୁଡ଼ିକ ସ୍ଥାନରେ ଅନେକ ନୂତନ ପର୍ବପର୍ବାଣି ସୃଷ୍ଟି ହୋଇଛି । ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଶିଳ୍ପ, ଚିତ୍ରକଳା ଓ ସାମାଜିକ ରୀତିନୀତିରେ ବହୁ ପରିବର୍ତ୍ତନ ଦେଖାଯାଉଛି । ମାତ୍ର ଆମେ ଆମ ପ୍ରାଚୀନ ସଂସ୍କୃତିକୁ ସମ୍ପୂର୍ଣ୍ଣ ଭୁଲିଯିବା ଅନୁଚିତ । ଏହି ପରିବର୍ତ୍ତନର ପ୍ରବାହରେ ଆପଣାର ମୌଳିକତାକୁ ବଜାୟ ରଖି ବିକାଶ ପଥରେ ଅଗ୍ରସର ହେବା ଆମର ଲକ୍ଷ୍ୟ ହେବା ଉଚିତ ।

**(ଘ) 'ଓଡ଼ିଶାର ସଂସ୍କୃତି' ପ୍ରବନ୍ଧଟି ଆମକୁ କି ଶିକ୍ଷା ଦିଏ ?**

ଉ– *'ଓଡ଼ିଶାର ସଂସ୍କୃତି'* ପ୍ରବନ୍ଧଟି ଆମର ଗୌରବମୟ ସଂସ୍କୃତି ଓ ପରମ୍ପରାର ଭାବଧାରା ବହନ କରିଛି । ବର୍ତ୍ତମାନ ଜ୍ଞାନ ବିଜ୍ଞାନର ପ୍ରସାର ଫଳରେ ମାନବଜାତି କୁପଥଗାମୀ ହେଉଛି । ତା'ର ସାମାଜିକ ଓ ସାଂସ୍କୃତିକ ଜୀବନରେ ନାନା ପରିବର୍ତ୍ତନ ଘଟୁଛି । କିନ୍ତୁ ଯାହାହେଉ ପଛକେ ଆମେ ଆମର ସଂସ୍କୃତି ଓ ପରମ୍ପରାରୁ କେବେ ବିଚ୍ଛିନ୍ନ ହେବା ନାହିଁ । ଏପରି କଲେ ନିଜର ସମ୍ମାନହାନି ଘଟିବା ସଙ୍ଗେ ସଙ୍ଗେ ଓଡ଼ିଶା ତା'ର ପୂର୍ବ ଗୌରବ ହରାଇ ବସିବ । ତେଣୁ ଆମେ ଓଡ଼ିଶାବାସୀ ଆପଣାର ମୌଳିକତାକୁ ବଜାୟ ରଖି ବିକାଶ ପଥରେ ଅଗ୍ରସର ହେବା ଉଚିତ । ଆମ୍ଭେମାନେ ଉକ୍ତ ପ୍ରବନ୍ଧଟିରୁ ଏହି ଶିକ୍ଷା ଲାଭକରୁ ।



# ଗଳ୍ପ

## ନ୍ୟାୟ ବିଚାର

• ସୁନନ୍ଦ କର

ଜନ୍ମ : ୧୯୨୭

ମୃତ୍ୟୁ : ୧୯୮୪

### ଗାଳ୍ପିକ ପରିଚୟ

ସୁନନ୍ଦ କର (୧୯୨୭-୧୯୮୪) କଟକ ସହରରେ ଜନ୍ମଗ୍ରହଣ କରିଥିଲେ । ସେ ବାଗ୍ମୀ ବିଶ୍ୱନାଥଙ୍କଦ୍ୱାରା ପ୍ରତିଷ୍ଠିତ ମାସିକ *'ଉତ୍କଳ ସାହିତ୍ୟ'* ପତ୍ରିକାର ସମ୍ପାଦକ ଥିଲେ । ଜଣେ ସାମ୍ବାଦିକ ଭାବରେ ସେ ଦୈନିକ *'ସମାଜ'* ରେ ମଧ୍ୟ କିଛି ଦିନ କାର୍ଯ୍ୟ କରିଥିଲେ । କେତୋଟି ବଙ୍ଗଳା ଓ ଇଂରାଜୀ ପୁସ୍ତକକୁ ସେ ଓଡ଼ିଆରେ ଅନୁବାଦ କରିଛନ୍ତି । ଜଣେ କବି, ଗଳ୍ପ ଲେଖକ ଓ ଅନୁବାଦକ ଭାବରେ ତାଙ୍କର ଖ୍ୟାତି ରହିଛି ।

### ବିଷୟ ସୂଚନା

ସୁଲତାନୀ ଶାସକ ଗିଆସୁଦ୍ଦିନ୍ ବଲ୍‌ବନ୍‌ଙ୍କ ଶାସନ କାଳରେ କିପରି ଉଚିତ ନ୍ୟାୟ ବିଚାର ମିଳୁଥିଲା, ତାହାର ଚିତ୍ର ଏଥିରେ ବର୍ଣ୍ଣିତ ହୋଇଛି । ନ୍ୟାୟ ଆଗରେ ରାଜା ହେଲେ ମଧ୍ୟ ଦଣ୍ଡ ପାଇବାକୁ ହକ୍‌ଦାର, ଏହା ଏହି ଗଳ୍ପରେ ଦେଖାଇ ଦିଆଯାଇଛି । ବିଚାରକ ଭାବେ କାଜିଙ୍କର ନିରପେକ୍ଷତା ଓ ଶାସକ ଭାବେ ଗିଆସୁଦ୍ଦିନ୍‌ଙ୍କର ମହନୀୟତା ଉକ୍ତ ଗଳ୍ପରେ ପ୍ରଦର୍ଶିତ ହୋଇଛି ।

### ସାରକଥା

ପାଞ୍ଚଶହ ବର୍ଷ ପୂର୍ବେ ଦିଲ୍ଲୀରେ ଗିଆସୁଦ୍ଦିନ୍ ବଲ୍‌ବନ୍ ଶାସନ କରୁଥିଲେ । ସେ ଶାସନ କାର୍ଯ୍ୟପାଇଁ ଦକ୍ଷ ସୁବେଦାର ଓ ନ୍ୟାୟ ବିଚାରପାଇଁ କାଜିମାନଙ୍କୁ ନିଯୁକ୍ତି ଦେଇଥିଲେ । ଧନୁ ତୀର ଧରି ଲାଖ ବିନ୍ଧିବାରେ ଗିଆସୁଦ୍ଦିନ୍‌ଙ୍କର ପ୍ରବଳ ସଉକ ଥିଲା । ଦିନେ ଭିକାରୁଣୀ ଜାନକୀ ବାଈ ନିଜ ପୁଅକୁ ଧରି ସୁଲ୍‌ତାନ୍‌ଙ୍କର ପ୍ରାସାଦ ପଛପଟେ ଏକ ସଂକୀର୍ଣ୍ଣ ରାସ୍ତାରେ ଭିକ ମାଗିବାକୁ ଯାଉଥିବାବେଳେ ଗୋଟିଏ ତୀର ଉଲ୍‌କା ବେଗରେ ଆସି ତା' ପୁଅର ତଣ୍ଟିରେ ଫୁଟିଗଲା ଓ ସେ ସେଇଠାରେ ପ୍ରାଣ ହରାଇଥିଲା । ଜାନକୀ ବାଈ ଉଚ୍ଚ ସ୍ୱରରେ କାନ୍ଦିଲା । ଏହା ସୁଲ୍‌ତାନ୍‌ଙ୍କ କାର୍ଯ୍ୟ ବୋଲି ସେ ଜାଣିପାରିଲା ।

ଜାନକୀ ବାଈ ନିଜର ମଲାପୁଅକୁ ଧରି କାଜିଙ୍କ ଦରବାରରେ ଯାଇ ପହଞ୍ଚିଲା । କାଜି ତା' ପୁଅର ହତ୍ୟାକାରୀ କିଏ ଜାଣିବାକୁ ଚାହିଁଲେ । ଜାନକୀ କହିଲା, *''ଆପଣ ଯଦି ଦୋଷୀକୁ ଦଣ୍ଡ ଦେଇପାରିବେ ବୋଲି ସତ୍ୟ କରି କହିବେ, ତେବେ ମୁଁ ତା'ର ନାମ ପ୍ରକାଶ କରିବି ।''* କାଜିଙ୍କଠାରୁ ଦୋଷୀକୁ ଦଣ୍ଡଦେବାର ନିଶ୍ଚିତତା ଜାଣି ଜାନକୀ କହିଲା – *''ସେ ହେଉଛନ୍ତି ସୁଲ୍‌ତାନ୍ ଗିଆସୁଦ୍ଦିନ୍ ନିଜେ''*। ଦରବାରରେ ଭରି ରହିଥିବା ଲୋକେ ଏକଥା ଶୁଣି ଖୁବ୍ ଆଶ୍ଚର୍ଯ୍ୟ ହେଲେ । କାଜି କିଛି ସମୟ ନୀରବ ରହି ନିଜ ଦସ୍ତଖତରେ ଗୋଟିଏ ପରୱାନା ପିଆଦା ହାତରେ ସୁଲ୍‌ତାନ୍‌ଙ୍କ ନିକଟକୁ ପଠାଇଦେଲେ । ସେଥିରେ ସେ ବିଚାର ନିମିତ୍ତ ଶୀଘ୍ର ହାଜର ହେବାକୁ ନିର୍ଦ୍ଦେଶ ମଧ୍ୟ ଦେଇଥିଲେ । ଲୋକେ ଭାବିଲେ କାଜିଙ୍କର ଆଜି ଚାକିରି ଚାଲିଯିବ ।





କିଛି ସମୟପରେ ପିଆଦା ସହ ସୁଲ୍‌ତାନ୍ ଅଦାଲତକୁ ଆସିଲେ । ସେଠାରେ ଉପସ୍ଥିତ ଥିବା ଲୋକେ ଭାବିଲେ ନିଶ୍ଚୟ କିଛି ଅଘଟଣ ଘଟିବ । ହେଲେ ଗିଆସୁଦ୍ଦିନ୍ ସିଧା କାଜିଙ୍କ ନିକଟକୁ ଯାଇ ତାଙ୍କୁ ସଲାମ ଜଣାଇଲେ । କାଜି ଜାନକୀ ବାଈର ପୁତ୍ରହତ୍ୟାକାରୀ ସୁଲତାନ୍ କି ନୁହେଁ ତାହା ଜାଣିବାକୁ ଚାହିଁଲେ । ସୁଲ୍‌ତାନ୍ କହିଲେ, ଏହା ସତ୍ୟ । ଲାଖବିନ୍ଧା ଅଭ୍ୟାସ କଲାବେଳେ ଅସାବଧାନତା ହେତୁ ଏଭଳି ଦୁର୍ଘଟଣା ଘଟିଗଲା । ଏଥିପାଇଁ ଯେଉଁ ଦଣ୍ଡାଦେଶ ମିଳିବ, ସେ ଗ୍ରହଣ କରିବାକୁ ପ୍ରସ୍ତୁତ ।

କାଜି କହିଲେ, ସୁଲ୍‌ତାନ୍ ଏଇ ନିରାଶ୍ରୟା ସ୍ତ୍ରୀ ଲୋକଟିର ସାରା ଜୀବନପାଇଁ ଭରଣପୋଷଣ ଦାୟିତ୍ୱ ଗ୍ରହଣ କରନ୍ତୁ ।

ଗିଆସୁଦ୍ଦିନ୍ ସେ ଆଦେଶକୁ ମୁଣ୍ଡପାତି ମାନିନେଲେ । ଜାନକୀ ବାଈର ପୁଅ ହୋଇ ନିଜେ ବଞ୍ଚିଥିବା ଯାଏ ତା'ର ଭରଣପୋଷଣ ଦାୟିତ୍ୱ ଗ୍ରହଣ କରିବେ ବୋଲି କହିଲେ । ଅଦାଲତରେ ଥିବା ଲୋକମାନେ ଚୁପ୍‌ଚାପ୍ ନୀରବରେ ଠିଆହୋଇ ରାୟ ଘୋଷଣା ଶୁଣୁଥିଲେ । ରାୟ ଘୋଷଣା ପରେ କାଜି ନିଜ ଆସନରୁ ଓହ୍ଲାଇ ଆସି ସୁଲ୍‌ତାନ୍‌ଙ୍କୁ ସଲାମ କଲେ ଓ କହିଲେ, *''ଜାହାଁପନା, ଆପଣ ମୋତେ କ୍ଷମା କରିବେ । ମୁଁ କେବଳ ମୋର କର୍ତ୍ତବ୍ୟ କରିଛି । ଆପଣ ମୋ ଉପରେ ରାଗ କରିନାହାନ୍ତି ତ ?''*

ସୁଲ୍‌ତାନ୍ କାଜିଙ୍କୁ କୁଣ୍ଢାଇ ପକାଇ କହିଲେ – *''ଆପଣ ମୋ ରାଜ୍ୟର ଗୌରବ, ନ୍ୟାୟ ବିଚାର ହେଉଛି ଆପଣଙ୍କର କର୍ତ୍ତବ୍ୟ । ଆପଣ ଯେ ନିର୍ଭୀକ ଓ ନିରପେକ୍ଷ ଭାବରେ ବିଚାର କରୁଛନ୍ତି, ସେଥିପାଇଁ ଆପଣଙ୍କୁ ମୁଁ ଧନ୍ୟବାଦ ଜଣାଉଛି ।'*

କାଜିଙ୍କର ନିରପେକ୍ଷତା ଓ ଗିଆସୁଦ୍ଦିନ୍‌ଙ୍କର ମହନୀୟତା ଦେଖି ସମସ୍ତଙ୍କ ହୃଦୟ ଭକ୍ତି ଓ ଶ୍ରଦ୍ଧାରେ ପୂରିଉଠିଲା ।

### କଠିନ ଶବ୍ଦାର୍ଥ

କାଜି – ମୋଗଲ ଶାସନକାଳରେ ନିଯୁକ୍ତଥିବା ବିଚାରପତି । ସୁଲ୍‌ତାନ୍ – ମୁସଲମାନ ଶାସକ । ସୁବେଦାର – ରାଜକର୍ମଚାରୀ । ତୀର – ଶର । ଅବସର – ଛୁଟି । ଉଆସ – ରାଜପ୍ରାସାଦ । ଭିକ୍ଷାବୃତ୍ତି – ଭିକ୍ଷା ମାଗିବା । ପ୍ରାସାଦ – କୋଠାଘର । ନିର୍ଭୀକ – ଭୟଶୂନ୍ୟ । ସଂକୀର୍ଣ୍ଣ – ଅଣ-ଓସାରିଆ । ଉଲ୍‌କା ବେଗରେ – ଖୁବ୍ ଜୋର୍‌ରେ । ପ୍ରାଣବାୟୁ – ଜୀବନ । ବୁକୁ – ଛାତି । ଖୋଦ୍ – ନିଜେ । କ୍ରନ୍ଦନ – କାନ୍ଦିବା । ସ୍ତବ୍‌ଧ – ଆଶ୍ଚର୍ଯ୍ୟ । ଉତ୍କଣ୍ଠା – ଆଗ୍ରହ । ହିନ୍ଦୁସ୍ଥାନ – ଭାରତବର୍ଷର ଅନ୍ୟନାମ । ପରୱାନା – ଆଦେଶପତ୍ର । ପିଆଦା – ପିଅନ, ଚପରାଶି । ବରଖାସ୍ତ – କୌଣସି ବ୍ୟକ୍ତି କାର୍ଯ୍ୟରୁ ବାହାର କରିବା । ପରିଣତି – ଫଳାଫଳ । ସଲାମ – ନମସ୍କାର । ନିଃସହାୟା – ଯେଉଁ ସ୍ତ୍ରୀର କେହି ସାହା ନାହିଁ । ନମ୍ର – ବିନୟ । ଅକସ୍ମାତ୍ – ହଠାତ୍ । ନିରାଶ୍ରୟା – ଆଶ୍ରୟଶୂନ୍ୟା । କାଠପିତୁଳା – କାଠ କଣ୍ଢେଇ । ରାୟ – ବିଚାରକ ଶେଷ ମୀମାଂସା । ନିରପେକ୍ଷ – କାହା ପକ୍ଷରେ ନ ରହିବା ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

୧ । ଉତ୍ତର କୁହ ।

**(କ) ରାଜକାର୍ଯ୍ୟରୁ ଅବସର ପାଇଲେ ଗିଆସୁଦ୍ଦିନ୍ କ'ଣ କରୁଥିଲେ ?**

ଉ– ରାଜକାର୍ଯ୍ୟରୁ ଅବସର ପାଇଲେ ଗିଆସୁଦ୍ଦିନ୍ ଶିକାର କରିବାକୁ ଯାଉଥିଲେ ନହେଲେ ଉଆସ ଭିତରେ ଲାଖବିନ୍ଧାରେ ମାତୁଥିଲେ ।

**(ଖ) ଜାନକୀ ବାଈ କିପରି ପେଟ ପୋଷୁଥିଲା ?**

ଉ– ଜାନକୀ ବାଈ ଭିକ୍ଷାବୃତ୍ତି କରି ପେଟ ପୋଷୁଥିଲା ।

**(ଗ) କାଜିଙ୍କ ଅଦାଲତରେ ଥିବା ଲୋକେ ସ୍ତବ୍ଧ ହୋଇଗଲେ କାହିଁକି ?**

ଉ– ଜାନକୀ ବାଈ ଭଳି ଜଣେ ଦରିଦ୍ର ଭିକାରୁଣୀ ନିଜ ପୁଅକୁ ମାରିଥିବାର ଅଭିଯୋଗ ସମଗ୍ର ହିନ୍ଦୁସ୍ଥାନର ସମ୍ରାଟ ଗିଆସୁଦ୍ଦିନ୍‌ଙ୍କ ନାଆଁରେ କରୁଥିବାର ଶୁଣି କାଜିଙ୍କ ଅଦାଲତରେ ଥିବା ଲୋକେ ସ୍ତବ୍ଧ ହୋଇଗଲେ ।

**(ଘ) ଅଦାଲତରେ ସୁଲ୍‌ତାନ୍‌ଙ୍କୁ ଦେଖି ଲୋକମାନେ କ'ଣ କଲେ ?**

ଉ– ଅଦାଲତରେ ସୁଲ୍‌ତାନ୍‌ଙ୍କୁ ଦେଖିବା ମାତ୍ରେ ଲୋକମାନେ ଆଣ୍ଠୁମାଡ଼ି ତାଙ୍କୁ ସଲାମ ଜଣାଇଲେ ।

**(ଙ) ରାୟ ଘୋଷଣା ପରେ କାଜି ସୁଲ୍‌ତାନ୍‌ଙ୍କୁ କ'ଣ କହିଲେ ?**

ଉ– ରାୟ ଘୋଷଣା ପରେ କାଜି ନିଜ ଆସନରୁ ଓହ୍ଲାଇ ଆସି ସୁଲ୍‌ତାନ୍‌ଙ୍କୁ ସଲାମ କଲେ । ତାପରେ କହିଲେ, *''ଜାହାଁପନା, ଆପଣ ମୋତେ କ୍ଷମା କରିବେ । ମୁଁ କେବଳ ମୋର କର୍ତ୍ତବ୍ୟ କରିଛି । ଆପଣ ମୋ ଉପରେ ରାଗ କରିନାହାନ୍ତି ତ ?''*

୨ । ଉତ୍ତର ଲେଖ ।

**(କ) ଜାନକୀ ବାଈ ପୁଅର କିଭଳି ମୃତ୍ୟୁ ଘଟିଲା ?**

ଉ– ଜାନକୀ ବାଈ ନାମରେ ଜଣେ ଦରିଦ୍ର ମହିଳା ନିଜର ଶିଶୁପୁତ୍ରକୁ ଧରି ଭିକ୍ଷା କରିବାକୁ ବାହାରିଲା ବେଳେ ହଠାତ୍ ଏକ ଶର ଆସି ପୁଅର ତଣ୍ଟିରେ ଫୁଟିଗଲା । ଯାହା ଫଳରେ ତା'ର ମୃତ୍ୟୁ ଘଟିଲା ।

**(ଖ) ସ୍ତ୍ରୀ ଲୋକଟି କାଜିଙ୍କୁ କ'ଣ କହିଲା ?**

ଉ– ସ୍ତ୍ରୀ ଲୋକଟି କାଜିଙ୍କୁ କହିଲା, *''ଧର୍ମାବତାର ! ଏ ସଂସାରରେ ମୋର ଏଇ ଏକମାତ୍ର ପୁତ୍ର ଛଡ଼ା ଆଉ କେହି ନାହିଁ । ମୁଁ ଜଣେ ଅସହାୟା ନାରୀ । ପ୍ରତିଦିନ ଭିକ୍ଷାବୃତ୍ତି କରି ପୋଟ ପୋଷେ । ମୁଁ ଆଜି ସମ୍ରାଟଙ୍କ ରାଜନଅର ପଛପଟ ରାସ୍ତାରେ ଏଇ ପୁତ୍ର ସହିତ ଭିକ୍ଷା ଉଦ୍ଦେଶ୍ୟରେ ଯାଉଥିବା ସମୟରେ, ବିନା ଦୋଷରେ କେହି ଜଣେ ତୀର ମାରି ତାକୁ ହତ୍ୟା କରିଛି । ମୋର ପ୍ରାର୍ଥନା, ଦୋଷୀକୁ ଆପଣ ଉଚିତ ଦଣ୍ଡ ଦିଅନ୍ତୁ ।''*

**(ଗ) ଜାନକୀ ବାଈର ଅଭିଯୋଗ ଶୁଣି କାଜି କ'ଣ କଲେ ?**

ଉ– ଜାନକୀ ବାଈର ଅଭିଯୋଗ ଶୁଣି କାଜି କିଛି ସମୟ ପାଇଁ ନିରବ ରହିଲେ ଏବଂ କିଛି ସମୟପରେ ପିଆଦା ହାତରେ ସୁଲତାନଙ୍କୁ ଡକାଇ ପଠାଇଲେ ଯେ ବିଚାର ନିମିତ୍ତ ଦରବାରରେ ଆସି ଉପସ୍ଥିତ ହୁଅନ୍ତୁ ।

**(ଘ) କାଜିଙ୍କର ସାହସ ଦେଖି ଲୋକେ କ'ଣ ଭାବିଲେ ?**

ଉ– କାଜିଙ୍କର ଏପରି ସାହସ ଦେଖି ଲୋକେ ଭାବିଲେ ସୁଲ୍‌ତାନ୍ ତାଙ୍କୁ ଆଜି ନିଶ୍ଚେ ଚାକିରିରୁ ବରଖାସ୍ତ କରିବେ ।

**(ଙ) କାଜିଙ୍କର ଆଦେଶକୁ ସୁଲ୍‌ତାନ୍ କିପରି ପାଳନ କଲେ ?**

ଉ– କାଜିଙ୍କର ଆଦେଶକୁ ସୁଲତାନ ମୁଣ୍ଡପାତି ସହିନେଲେ । ସେ ସେହି ସମୟରୁ ନିଜକୁ ବିଧବା ନାରୀର ପୁଅ ଭାବରେ ଗ୍ରହଣ କରି ବଞ୍ଚିଥିବା ଯାଏ ତା'ର ଦାୟିତ୍ୱ ଗ୍ରହଣ କରିବାକୁ ରାଜି ହୋଇଗଲେ ।

୩ । ସରଳ ଭାଷାରେ ବୁଝାଇ ଲେଖ ।

**(କ) ''ମୁଁ କେବଳ ମୋର କର୍ତ୍ତବ୍ୟ କରିଛି ।''**

ଉ – *ମୁଁ କେବଳ .................... କରିଛି ।*

ଉଦ୍ଧୃତାଂଶଟି ପଠିତ ସାହିତ୍ୟ ବହିର *'ନ୍ୟାୟ ବିଚାର'* ଗଳ୍ପରୁ ସଂଗୃହୀତ । ଏଠାରେ ଗାଳ୍ପିକ ସୁନନ୍ଦ କର କାଜିଙ୍କ କର୍ତ୍ତବ୍ୟ ସମ୍ପର୍କରେ ସ୍ୱୀକାରୋକ୍ତିକୁ ପ୍ରକାଶ କରିଛନ୍ତି ।



ଜାନକୀ ବାଈର ପୁଅକୁ ସୁଲ୍‌ତାନ୍ ମାରିଥିବାର ଶୁଣି କାଜି ସଙ୍ଗେ ସଙ୍ଗେ ତାଙ୍କୁ ଦରବାରରେ ଉପସ୍ଥିତ ହେବାକୁ ପରୱାନା ପଠାଇଲେ । ସମସ୍ତେ ଭାବିଥିଲେ, କାଜି ସୁଲ୍‌ତାନ୍‌ଙ୍କ ନାମ ଶୁଣି ବିଚାରଧାରା ବଦଳାଇ ଦେବେ । ହେଲେ ଜଣେ ବିଚାରପତି ଭାବରେ ସେ ଉଚିତ ବିଚାର କରିବାକୁ ଯାଇ ନ୍ୟାୟ ପ୍ରଦାନ କରିଛନ୍ତି । ପୁତ୍ର ହତ୍ୟାକାରୀ ସୁଲ୍‌ତାନ୍‌ଙ୍କୁ ଜାନକୀ ବାଈର ଜୀବନବ୍ୟାପୀ ଭରଣପୋଷଣ ଭାର ଗ୍ରହଣ କରିବାକୁ ସେ ହୁକୁମ ଜାରି କରିଛନ୍ତି । ରାୟ ଘୋଷଣା ପରେ କାଜି ନିଜର ଆସନରୁ ଓହ୍ଲାଇ ଆସି ବିନୟ ଭାବରେ କ୍ଷମା ମାଗିଛନ୍ତି । କାରଣ ବିଚାରପତି ଆସନରେ ବସିଥିଲେ ମଧ୍ୟ ସେ ସୁଲ୍‌ତାନ୍‌ଙ୍କ ଅଧୀନସ୍ଥ କର୍ମଚାରୀ ଅଟନ୍ତି । ଆଉ ନିଜେ ଯେ ନିଜର ବିହିତ କର୍ତ୍ତବ୍ୟ କରିଛନ୍ତି; ତାହା ମଧ୍ୟ ଜଣାଇଛନ୍ତି ।

ବାସ୍ତବରେ ଲେଖକଙ୍କର ଏହି ଉକ୍ତି ଯଥାର୍ଥ ଅଟେ ।

**(ଖ) ''ଧର୍ମାବତାର, ଆପଣଙ୍କ ଆଦେଶ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି ।''**

ଉ – *ଧର୍ମାବତାର ........................ ପାଳନ କରିବି ।*

ଉଦ୍ଧୃତାଂଶଟି ସୁନନ୍ଦ କରଙ୍କ ଲିଖିତ *'ନ୍ୟାୟ ବିଚାର'* ଗଳ୍ପରୁ ଆନୀତ । ଏଠାରେ ଗାଳ୍ପିକ ସୁଲ୍‌ତାନ୍‌ଙ୍କ ମୁହଁରେ କାଜିଙ୍କର ଦଣ୍ଡାଦେଶ ଗ୍ରହଣକୁ ସ୍ୱୀକାର କରାଇଛନ୍ତି ।

ଜାନକୀ ବାଈ ନିଜ ପୁଅର ହତ୍ୟାକାରୀକୁ ଦଣ୍ଡବିଧାନ ମିଳିବ କି ନାହିଁ ବୋଲି କାଜିଙ୍କ ପାଖରେ ସନ୍ଦେହ ପ୍ରକାଶ କରିଥିଲା । ଦୋଷୀ ଯେତେ ବଡ଼ ଲୋକ ହେଉ ନା କାହିଁକି, ତାକୁ ସେ ନିଶ୍ଚୟ ଉଚିତ ଦଣ୍ଡ ଦେବେ ବୋଲି କହିବାରୁ ଜାନକୀ ବାଈ ସୁଲ୍‌ତାନ୍‌ଙ୍କ ନାମ କହିଥିଲା । କାଜି ମଧ୍ୟ କାଳବିଳମ୍ୱ ନକରି ସୁଲ୍‌ତାନ୍‌ଙ୍କୁ ଦରବାରକୁ ଡକାଇ ନିଜର ରାୟ ଶୁଣାଇଥିଲେ । ନିରାଶ୍ରୟା ସ୍ତ୍ରୀଟିର ଏକମାତ୍ର ପୁଅ ମରିଯିବା ଫଳରେ ତା'ର ସମସ୍ତ ସାହା ଭରସା ତୁଟି ଯାଇଛି । ତେଣୁ ତା'ର ଭରଣପୋଷଣ ଭାର ସାରାଜୀବନ ପାଇଁ ସୁଲ୍‌ତାନ୍ ଗ୍ରହଣ କରିବେ ବୋଲି କାଜି ନ୍ୟାୟ ବିଚାରରେ କହିଥିଲେ । କାଜିଙ୍କଠାରୁ ଆଦେଶ ପାଇ ସୁଲତାନ୍ ମୁଣ୍ଡପାତି କହିଥିଲେ, *''ଧର୍ମାବତାର ! ଆପଣଙ୍କ ଆଦେଶ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି ।''* ପ୍ରକୃତରେ ସୁଲ୍‌ତାନ୍ ଗିଆସୁଦ୍ଦିନ୍ ନିଜ ରାଜ୍ୟରେ ନ୍ୟାୟ ବିଚାରକୁ ସମ୍ମାନ ଦେଇ ଏଇ ଦଣ୍ଡବିଧାନକୁ ଗ୍ରହଣ କରିନେଇଥିଲେ । ଗିଆସୁଦ୍ଦିନ୍ ଥିଲେ ଜଣେ ମହାନୁଭବ ସମ୍ରାଟ । ନିର୍ଭୀକ ଓ ନିରପେକ୍ଷଭାବେ ବିଚାର କରିଥିବାରୁ ସେ କାଜିଙ୍କୁ ଅଶେଷ ଧନ୍ୟବାଦ ଜଣାଇଥିଲେ ।

ବାସ୍ତବରେ ସୁଲ୍‌ତାନ୍ ଗିଆସୁଦ୍ଦିନ୍‌ଙ୍କ ମହନୀୟତା ପୃଥିବୀରେ ବିରଳ ।

**(ଗ) ''ଆପଣ ମୋ ରାଜ୍ୟର ଗୌରବ ।''**

ଉ – *ଆପଣ ..................... ଗୌରବ ।*

ଉଦ୍ଧୃତାଂଶଟି ସୁନନ୍ଦ କରଙ୍କ ରଚିତ *'ନ୍ୟାୟ ବିଚାର'* ଗଳ୍ପରୁ ସଂଗୃହୀତ । ଏଠାରେ ସୁଲ୍‌ତାନ୍ ଗିଆସୁଦ୍ଦିନ୍ କାଜିଙ୍କର ଯେଉଁ ପ୍ରଶଂସା କରିଥିଲେ, ତାହା ଆଲୋଚିତ ହୋଇଛି ।

ସୁଲ୍‌ତାନ୍ ଗିଆସୁଦ୍ଦିନ ବଲ୍‌ବନ୍ ନିଜର ସାମ୍ରାଜ୍ୟକୁ ଲୋକପ୍ରିୟ ତଥା ସୁଦୃଢ଼ କରିବାପାଇଁ ବହୁବିଧ ପଦକ୍ଷେପ ନେଇଥିଲେ । ସେଥିମଧ୍ୟରୁ ନ୍ୟାୟବିଚାର ଲାଗି ଅଭିଜ୍ଞ କାଜିମାନଙ୍କୁ ନିଯୁକ୍ତି ପ୍ରଦାନ ଅନ୍ୟତମ । କାଜିମାନେ ମଧ୍ୟ ଉଚିତ ନ୍ୟାୟ ବିଚାର ପ୍ରଦାନ କରୁଥିଲେ । କାହାର ପକ୍ଷପାତିତା କରୁନଥିଲେ । ତାଙ୍କ ଦୃଷ୍ଟିରେ ସାଧାରଣ ଭିକାରି ଯାହା, ରାଜ୍ୟର ସୁଲ୍‌ତାନ୍ ମଧ୍ୟ ସେଇଆ । ଭିକାରୁଣୀ ଜାନକୀ ବାଈ ପୁଅର ହତ୍ୟାକାରୀ ସୁଲ୍‌ତାନ୍‌ଙ୍କୁ ଦରବାରକୁ ଡକାଇବା ଓ ଜାନକୀ ବାଈକୁ ଉଚିତ ନ୍ୟାୟ ପ୍ରଦାନ କରିବା ତାଙ୍କର ନିର୍ଭୀକ ତଥା ନିରପେକ୍ଷତାର ଉଦାହରଣ । ସେ ସୁଲ୍‌ତାନ୍‌ଙ୍କୁ ଦଣ୍ଡାଦେଶ କରିସାରିବା ପରେ ନିଜ ଆସନରୁ ଓହ୍ଲାଇ ଆସି ସଲାମ କରି କ୍ଷମାପ୍ରାର୍ଥନା କରିଛନ୍ତି । କାରଣ ଯାହାର ଅଧୀନରେ କାଜି ଚାକିରି କରିଛନ୍ତି, ତାଙ୍କୁ ଆଜି ଦଣ୍ଡାଦେଶ ପ୍ରଦାନ କରିଛନ୍ତି । ଏହା କମ୍ ସାହସର କଥା ନୁହେଁ । ନିଜେ ସେ ନିଜର କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି, ସେଥିପାଇଁ ଯଦି ସୁଲତାନଙ୍କ ମନରେ କିଛି ରାଗ ଥାଏ, ତେବେ କ୍ଷମା କରିବାକୁ ବିନମ୍ର ନିବେଦନ

କରିଛନ୍ତି । ହେଲେ ଗିଆସୁଦ୍ଦିନ୍ କାଜିଙ୍କୁ କୁଣ୍ଢାଇ ପକାଇ ତାଙ୍କର ନିରପେକ୍ଷ ବିଚାରର ପ୍ରଶଂସା କରିଛନ୍ତି । କାଜିଙ୍କ ପରି ବିଚାରପତି ଯେ ତାଙ୍କ ରାଜ୍ୟର ଗର୍ବ ଓ ଗୌରବ, ତାହା ମଧ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି ।

ବାସ୍ତବରେ ଏହିପରି ନିରପେକ୍ଷ ବିଚାରପତି ଥିଲେ ରାଜ୍ୟର ସୁନାମ ବୃଦ୍ଧିପାଏ ।

୪ । **ବାକ୍ୟଟିରେ ଉପଯୁକ୍ତ ବିରାମ ଚିହ୍ନ ଦେଇ ଲେଖ ।**

ସେ ତେଣୁ ଦୃଢ଼ ସ୍ୱରରେ କହିଲେ ନିଶ୍ଚିନ୍ତ ହୁଅ ମା' ଦୋଷୀ ଯେତେବଡ଼ ହେଉନା କାହିଁକି ମୁଁ ନିଶ୍ଚେ ତାକୁ ଉଚିତ ଦଣ୍ଡ ଦେବି କୁହ କିଏ ସେହି ଅପରାଧୀ ।

ଉ – ସେ ତେଣୁ ଦୃଢ଼ ସ୍ୱରରେ କହିଲେ, *''ନିଶ୍ଚିନ୍ତ ହୁଅ ମା' ! ଦୋଷୀ ଯେତେବଡ଼ ଲୋକ ହେଉ ନା କାହିଁକି, ମୁଁ ନିଶ୍ଚେ ତାକୁ ଉଚିତ ଦଣ୍ଡ ଦେବି । କୁହ କିଏ ସେହି ଅପରାଧୀ ?''*

୫ । **ତଳେ ଦିଆଯାଇଥିବା ଶବ୍ଦଗୁଡ଼ିକ ମଧ୍ୟରେ ଯେଉଁଗୁଡ଼ିକର ବନାନ ଠିକ୍, ତାକୁ ବାଛି ଲେଖ ।**

(କ) ଯାନକି, ଜାନକୀ, ଜାନକି

(ଖ) ସମୁଖ, ସମ୍ମୁଖ, ସମୂଖ

(ଗ) ସଂକିର୍ଣ୍ଣ, ଶଂକୀର୍ଣ୍ଣ, ସଂକୀର୍ଣ୍ଣ

(ଘ) ଭିକାରିଣୀ, ଭିକାରୁଣି, ଭିକାରୁଣୀ

ଉ– (କ) ଜାନକୀ, (ଖ) ସମ୍ମୁଖ, (ଗ) ସଂକୀର୍ଣ୍ଣ (ଘ) ଭିକାରୁଣୀ

୬ । **''ଭରଣପୋଷଣ'' ପରି ଆଉ ଚାରିଗୋଟି ଯୋଡ଼ା ଶବ୍ଦ ମନରୁ ଭାବି ଲେଖ ।**

ଉ– ଲାଳନପାଳନ, ଶିକ୍ଷାଦୀକ୍ଷା, କଳିକଜିଆ, ଲିପାପୋଛା ।

୭ । **ରାଜା ଧନୁ <u>ତୀର</u> ଧରି ଲାଖ ବିନ୍ଧନ୍ତି । ନଦୀ <u>ତୀର</u>ରେ ବୁଲିବାକୁ ଭଲ ଲାଗେ ।**

**ଉପର ବାକ୍ୟ ଦୁଇଟିରେ ରେଖାଙ୍କିତ ପଦ ଦୁଇଟିର ଅର୍ଥ ଅଲଗା । ସେ ଦୁଇଟି ଶବ୍ଦର ଅର୍ଥ ବୁଝି ଓ ସେହିପରି ଏକାଭଳି ଶୁଣାଯାଉଥିବା ଆଉ କେତୋଟି ଶବ୍ଦ ଲେଖ୍ ତାହାକୁ ବାକ୍ୟରେ ବ୍ୟବହାର କର ।**

ଉ– ତୀର – ଶର, ତୀର – କୂଳ ।

(୧) **ନିତି** – ପ୍ରତିଦିନ – ସେ **ନିତି** ବିଦ୍ୟାଳୟକୁ ଯାଏ ।

**ନୀତି** – ନିୟମ – ତା'ର ଏପରି **ନୀତି** ଦେଖି ଲୋକେ ରାଗିଲେ ।

(୨) **ପ୍ରସାଦ** – ଭୋଗ – ଠାକୁରଙ୍କ **ପ୍ରସାଦ** ଖାଅ ।

**ପ୍ରାସାଦ** – କୋଠା – ରାଜ**ପ୍ରାସାଦ**ରେ ରାଜା ରହନ୍ତି ।

(୩) **ବିସ** – ପଦ୍ମନାଡ଼ – ହଂସ **ବିସ** ଖାଏ ।

**ବିଷ** – ଗରଳ – ପିଲାଟି **ବିଷ** ଖାଇଲା ।

୮ । **ଉପଯୁକ୍ତ ଶବ୍ଦ ନେଇ ନିମ୍ନ ପାଠରେ ଥିବା ଶୂନ୍ୟସ୍ଥାନ ପୂରଣ କର ।**

ପ୍ରତିଦିନ ______ ପେଟ ପୋଷେ । ______ ତ କମ୍ ନୁହେଁ ! ______ ମୁଁ ଅକ୍ଷରେ ଅକ୍ଷରେ ______ ।

ଉ– ପ୍ରତିଦିନ <u>ଭିକ୍ଷାବୃତ୍ତି କରି ସେ ତା'ର</u> ପେଟ ପୋଷେ । <u>ତା'ର ସାହସ</u> ତ କମ୍ ନୁହେଁ ! <u>ଆପଣଙ୍କ ଆଦେଶ</u> ମୁଁ ଅକ୍ଷରେ ଅକ୍ଷରେ <u>ପାଳନ କରିବି</u> ।



୯ । **'ଭିକାରୁଣୀ' ଶବ୍ଦର ଲିଙ୍ଗ ପରିବର୍ତ୍ତନ କଲେ ହେବ 'ଭିକାରି' । ସେହିପରି ନିମ୍ନଲିଖିତ ଶବ୍ଦଗୁଡ଼ିକର ଲିଙ୍ଗ ପରିବର୍ତ୍ତନ କରି ଲେଖ ।**

ଠାକୁରାଣୀ, ଅସୁରୁଣୀ, ସମୁଦ୍ରୁଣୀ, ମାଲୁଣୀ, ବାଘୁଣୀ, ସଙ୍ଗାତୁଣୀ ।

ଉ– ଠାକୁରାଣୀ – ଠାକୁର    ଅସୁରୁଣୀ – ଅସୁର

ସମୁଦ୍ରୁଣୀ – ସମୁଦ୍ରି    ମାଲୁଣୀ – ମାଳୀ

ବାଘୁଣୀ – ବାଘ    ସଙ୍ଗାତୁଣୀ – ସଙ୍ଗାତ

## ତୁମ ପାଇଁ କାମ

୧ । ଏହିପରି ଇତିହାସ ସମ୍ବନ୍ଧୀୟ ଗଳ୍ପ ସଂଗ୍ରହ କରି ଶ୍ରେଣୀରେ ପାଠ କର ।

୨ । ମନରୁ ଆଉ ଗୋଟି, ଏପରି ଗପ ଭାବି ଲେଖ ଓ ଶ୍ରେଣୀ ଶିକ୍ଷକଙ୍କୁ ଦେଖାଅ ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

୧ । **ଦୁଃ + ଘଟଣା = ଦୁର୍ଘଟଣା ଶବ୍ଦ ହେଲାପରି ଆଉ ଗୋଟିଏ ନୂଆ ଶବ୍ଦ ଲେଖ ।**

ଉ – ଦୁଃ + ଦଶା = ଦୁର୍ଦ୍ଦଶା

୨ । **ଉତ୍କଣ୍ଠା, ସଂକୀର୍ଣ୍ଣ, ନିରପେକ୍ଷ, ନିଃସହାୟା – ଏହିସବୁ ଶବ୍ଦକୁ ନେଇ ବାକ୍ୟଗଠନ କର ।**

ଉ – **ଉତ୍କଣ୍ଠା** – ପରୀକ୍ଷା ଫଳ ଜାଣିବାକୁ ମୋ ମନରେ **ଉତ୍କଣ୍ଠା** ବଢ଼ିଯାଇଛି ।

**ସଂକୀର୍ଣ୍ଣ** – ଗାଡ଼ିଟି **ସଂକୀର୍ଣ୍ଣ** ରାସ୍ତାରେ ଗଲା ।

**ନିରପେକ୍ଷ** – କାଜି **ନିରପେକ୍ଷ** ଭାବେ ବିଚାର କଲେ ।

**ନିଃସହାୟା** – **ନିଃସହାୟା** ନାରୀଟି ଭିକ୍ଷାବୃତ୍ତି କରୁଛି ।

୩ । **ସଂକ୍ଷେପରେ ଉତ୍ତର ଦିଅ ।**

**(କ) ଜାନକୀ ବାଈ କେଉଁଠି ରହୁଥିଲା ?**

ଉ– ଦିଲ୍ଲୀ ସହରର ଶେଷ ସୀମାରେ ଗୋଟିଏ ଭଙ୍ଗା କୁଡ଼ିଆରେ ନିଜର ସାତବର୍ଷର ପୁଅକୁ ଧରି ଜାନକୀ ବାଈ ରହୁଥିଲା ।

**(ଖ) ନିଜର ସାମ୍ରାଜ୍ୟକୁ ସୁଦୃଢ଼ ରଖିବାପାଇଁ ସୁଲତାନ୍ କି ପଦକ୍ଷେପ ଗ୍ରହଣ କରିଥିଲେ ?**

ଉ– ନିଜର ସାମ୍ରାଜ୍ୟକୁ ସୁଦୃଢ଼ ରଖିବାପାଇଁ ସୁଲତାନ୍ ଶାସନ କାର୍ଯ୍ୟ ଲାଗି ଟାଣୁଆ ସୁବେଦାର ଓ ନ୍ୟାୟ ବିଚାର ଲାଗି ଅଭିଜ୍ଞ କାଜିମାନଙ୍କୁ ନିଯୁକ୍ତ କରିଥିଲେ ।

**(ଗ) ଶିଶୁପୁତ୍ରର ଶବକୁ ଦେଖି ଗିଆସୁଦ୍ଦିନ୍ କ'ଣ କହିଲେ ?**

ଉ– ଶିଶୁପୁତ୍ରର ଶବକୁ ଦେଖି ଗିଆସୁଦ୍ଦିନ୍ କହିଲେ, *''ଧର୍ମାବତାର, ଏହା ଅବଶ୍ୟ ସତ୍ୟ । ମୁଁ ଆଜି ସକାଳେ ଉଆସର ଛାତ ଉପରେ ଲାଖବିନ୍ଧା ଅଭ୍ୟାସ କରୁଥିବାବେଳେ ଅକସ୍ମାତ୍ ମୋର ଅସାବଧାନତାବଶତଃ ତୀରଟିଏ ଖସିଯାଇ ପିଲାଟି ଦେହରେ ବାଜିଯାଇଛି । ଫଳରେ ଏଭଳି ଦୁର୍ଘଟଣା ଘଟିଛି । ମୁଁ ଜାଣି ଜାଣି ଏହା କରି ନାହିଁ ।''*

**(ଘ) ଜାନକୀ ବାଈ କାହିଁକି କାଜିଙ୍କ ଉପରେ ସନ୍ଦେହ ପ୍ରକାଶ କଲା ?**

ଉ– ଜାନକୀ ବାଈ ଜାଣିଥିଲା ସୁଲତାନ ହିଁ ତା'ର ପୁଅକୁ ହତ୍ୟା କରିଛନ୍ତି । ରାଜ ଦରବାରରେ ତାଙ୍କ ସମ୍ପର୍କରେ କହିଲେ କାଳେ କାଜି ତାଙ୍କୁ ଉପଯୁକ୍ତ ନ୍ୟାୟବିଚାର ଦେବେ ନାହିଁ, ତେଣୁ ସେ ସନ୍ଦେହ ପ୍ରକାଶ କରିଥିଲେ ।

**(ଙ) ଜାନକୀ ବାଈକୁ କାଜି କ'ଣ କହିଥିଲେ ?**

ଉ– କାଜି ଦୃଢ଼ସ୍ୱରରେ କହିଥିଲେ, 'ନିଶ୍ଚିନ୍ତ ହୁଅ ମା' । ଦୋଷୀ ଯେତେବଡ଼ ଲୋକ ହେଉନା କାହିଁକି, ମୁଁ ତାକୁ ଉଚିତ ଦଣ୍ଡ ଦେବି । ସେହି ଅପରାଧୀଟି କିଏ ମୋ ଆଗରେ କୁହ ।''

**(ଚ) ଏ ଗଳ୍ପଟି ଆମକୁ କି ଶିକ୍ଷା ଦେଉଛି ?**

ଉ– ଯିଏ ଯେଉଁ ସ୍ତରରେ ଥାଉ ନା କାହିଁକି ପ୍ରତ୍ୟେକ ନିଜର ବିହିତ କର୍ତ୍ତବ୍ୟ ନିରପେକ୍ଷ ଭାବରେ କରିବା ଉଚିତ । ଏହା ହିଁ ଏ ଗଳ୍ପ ଆମକୁ ଶିକ୍ଷା ଦେଉଛି ।

**୪ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।**

**(କ) କାଜିଙ୍କର ସାହସ ଦେଖି ଲୋକେ କ'ଣ ଭାବିଲେ ?**

ଉ– ଜାନକୀ ବାଈର ଅଭିଯୋଗ ଶୁଣି କାଜି କିଛି ସମୟ ନୀରବ ରହିଲେ । ତା'ପରେ ନିଜ ଦସ୍ତଖତରେ ଏକ ପରୱାନା ଲେଖି ସମ୍ରାଟଙ୍କ ନିକଟକୁ ପଠାଇଦେଲେ । ସେଥିରେ ବିଚାର ନିମନ୍ତେ ତୁରନ୍ତ ହାଜର ହେବାକୁ ସମ୍ରାଟଙ୍କୁ ଆଦେଶ ଦିଆଯାଇଥିଲା । କାଜିଙ୍କର ଏଭଳି ସାହସ ଦେଖି ସମସ୍ତେ ସ୍ତବ୍ଧ ହୋଇଗଲେ । ଲୋକେ ଭାବିଲେ ସୁଲତାନ ଆଜି ନିଶ୍ଚେ କାଜିଙ୍କୁ ଚାକିରିରୁ ବରଖାସ୍ତ କରିବେ । ଘଟଣାର ଶେଷ ପରିଣତି କ'ଣ ହେବ ଦେଖିବାପାଇଁ ସମସ୍ତେ ଅପେକ୍ଷା କରି ରହିଲେ ।

**(ଖ) ଶିଶୁପୁତ୍ରର ଶବକୁ ଦେଖି ଗିଆସୁଦ୍ଦିନ୍ କ'ଣ କହିଲେ ?**

ଉ– ଜାନକୀ ବାଈ କାଜିଙ୍କ ନିକଟରେ ଅଭିଯୋଗ କରିଥିଲା ଯେ ସୁଲ୍‌ତାନ୍ ତୀର ମାରି ତା'ର ଶିଶୁପୁତ୍ରକୁ ହତ୍ୟା କରିଛନ୍ତି । କାଜି ଏ ଘଟଣାର ସତ୍ୟାସତ୍ୟ ବିଷୟରେ ସୁଲ୍‌ତାନ୍‌ଙ୍କୁ ପଚାରିଲେ । ଶିଶୁପୁତ୍ରର ଶବକୁ ଦେଖି ଗିଆସୁଦ୍ଦିନ୍ କହିଲେ, *''ଧର୍ମାବତାର, ଏହା ଅବଶ୍ୟ ସତ୍ୟ । ମୁଁ ଆଜି ସକାଳେ ଉଆସର ଛାତ ଉପରେ ଲାଖବିନ୍ଧା ଅଭ୍ୟାସ କରୁଥିବାବେଳେ ଅକସ୍ମାତ୍ ମୋର ଅସାବଧାନତାବଶତଃ ତୀରଟିଏ ଖସିଯାଇ ପିଲାଟି ଦେହରେ ବାଜିଯାଇଛି । ଫଳରେ ଏଭଳି ଦୁର୍ଘଟଣା ଘଟିଛି । ମୁଁ ଜାଣି ଜାଣି ଏହା କରିନାହିଁ ।''*

**(ଗ) ଜାନକୀ ବାଈ କାଜିଙ୍କ ନିକଟରେ ଅଭିଯୋଗ କରି କ'ଣ କହିଲା ?**

ଉ– ଜାନକୀ ବାଈ କାଜିଙ୍କ ନିକଟରେ ଅଭିଯୋଗ କରି କହିଲା, *''ଧର୍ମାବତାର ! ଏ ସଂସାରରେ ମୋର ଏଇ ଏକମାତ୍ର ପୁତ୍ର ଛଡ଼ା ଆଉ କେହି ନାହିଁ । ମୁଁ ଜଣେ ଅସହାୟା ନାରୀ । ପ୍ରତିଦିନ ଭିକ୍ଷାବୃତ୍ତି କରି ପୋଟ ପୋଷେ । ମୁଁ ଆଜି ସମ୍ରାଟଙ୍କ ରାଜନଅର ପଛପଟ ରାସ୍ତାରେ ଏଇ ପୁତ୍ର ସହିତ ଭିକ୍ଷା ଉଦ୍ଦେଶ୍ୟରେ ଯାଉଥିବା ସମୟରେ, ବିନା ଦୋଷରେ କେହି ଜଣେ ତୀର ମାରି ତାକୁ ହତ୍ୟା କରିଛି । ମୋର ପ୍ରାର୍ଥନା, ଦୋଷୀକୁ ଆପଣ ଉଚିତ ଦଣ୍ଡ ଦିଅନ୍ତୁ ।''*

**(ଘ) ଜାନକୀ ବାଈର ଅଭିଯୋଗ ଶୁଣି କାଜି କ'ଣ କଲେ ?**

ଉ– ସମ୍ରାଟ୍ ଗିଆସୁଦ୍ଦିନ୍ ତା'ର ଶିଶୁପୁତ୍ରକୁ ତୀର ମାରି ହତ୍ୟା କରିଛନ୍ତି ବୋଲି ଜାନକୀ ବାଈ କାଜିଙ୍କ ନିକଟରେ ଅଭିଯୋଗ କଲା । ଏକଥା ଶୁଣି ସମସ୍ତେ ସ୍ତବ୍ଧ ହୋଇଗଲେ । କାଜି କ'ଣ କରିବେ ସେ କଥା ଜାଣିବାପାଇଁ ସମସ୍ତେ ଉତ୍କଣ୍ଠିତ ହେଲେ । କାଜି ଜାନକୀ ବାଈର ଅଭିଯୋଗ ଶୁଣି କିଛି ସମୟ ନୀରବ ରହିଲେ । ତା'ପରେ ନିଜ ଦସ୍ତଖତରେ ଗୋଟିଏ ପରୱାନା ପିଆଦା ହାତରେ ସୁଲତାନ୍‌ଙ୍କ ନିକଟକୁ ପଠାଇଦେଲେ । ସେଥିରେ ବିଚାର ନିମନ୍ତେ ତୁରନ୍ତ ହାଜର ହେବାକୁ ସୁଲତାନଙ୍କୁ କୁହାଯାଇଥିଲା ।

# ଏକାଙ୍କିକା

## ରାଜୋଚିତ ବ୍ୟବହାର

*• ସାରଦା ପ୍ରସନ୍ନ ନାୟକ*
*ଜନ୍ମ : ୧୩.୧୨.୧୯୨୬*

### ନାଟ୍ୟକାର ପରିଚୟ

ସାରଦା ପ୍ରସନ୍ନ ନାୟକ (୧୯୨୬) କଟକରେ ଜନ୍ମଗ୍ରହଣ କରିଥିଲେ । ଜଣେ ନାଟ୍ୟକାର ଭାବରେ ଓଡ଼ିଶାର ପୁରପଲ୍ଲୀରେ ସେ ସୁପରିଚିତ । ତାଙ୍କ ରଚିତ ବହୁ ନାଟକ ମଧ୍ୟରୁ *'ସୁନାମାଟି'*, *'ପରିଶୋଧ'*, *'ଲକ୍ଷ୍ମୀ'*, *'ପତ୍ନୀ'* ଆଦି ବେଶ୍ ଲୋକପ୍ରିୟ । ଜଣେ ଗୀତିକାର ଭାବରେ ତାଙ୍କର ମଧ୍ୟ ପ୍ରସିଦ୍ଧି ରହିଛି । କଟକ ଆକାଶବାଣୀ ଓ ଦୂରଦର୍ଶନରେ ପ୍ରଯୋଜକ ଭାବରେ କାର୍ଯ୍ୟକରି ସେ ଅବସର ଗ୍ରହଣ କରିଛନ୍ତି ।

### ବିଷୟ ସୂଚନା

ଭାରତୀୟ ରାଜା ପୁରୁ ଓ ଗ୍ରୀସ୍‌ର ରାଜା ଆଲେକ୍‌ଜାଣ୍ଡରଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧରେ ପୁରୁ ପରାଜୟ ବରଣ କରିଥିଲେ । ପୁରୁ ପରାଜୟ ସ୍ୱୀକାର କରିବା ପରେ ଆଲେକ୍‌ଜାଣ୍ଡର ତାଙ୍କୁ ତାଙ୍କଠାରୁ କି ପ୍ରକାର ବ୍ୟବହାର ଆଶା କରୁଛନ୍ତି ବୋଲି ପ୍ରଶ୍ନ କରିଥିଲେ । ପୁରୁ ନିର୍ଭୟରେ ରାଜାଙ୍କଠାରୁ ରାଜୋଚିତ ବ୍ୟବହାର ଆଶା କରୁଛନ୍ତି ବୋଲି କହିଥିଲେ । ପୁରୁଙ୍କର ଏହି କଥା କେଇପଦରେ ଆଲେକ୍‌ଜାଣ୍ଡର ବେଶ୍ ପ୍ରଭାବିତ ହୋଇ ତାଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଇଥିଲେ ଓ ତାଙ୍କ ନିକଟରେ ଶ୍ରଦ୍ଧା ଓ ସମ୍ମାନ ଜଣାଇଥିଲେ । ଏହି ଏକାଙ୍କିକାଟିରେ ନାଟ୍ୟକାର ଏସବୁ ବିଷୟ ସୁନ୍ଦରଭାବେ ଉପସ୍ଥାପନ କରିଛନ୍ତି ।

### ସାରକଥା

ଏହି ଏକାଙ୍କିକାଟିରେ ସର୍ବମୋଟ ପାଞ୍ଚଟି ଦୃଶ୍ୟ ରହିଛି । ଏହିସବୁ ଦୃଶ୍ୟରେ ଅତି ଛୋଟ ଛୋଟ ଘଟଣାମାନ ଉପସ୍ଥାପନ କରାଯାଇଛି ।

ରାଜପ୍ରାସାଦ ଅଭ୍ୟନ୍ତରରେ ପୁରୁ ଓ ତାଙ୍କ ସେନାପତିଙ୍କ ମଧ୍ୟରେ ଆଲୋଚନା ଚାଲିଛି । ଗ୍ରୀସ୍‌ର ରାଜା ଆଲେକ୍‌ଜାଣ୍ଡର ବୀରଭୂମି ଭାରତକୁ ଆକ୍ରମଣ କରିବାକୁ ଆସୁଥିବାରୁ ତାଙ୍କୁ ପ୍ରତିରୋଧ କରିବାପାଇଁ ରାଜା ପୁରୁ ଉପାୟ ଚିନ୍ତା କରୁଛନ୍ତି । ତା' ସହିତ ଭାରତର ରାଜାମାନଙ୍କ ମଧ୍ୟରେ ଏକତା ନଥିବାରୁ ଅନ୍ୟ ହାତରେ ପରାଜୟ ସ୍ୱୀକାର କରିବାକୁ ପଡ଼ୁଛି ବୋଲି ସେ ଦୁଃଖରେ ସେନାପତିଙ୍କୁ କହିଛନ୍ତି । ଯାହାହେଲେ ମଧ୍ୟ ବୀର ଆଲେକ୍‌ଜାଣ୍ଡରଙ୍କୁ ଯୁଦ୍ଧରେ ସାମନା କରିବେ ବୋଲି ଦମ୍ଭରେ ପୁରୁ କହିଛନ୍ତି ।

ଆଲେକ୍‌ଜାଣ୍ଡର ଓ ତାଙ୍କର ସେନାପତି ଶତଦ୍ରୁ ନଦୀ କୂଳରେ ନିଜର ଶିବିରରେ ବସି ଆଲୋଚନା କରୁଛନ୍ତି । ପୁରୁ ଯେପରି ତାଙ୍କ ଆଗରେ ଆତ୍ମସମର୍ପଣ କରିବେ, ସେ କଥା ଦୂତ ହାତରେ ଖବର ପଠାଇବାକୁ ଚାହିଁଛନ୍ତି । ମାତ୍ର ପୁରୁ ଆତ୍ମସମର୍ପଣ ନକରି ଯୁଦ୍ଧ କରିଛନ୍ତି । ଶେଷରେ ପୁରୁ ହାରିଯାଇ ପରାଜୟ ବରଣ କରିଛନ୍ତି । ଆଲେକ୍‌ଜାଣ୍ଡର ପୁରୁଙ୍କୁ ନିଜର ଶିବିରରେ ଉପସ୍ଥିତ କରାଇ ତାଙ୍କଠାରୁ ପୁରୁ କିପରି ବ୍ୟବହାର ଚାହୁଁଛନ୍ତି ବୋଲି ପଚାରିଛନ୍ତି । ପୁରୁ ନିର୍ଭୟରେ

କହିଛନ୍ତି ଯେ, ସେ ରାଜା । ତେଣୁ ସେ ରାଜୋଚିତ ବ୍ୟବହାର ଚାହାଁନ୍ତି । ପୁରୁଙ୍କର ଏଇ ଉତ୍ତରରେ ଆଲେକ୍‌ଜାଣ୍ଡର ବେଶ୍ ପ୍ରଭାବିତ ହୋଇଛନ୍ତି । ସେ ପୁରୁ ତଥା ଭାରତବର୍ଷର ଖୁବ୍ ପ୍ରଶଂସା କରିଛନ୍ତି । ପୁରୁଙ୍କୁ ନିଜର ବନ୍ଧୁ ଭାବରେ ଗ୍ରହଣ କରିନେଇଛନ୍ତି । ନିଜର ଅହଙ୍କାରର ଫଳ ସେ ପାଇଛନ୍ତି ବୋଲି ପୁରୁଙ୍କୁ କହିଛନ୍ତି । ଶେଷରେ ପୁରୁଙ୍କର ଦେଶଭକ୍ତି, ବୀରତ୍ୱକୁ ସମ୍ମାନ ଜଣାଇଛନ୍ତି । ତାଙ୍କର ରାଜ୍ୟ ମଧ ତାଙ୍କୁ ଫେରାଇ ଦେଇଛନ୍ତି । ସମଗ୍ର ଭାରତବର୍ଷକୁ ଜୟ କରିବାର ଦୁରାଶା ମନରୁ ତ୍ୟାଗ କରିଛନ୍ତି ।

### କଠିନ ଶବ୍ଦାର୍ଥ

ବିତାଡ଼ିତ – ବହିଷ୍କୃତ, ଯାହାକୁ ବାହାର କରି ଦିଆଯାଇଛି । ପଦାତିକ – ପାଦରେ ଚାଲି ଚାଲି ଯାଉଥିବା ସୈନ୍ୟ । ହତୋତ୍ସାହ – ଉତ୍ସାହ ହରାଇବା । ପ୍ରତିରୋଧ – ବାଧା । ପୃଷ୍ଠଭଙ୍ଗ – କୌଣସି ଘଟଣାକୁ ମୁକାବିଲା କରି ନପାରି ଭୟରେ ପଛକୁ ପଳାଇବା । ଧୂଳିସାତ୍ – ମାଟିରେ ମିଶିଯିବା । ଅଭ୍ୟନ୍ତର – ଭିତର । ପଦଚାରଣ – ପାଦରେ ଚାଲିବା । ହତୋତ୍ସାହିତ – ଉତ୍ସାହ ହରାଇବା । ସ୍ୱର୍ଣ୍ଣପ୍ରସୂ – ସୁନା ଉତ୍ପାଦିକା, ଅତିଶୟ ଉର୍ବରା । ଅପରିସୀମ – ଅସୀମ । ଉତ୍ସର୍ଗ – ସତ୍ ଉଦ୍ଦେଶ୍ୟରେ ଅର୍ପଣ । ଆକୃଷ୍ଟ – ମୁଗ୍ଧ, ପ୍ରଲୁବ୍ଧ । ଅଭିପ୍ରାୟ – ଇଚ୍ଛା । ନିକ୍ଷେପ – ଫିଙ୍ଗିବା । ପରିତ୍ୟାଗ – ଛାଡ଼ିଯିବା । ସ୍ମରଣୀୟ – ମନେପକାଇବାର ଯୋଗ୍ୟ । ଦ୍ରୁତ – ଖୁବ୍ ଜୋର୍‌ରେ । ବୀରାଙ୍ଗନା – ବୀରା ନାରୀ । ସୁଶୃଙ୍ଖଳ – ଅତ୍ୟନ୍ତ ଶୃଙ୍ଖଳିତ । ସହସ୍ରବାର – ହଜାର ଥର । ପରାକ୍ରମୀ – ବଳଶାଳୀ । କୋଳାହଳ – ପାଟିତୁଣ୍ଡ । ନରପତି – ରାଜା । ରାଜୋଚିତ – ରାଜାନୁରୂପ । ସ୍ମରଣୀୟ – ମନେରଖିବା ଭଳି ଘଟଣା ।

## ପାଠ୍ୟପୁସ୍ତକସ୍ଥ ଅଭ୍ୟାସ ପ୍ରଶ୍ନୋତ୍ତର

**୧ । ପାଠଟି ପଢ଼ିସାରିବା ପରେ ନିମ୍ନରେ ଦିଆଯାଇଥିବା ଚରିତ୍ରମାନଙ୍କର ଯେଉଁ ଉକ୍ତି ତୁମକୁ ଭଲଲାଗୁଛି, ସେହି ଉକ୍ତିଗୁଡ଼ିକୁ ଅଭିନୟ ସହ କୁହ ।**

(କ) ଆଲୋକ୍‌ଜାଣ୍ଡର (ଖ) ପୁରୁ (ଗ) ସେଲ୍ୟୁକାସ୍ (ଘ) ସେନାପତି

ଉ – ପିଲାମାନଙ୍କୁ ଯେଉଁ ଉକ୍ତିଗୁଡ଼ିକ ଭଲଲାଗିବ, ସେମାନେ ସେହି ଉକ୍ତିଗୁଡ଼ିକୁ ଅଭିନୟ ସହ କହିବେ ।

**୨ । ନିମ୍ନରେ କେତେଗୁଡ଼ିଏ ଉକ୍ତି ଦିଆଯାଇଛି । ସେହି ଉକ୍ତିଗୁଡ଼ିକ କିଏ କହିଛନ୍ତି, ତାଙ୍କ ନାମ ଲେଖ ।**

(କ) ''ସ୍ୱର୍ଣ୍ଣପ୍ରସୂ ବୀରଭୂମି ଭାରତ । ଏ ଦେଶର ଶିକ୍ଷା, ସଂସ୍କୃତି ଓ ପରମ୍ପରା ମହାନ୍ । ଏହାର ସୁନାମ ସାରା ଜଗତରେ ପ୍ରଚାରିତ ।''

(ଖ) ''ସମଗ୍ର ଭାରତବର୍ଷକୁ ଜୟ କରିବା ହେଉଛି ଆମର ଅଭିପ୍ରାୟ ।''

(ଗ) ''ମୁଁ ପଣ କରୁଛି, ମୋ ଶରୀରର ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ମୁଁ ଲଢ଼ିବି ।''

(ଘ) ''ଶୁଣିଥିଲି ଏ ଦେଶର ମାଟିରେ ସୁନା ଫଳେ, ଏ ଦେଶ ଘିଅମହୁରେ ପରିପୂର୍ଣ୍ଣ ।''

(ଙ) ''କାପୁରୁଷ ମୃତ୍ୟୁ ପୂର୍ବରୁ ସହସ୍ରବାର ମୃତ୍ୟୁବରଣ କରିଥାଏ ।''

(ଚ) ''ଅସ୍ତ୍ରହୀନ ପଶୁମାନଙ୍କ ଉପରେ ତୀର ପ୍ରୟୋଗ କରିବା ଯୁଦ୍ଧନୀତିର ବିରୁଦ୍ଧ ଅଟେ ।''

ଉ – (କ) ପୁରୁ, (ଖ) ଆଲେକ୍‌ଜାଣ୍ଡର, (ଗ) ପୁରୁ, (ଘ) ଆଲେକ୍‌ଜାଣ୍ଡର (ଙ) ପୁରୁ (ଚ) ସେଲ୍ୟୁକାସ୍ ।



**୩ । ନିମ୍ନରେ କେତେଗୁଡ଼ିଏ ଉକ୍ତି ଦିଆଯାଇଛି । ସେହି ଉକ୍ତିଗୁଡ଼ିକ କିଏ, କାହାକୁ, କେଉଁ ପ୍ରସଙ୍ଗରେ କହିଛି, ଲେଖ ।**

(କ) ''ଆମର ଲକ୍ଷ୍ୟ, ଯେକୌଣସି ଉପାୟରେ, ଯେକୌଣସି ପନ୍ଥାରେ ଯୁଦ୍ଧ ଜୟକରିବା ।''

(ଖ) ''ଆପଣଙ୍କର ନିର୍ଦ୍ଦେଶ ଠିକ୍ ଭାବରେ କାର୍ଯ୍ୟକାରୀ ହୋଇଛି । ଭାରତୀୟ ସୈନ୍ୟବାହିନୀର ହାତୀମାନଙ୍କ ଉପରକୁ ଅସ୍ତ୍ରପ୍ରୟୋଗ କରିବା ଫଳରେ ସେମାନେ କ୍ଷତବିକ୍ଷତ ହୋଇ ପୃଷ୍ଠଭଙ୍ଗ ଦେଇ ପଳାଇ ଯାଇଛନ୍ତି ।

(ଗ) ''ପୁରୁଙ୍କୁ ବନ୍ଦିକରି ଆଣିବ ନାହିଁ । ପରାଜିତ ହେଲେ ମଧ ସେ ଜଣେ ଦେଶପ୍ରେମୀ ବୀର ।''

(ଘ) ''ମୁଁ ପରାଜିତ ହେଲେ ମଧ ଗୋଟିଏ ସ୍ୱାଧୀନ ରାଜ୍ୟର ନରପତି ।''

(ଙ) ''ଆଜି ମୁଁ ଅନୁଭବ କରୁଛି ଯେ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଭାରତବର୍ଷ ପ୍ରକୃତରେ ବୀରମାନଙ୍କର ଲୀଳାଭୂମି ।''

ଉ – (କ) ଏହି ଉକ୍ତିଟି ଆଲେକ୍‌ଜାଣ୍ଡର ସେନାପତି ସେଲ୍ୟୁକାସ୍‌ଙ୍କୁ କହିଛନ୍ତି । ସେଲ୍ୟୁକାସ୍ ଯେତେବେଳେ ଅସ୍ତ୍ରହୀନ ପଶୁମାନଙ୍କ ଉପରେ ତୀର ପ୍ରୟୋଗ କରିବା ଯୁଦ୍ଧନୀତିର ବିରୁଦ୍ଧ ବୋଲି କହିଲେ, ସେତେବେଳେ ସେ ଏହା କହିଥିଲେ ।

(ଖ) ଏହି ଉକ୍ତିଟି ସେଲ୍ୟୁକାସ୍ ଆଲେକ୍‌ଜାଣ୍ଡରଙ୍କୁ କହିଛନ୍ତି । ଆଲେକ୍‌ଜାଣ୍ଡରଙ୍କ ସୁଚିନ୍ତିତ ଯୋଜନା ଯୋଗୁଁ ବିଜୟପ୍ରାପ୍ତି ସମ୍ବାଦ ତାଙ୍କୁ ଦେଲାବେଳେ ସେ ଏହା କହିଥିଲେ ।

(ଗ) ଏହି ଉକ୍ତିଟି ଆଲେକ୍‌ଜାଣ୍ଡର ସେନାପତି ସେଲ୍ୟୁକାସ୍‌ଙ୍କୁ କହିଛନ୍ତି । ସେନାପତି ସେଲ୍ୟୁକାସ୍‌ଙ୍କୁ ପରାଜିତ ରାଜା ପୁରୁଙ୍କୁ ତାଙ୍କ ସମ୍ମୁଖକୁ ଆଣିବା ପାଇଁ ନିର୍ଦ୍ଦେଶ ଦେଇ ଆଲେକ୍‌ଜାଣ୍ଡର ଏହା କହିଥିଲେ ।

(ଘ) ଏହି ଉକ୍ତିଟି ପୁରୁ ଆଲେକ୍‌ଜାଣ୍ଡରଙ୍କୁ କହିଥିଲେ । ଆଲେକ୍‌ଜାଣ୍ଡର ଯେତେବେଳେ ପୁରୁଙ୍କୁ ତାଙ୍କଠାରୁ କି ପ୍ରକାର ବ୍ୟବହାର ଆଶା କରୁଛନ୍ତି ପଚାରିଥିଲେ, ସେତେବେଳେ ସେ ଏହା କହିଥିଲେ ।

(ଙ) ଏ ଉକ୍ତିଟି ଆଲେକ୍‌ଜାଣ୍ଡର ରାଜା ପୁରୁଙ୍କୁ କହିଥିଲେ । ପରାଜିତ ହୋଇଥିଲେ ବି ପୁରୁ ଆଲେକ୍‌ଜାଣ୍ଡରଙ୍କଠାରୁ ରାଜୋଚିତ ବ୍ୟବହାର ଆଶା କଲାବେଳେ ଆଲେକ୍‌ଜାଣ୍ଡର ଏହା କହିଥିଲେ ।

**୪ । ନିମ୍ନରେ ଦିଆଯାଇଥିବା ଅନୁଚ୍ଛେଦଟି ପାଠକରି ସେଥିରୁ ପ୍ରଶ୍ନ ତିଆରି କର ।**

ଆତ୍ମସମର୍ପଣ ! ଆଲେକ୍‌ଜାଣ୍ଡର ଏହି ପତ୍ରରେ ମୋତେ ଲେଖିଛନ୍ତି ଆତ୍ମ ସମର୍ପଣ କରିବାକୁ ! ସେ ଜାଣନ୍ତି ନାହିଁ ଏହି ମହାନ୍ ଭାରତଭୂମି ହେଉଛି ବେଦ ଉପନିଷଦର ଦେଶ । ଏ ଦେଶ ରାମାୟଣ ଓ ମହାଭାରତର ଦେଶ ଆଲେକ୍‌ଜାଣ୍ଡର ଅତିଥି ଭାବରେ ଆସିଥିଲେ ମୁଁ ତାଙ୍କୁ ସମ୍ମାନର ସହିତ ପାଛୋଟି ଆଣିଥାଆନ୍ତି । ସେ ଆସିଛନ୍ତି ଜଣେ ଆକ୍ରମଣକାରୀ ଭାବରେ, ରାଜ୍ୟ ବିସ୍ତାର କରିବାର ଅଭିଳାଷ ନେଇ, ଯୁଦ୍ଧ ନ କରି ତାଙ୍କ ନିକଟରେ ଆତ୍ମସମର୍ପଣ କରିବା ହେବ ଚରମ ଭୀରୁତା ଓ କାପୁରୁଷତା ! ଫେରିଯାଅ ଦୂତ, କହିଦିଅ ତୁମର ସମ୍ରାଟ ପୁରୁରାଜ ଏହି ମହାନ୍ ଦେଶର ସମ୍ମାନକୁ ଜଣେ ବିଦେଶୀ ଆକ୍ରମଣକାରୀର ପାଦ ତଳେ ଲୋଟାଇ ଦେବାକୁ ଚାହାଁନ୍ତି ନାହିଁ ।

ଉ – (୧) ଆଲେକ୍‌ଜାଣ୍ଡର ପୁରୁଙ୍କୁ ପତ୍ରରେ କ'ଣ ଲେଖିଥିଲେ ?

(୨) ଭାରତ ଭୂମି କାହାର ଦେଶ ?

(୩) ଆଲେକ୍‌ଜାଣ୍ଡରଙ୍କୁ କିପରି ଆସିଥିଲେ ତାଙ୍କୁ ସମ୍ମାନର ସହ ପାଛୋଟି ଆଣିଥା'ନ୍ତେ ବୋଲି ପୁରୁ କହିଛନ୍ତି ?

(୪) ଆଲେକ୍‌ଜାଣ୍ଡର ଅତିଥି ଭାବରେ ଆସିଥିଲେ ପୁରୁ କ'ଣ କରିଥା'ନ୍ତେ ?

(୫) ଆଲେକ୍‌ଜାଣ୍ଡର କିପରି ଭାବେ ଭାରତ ଆସିଛନ୍ତି ?

(୬) ପୁରୁଙ୍କ ମତରେ ଆଲେକ୍‌ଜାଣ୍ଡରଙ୍କ ନିକଟରେ ଆତ୍ମସମର୍ପଣ କରିବା କିପରି ହେବ ?

(୭) ଦୂତକୁ ଫେରିବାକୁ ପୁରୁ କାହିଁକି ଆଦେଶ ଦେଲେ ?

(୮) ଦୂତ ଫେରିଯାଇ ଆଲେକ୍‌ଜାଣ୍ଡରଙ୍କୁ କି ଖବର ଦେବାକୁ ପୁରୁରାଜ କହିଥିଲେ ?

**୫। ତଳେ ଦିଆଯାଇଥିବା ପ୍ରଶ୍ନର ଉତ୍ତର ଲେଖ ।**

**(କ) ଆଲେକ୍‌ଜାଣ୍ଡର କେଉଁ ଦେଶର ରାଜା ଥିଲେ ?**

ଉ– ଆଲେକ୍‌ଜାଣ୍ଡର ଗ୍ରୀସ୍ ଦେଶର ରାଜା ଥିଲେ ।

**(ଖ) ସେ ଭାରତ ପ୍ରତି କାହିଁକି ଆକୃଷ୍ଟ ହୋଇଥିଲେ ?**

ଉ– ଭାରତର ଶିକ୍ଷା, ସଂସ୍କୃତି ଓ ପରମ୍ପରା ମହାନ୍ । ଏହାର ସୁନାମ ସାରା ଜଗତରେ ପ୍ରଚାରିତ । ଏହାର ଧନସମ୍ପତ୍ତି ପ୍ରତି ସେ ଆକୃଷ୍ଟ ହୋଇଥିଲେ ।

**(ଗ) କେଉଁ କାରଣ ଯୋଗୁଁ ଆଲେକ୍‌ଜାଣ୍ଡର ଭାରତ ଆକ୍ରମଣ କରିବା ପାଇଁ ସମର୍ଥ ହେଲେ ?**

ଉ– ଭାରତ ବର୍ଷରେ ଥିବା ରାଜ୍ୟ ରାଜ୍ୟ ମଧ୍ୟରେ ଏକତା ଓ ବୁଝାମଣାର ଅଭାବ ପରିଲକ୍ଷିତ ହୋଇଥିଲା । ତେଣୁ ସେହି ସୁଯୋଗକୁ ହାତଛଡ଼ା ନ କରି ଆଲେକଜାଣ୍ଡାର ଭାରତ ଆକ୍ରମଣ କରିବାପାଇଁ ସମର୍ଥ ହୋଇଥିଲେ ।

**(ଘ) ଆଲେକ୍‌ଜାଣ୍ଡର ପିଲାଦିନୁ ଭାରତ ବିଷୟରେ କ'ଣ ଶୁଣିଥିଲେ ?**

ଉ– ସ୍ୱର୍ଣ୍ଣପ୍ରସୂ ଭାରତଭୂମିର ମାଟିରେ ସୁନା ଫଳେ ଓ ଏ ଦେଶ ଘିଅ ମହୁରେ ପରିପୂର୍ଣ୍ଣ ବୋଲି ଆଲେକ୍‌ଜାଣ୍ଡର ପିଲାଦିନୁ ଭାରତ ବିଷୟରେ ଶୁଣିଥିଲେ ।

**୬। ନିମ୍ନରେ ଦିଆଯାଇଥିବା ଅନୁଚ୍ଛେଦରେ ବିରାମ ଚିହ୍ନ ଯୋଗକରି ଲେଖ ।**

ନୀତି ନିୟମ ଆଦର୍ଶ ଇତ୍ୟାଦି ଭାରତୀୟ ସୈନ୍ୟମାନଙ୍କୁ ସାଜେ ଆମକୁ ନୁହେଁ ଆମର ଲକ୍ଷ୍ୟ ଯେକୌଣସି ଉପାୟରେ ଯେକୌଣସି ପନ୍ଥାରେ ଯୁଦ୍ଧ ଜୟ କରିବା ତୁମେ ଯାଅ ସେନାପତି ବିଳମ୍ବ କଲେ ଆମର ବିଜୟ ଆଶା ଧୂଳିସାତ୍ ହୋଇଯିବ ମୋର ଆଦେଶ କାର୍ଯ୍ୟକାରୀ କର ।

ଉ – ନୀତି, ନିୟମ, ଆଦର୍ଶ ଇତ୍ୟାଦି ଭାରତୀୟ ସୈନ୍ୟମାନଙ୍କୁ ସାଜେ, ଆମକୁ ନୁହେଁ । ଆମର ଲକ୍ଷ୍ୟ, ଯେକୌଣସି ଉପାୟରେ, ଯେକୌଣସି ପନ୍ଥାରେ ଯୁଦ୍ଧ ଜୟ କରିବା । ତୁମେ ଯାଅ ସେନାପତି, ବିଳମ୍ବ କଲେ ଆମର ବିଜୟ ଆଶା ଧୂଳିସାତ୍ ହୋଇଯିବ । ମୋର ଆଦେଶ କାର୍ଯ୍ୟକାରୀ କର ।

**୭। ତଳେ ଡାହାଣ ପଟେ କେତୋଟି ଅର୍ଥସୂଚକ ଉକ୍ତି ଦିଆଯାଇଛି । ବାମପଟେ ଦିଆଯାଇଥିବା ଉପଯୁକ୍ତ ଶବ୍ଦ ସହ ତାହାକୁ ମିଳାଇ ଲେଖ ।**

| | |
|---|---|
| ବିତାଡ଼ିତ | କୌଣସି ଆଶା ପୂରଣ ନ ହେବା |
| ହତୋତ୍ସାହ | କୌଣସି ପରିସ୍ଥିତି ବା ଘଟଣାକୁ ଦେଖି ଡରି ପଳାଇବା |
| ପ୍ରତିରୋଧ | ଯାହାକୁ ବାହାର କରି ଦିଆଯାଇଛି |
| ପୃଷ୍ଠଭଙ୍ଗ | ଉତ୍ସାହ ହରାଇବା |
| ଧୂଳିସାତ୍ | ବାଧାଦେବା |



ଉ – ବିତାଡ଼ିତ – ଯାହାକୁ ବାହାର କରି ଦିଆଯାଇଛି

ହତୋତ୍ସାହ – ଉତ୍ସାହ ହରାଇବା

ପ୍ରତିରୋଧ – ବାଧାଦେବା

ପୃଷ୍ଠଭଙ୍ଗ – କୌଣସି ପରିସ୍ଥିତି ବା ଘଟଣାକୁ ଦେଖି ଡରି ପଳାଇବା

ଧୂଳିସାତ୍ – କୌଣସି ଆଶା ପୂରଣ ନ ହେବା

**୮। ଏକାଙ୍କିକାଟିକୁ ଭଲଭାବରେ ପଢ଼ି ତଳେ ଦିଆଯାଇଥିବା ସୂଚନା ଅନୁଯାୟୀ ଦୁଇଟି ଲେଖାଏଁ ବାକ୍ୟ ଲେଖ ।**

ଉ – **(କ) ପୁରୁଙ୍କର ଦେଶପ୍ରେମ ।**

(୧) ମୋ ଶରୀରର ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ମୁଁ ଲଢ଼ିବି ।

(୨) ଜନନୀ ଜନ୍ମଭୂମି ନିମନ୍ତେ ପ୍ରାଣ ଉତ୍ସର୍ଗ କରିବାପାଇଁ ସମସ୍ତ ଦେଶବାସୀଙ୍କୁ ଆହ୍ୱାନ କର ।

**(ଖ) ଆଲେକ୍‌ଜାଣ୍ଡରଙ୍କର ଭାରତ ପ୍ରତି ଧାରଣା ।**

(୧) ଭାରତର ମାଟିରେ ସୁନା ଫଳେ ।

(୨) ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଭାରତବର୍ଷ ପ୍ରକୃତରେ ବୀରମାନଙ୍କର ଲୀଳାଭୂମି ।

**(ଗ) ପୁରୁଙ୍କର ଆଲେକ୍‌ଜାଣ୍ଡରଙ୍କ ପ୍ରତି ଭକ୍ତି ।**

(୧) ପରାଜୟକୁ ମୁଁ ସ୍ୱୀକାର କରୁଛି ।

(୨) ଜଣେ ରାଜା ଆଉ ଜଣେ ରାଜା ପ୍ରତି ଯେଉଁ ପ୍ରକାର ବ୍ୟବହାର ପ୍ରଦର୍ଶନ କରିବା ଉଚିତ, ମୁଁ ଆପଣଙ୍କଠାରୁ ସେଇଭଳି ବ୍ୟବହାର ଆଶା କରେ ।

**(ଘ) ଆଲେକ୍‌ଜାଣ୍ଡରଙ୍କର ପୁରୁଙ୍କୁ ପ୍ରଶଂସା ବାଣୀ ।**

(୧) ପରାଜିତ ହେଲେ ମଧ୍ୟ ଆପଣଙ୍କର ମନୋବଳ ଦୃଢ଼ ରହିଛି ।

(୨) ଆପଣ ଆଜିଠାରୁ ହେଲେ ମୋର ବନ୍ଧୁ ।

**୯। ଅଭିଧାନ ଦେଖି ଏହି ଶବ୍ଦଗୁଡ଼ିକର ଅର୍ଥ ଲେଖ ।**

ସ୍ୱର୍ଣ୍ଣପ୍ରସୂ, ଧୂଳିସାତ୍, ବୀରାଙ୍ଗନା, ଅଭିପ୍ରାୟ, ନିକ୍ଷେପ

ଉ – **ସ୍ୱର୍ଣ୍ଣପ୍ରସୂ** – ସୁବର୍ଣ୍ଣ-ଉତ୍ପାଦିକା, ଅତିଶୟ ଉର୍ବରା

**ଧୂଳିସାତ୍** – ମାଟିରେ ମିଶିଯିବା

**ବୀରାଙ୍ଗନା** – ବୀରା ନାରୀ

**ଅଭିପ୍ରାୟ** – ଉଦ୍ଦେଶ୍ୟ

**ନିକ୍ଷେପ** – ଫିଙ୍ଗିବା

**୧୦। ନିମ୍ନରେ କେତୋଟି ଶବ୍ଦ ଦିଆଯାଇଛି, ସେହି ଶବ୍ଦଗୁଡ଼ିକୁ ବ୍ୟବହାରରେ ଏକ ଅନୁଚ୍ଛେଦ ଲେଖ ।**

ବେଦ ଉପନିଷଦ, ଘିଅମହୁ, ବୀରାଙ୍ଗନା, ସ୍ୱର୍ଣ୍ଣପ୍ରସୂ, ଶକ୍ତିଶାଳୀ, ସମ୍ମାନ, ଶେଷ ରକ୍ତବିନ୍ଦୁ

ଉ – ଭାରତ ବେଦ ଉପନିଷଦର ଦେଶ । ଏହି **ସ୍ୱର୍ଣ୍ଣପ୍ରସୂ** ବୀରଭୂମିର ବୀରମାନଙ୍କର ପରାକ୍ରମରେ ଏହା **ଶକ୍ତିଶାଳୀ** ହୋଇଉଠିଛି । ଏଇ ଭୂମିରେ ବୀର ଓ **ବୀରାଙ୍ଗନାମାନଙ୍କର** ଏକତାର ଅଭାବରୁ ପରାଜୟ ଘଟୁଛି । ପୁରୁ ରାଜା ପଣ କରିଛନ୍ତି ଯେ ତାଙ୍କ ଶରୀରର **ଶେଷ ରକ୍ତବିନ୍ଦୁ** ଥିବା ପର୍ଯ୍ୟନ୍ତ ସେ ଲଢ଼ିବେ । ଶେଷରେ ଦିନେ **ଘିଅମହୁରେ** ଭାସୁଥିବା ପୁରୁରାଜା ବିଦେଶୀ ହାତରେ ପରାଜୟ ବରଣ କରିଛନ୍ତି । ତେଣୁ ସେପରି ସ୍ୱାଭିମାନୀ ରାଜାଙ୍କୁ ଯଥୋଚିତ **ସମ୍ମାନ** ଦେବା ଉଚିତ ହେବ ।

## ତୁମ ପାଇଁ କାମ

୧ । ତୁମ ଅଞ୍ଚଳରେ ଏକତା ବଳରେ କରାଯାଇଥିବା କିଛି କାର୍ଯ୍ୟ ସମ୍ପର୍କରେ ଜାଣିଥିଲେ ପାଞ୍ଚଟି ବାକ୍ୟରେ ଲେଖ ।

୨ । ତୁମ ଗ୍ରାମରେ କିମ୍ବା ଅଞ୍ଚଳରେ ଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କ ସମ୍ପର୍କରେ ଯାହା ଜାଣିଛ ଲେଖ ।

୩ । ସାଙ୍ଗମାନେ ଏକାଠି ମିଶି ଏକାଙ୍କିକାର ଯେକୌଣସି ଗୋଟିଏ ଦୃଶ୍ୟ ଅଭିନୟ କର ।

## ପରୀକ୍ଷା ଉପଯୋଗୀ ଅତିରିକ୍ତ ପ୍ରଶ୍ନୋତ୍ତର

**୧ । ସଂକ୍ଷେପରେ ଉତ୍ତର ଦିଅ ।**

**(କ) ଏହି ଏକାଙ୍କିକାରେ କାହାର ଚରିତ୍ର ମହାନ୍ ଓ କାହିଁକି ?**

ଉ– ଏହି ଏକାଙ୍କିକାରେ ଆଲେକ୍‌ଜାଣ୍ଡରଙ୍କର ଚରିତ୍ର ମହାନ୍ । କାରଣ ଜଣେ ମହାନୁଭବ ରାଜାଭାବେ ପରାଜିତ ରାଜା ପୁରୁଙ୍କୁ ସେ ଯଥୋଚିତ ସମ୍ମାନ ଦେଇଛନ୍ତି । ତାଙ୍କୁ ବନ୍ଧୁ ଭାବରେ ଗ୍ରହଣ କରି ଶେଷରେ ତାଙ୍କୁ ତାଙ୍କର ରାଜ୍ୟ ଫେରାଇ ଦେଇଛନ୍ତି ।

**(ଖ) ପୁରୁଙ୍କର ରାଜ୍ୟ କେଉଁଠାରେ ଥିଲା ?**

ଉ– ବିତସ୍ତା ଓ ବିପାଶା ନଦୀ ଦ୍ୱୟର ମଧ୍ୟବର୍ତ୍ତୀ ଅଞ୍ଚଳରେ ପୁରୁଙ୍କର ରାଜ୍ୟ ଥିଲା ।

**(ଗ) ଯୁଦ୍ଧ ପାଇଁ କେତେ ସୈନ୍ୟବଳ ପ୍ରସ୍ତୁତ କରିବାକୁ ପୁରୁ ଆଦେଶ ଦେଲେ ?**

ଉ– ଯୁଦ୍ଧପାଇଁ ପଚାଶ ହଜାର ପଦାତିକ, ତିନିହଜାର ଅଶ୍ୱାରୋହୀ, ଏକ ହଜାର ଗଜାରୋହୀଙ୍କୁ ପ୍ରସ୍ତୁତ କରିବାକୁ ପୁରୁ ଆଦେଶ ଦେଲେ ।

**(ଘ) ଯୁଦ୍ଧରେ ଜୟ କରିବା କିପରି ସହଜ ହେବ ବୋଲି ଆଲେକ୍‌ଜାଣ୍ଡର ସେନାପତିଙ୍କୁ କୌଶଳ ବତାଇଲେ ?**

ଉ– ଶତ୍ରୁପକ୍ଷର ହାତୀମାନଙ୍କ ଉପରକୁ ତୀର ଓ ବର୍ଚ୍ଛା ପ୍ରୟୋଗ କଲେ ସେମାନେ କ୍ଷତ ବିକ୍ଷତ ହୋଇ ପଳାଇଯିବେ । ପଳାଇଲାବେଳେ ନିଜ ପକ୍ଷର ସୈନ୍ୟମାନଙ୍କୁ ଦଳି ଚକଟି ଦେବେ । ତା'ହେଲେ ଆଉ ଭାରତୀୟ ସୈନ୍ୟମାନେ ଆଗେଇପାରିବେ ନାହିଁ । ତେଣୁ ଯୁଦ୍ଧରେ ଜୟ କରିବା ଆମ ପକ୍ଷେ ସହଜ ହେବ । ଆଲେକ୍‌ଜାଣ୍ଡର ସେନାପତିଙ୍କୁ ଏହି କୌଶଳ ବତାଇ ଦେଲେ ।

**(ଙ) ପୁରୁ କାହିଁକି ସ୍ମରଣୀୟ ହୋଇରହିବେ ?**

ଉ– ନିଜର ବୀରତ୍ୱ, ସାହସିକତା ଓ ଦେଶଭକ୍ତି ପାଇଁ ପୁରୁ ଯୁଗଯୁଗକୁ ସ୍ମରଣୀୟ ହୋଇ ରହିଥିବେ ।

**(ଚ) ଆଲେକ୍‌ଜାଣ୍ଡରଙ୍କର ଆକ୍ରମଣ ବାର୍ତ୍ତା ଶୁଣି ପୁରୁ ସେନାପତିଙ୍କୁ କ'ଣ କହିଥିଲେ ?**

ଉ– ପୁରୁ କହିଥିଲେ ଯେ ତାଙ୍କର ରାଜ୍ୟ ଛୋଟ ହେଲେ ମଧ୍ୟ ସେ ପଛଘୁଞ୍ଚା ଦେବେ ନାହିଁ । ନିଜ ଶରୀରର ଶେଷ ରକ୍ତବିନ୍ଦୁ ଥିବାଯାଏ, ସେ ଲଢ଼େଇ କରିବେ । ଆଲେକଜାଣ୍ଡରଙ୍କୁ ଭାରତରୁ ବିତାଡ଼ିତ ନ କଲାଯାଏ ଶାନ୍ତିରେ ରହିପାରିବେ ନାହିଁ ।

**(ଛ) ପୁରୁ ଆଲେକ୍‌ଜାଣ୍ଡରଙ୍କଠାରୁ କିପରି ବ୍ୟବହାର ଆଶା କରନ୍ତି ବୋଲି କହିଥିଲେ ?**

ଉ– ପୁରୁ କହିଲେ ସେ ପରାଜିତ ହେଲେ ମଧ୍ୟ ଗୋଟିଏ ସ୍ୱାଧୀନ ରାଜ୍ୟର ରାଜା ଅଟନ୍ତି । ତେଣୁ ସେ ଆଲେକଜାଣ୍ଡରଙ୍କଠାରୁ ରାଜୋଚିତ ବ୍ୟବହାର ଆଶା କରନ୍ତି ବୋଲି କହିଥିଲେ ।



**(ଜ) ଆଲେକ୍‌ଜାଣ୍ଡର ପୁରୁଙ୍କର ପ୍ରଶଂସା କରି କ'ଣ କହିଥିଲେ ?**

ଉ– ପୁରୁଙ୍କର ପ୍ରଶଂସା କରି ଆଲେକ୍‌ଜାଣ୍ଡର କହିଥିଲେ, 'ଧନ୍ୟ ପୁରୁରାଜ ! ଆପଣ ପ୍ରକୃତରେ ଭାରତ ମାଟିର ବୀର ସନ୍ତାନ । ଭାରତବର୍ଷ ପ୍ରକୃତରେ ବୀରମାନଙ୍କର ଲୀଳାଭୂମି, ଏହା ମୁଁ ଅନୁଭବ କରୁଛି । ପରାଜିତ ହେଲେ ମଧ୍ୟ ଆପଣଙ୍କର ମନୋବଳ ଦୃଢ଼ ରହିଛି । ଆପଣ ଆଜିଠାରୁ ମୋର ବନ୍ଧୁ ହେଲେ ।

**୨ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।**

**(କ) ଆଲେକ୍‌ଜାଣ୍ଡର ପୁରୁଙ୍କୁ କାହିଁକି ବନ୍ଧୁଭାବେ ଗ୍ରହଣ କରିଥିଲେ ?**

ଉ– ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡର ପୃଥିବୀ ଜୟ କରିବାର ସ୍ୱପ୍ନ ଦେଖିଥିଲେ । ସେଥିପାଇଁ ସେ ଭାରତ ଆକ୍ରମଣ କରିବାକୁ ଆସିଥିଲେ । ପୁରୁ ଥିଲେ ଏକ କ୍ଷୁଦ୍ରରାଜ୍ୟର ରାଜା । ତେଣୁ ଆଲେକ୍‌ଜାଣ୍ଡର ତାଙ୍କ ସହ ଯୁଦ୍ଧ କରିବାକୁ ଚାହିଁ ନଥିଲେ । ପୁରୁଙ୍କୁ ଆତ୍ମସମର୍ପଣ କରିବାକୁ ସେ ଦୂତ ହାତରେ ପତ୍ର ଲେଖି ଜଣାଇଥିଲେ । ମାତ୍ର ପୁରୁ ତାଙ୍କ ପ୍ରସ୍ତାବ ଗ୍ରହଣ କରିନଥିଲେ । ଶେଷରେ ଆଲେକ୍‌ଜାଣ୍ଡରଙ୍କ ସହ ପୁରୁଙ୍କର ଯୁଦ୍ଧ ହେଲା । ପୁରୁ ଓ ତାଙ୍କ ସୈନ୍ୟବାହିନୀ ବୀରତ୍ୱର ସହ ଲଢ଼ି ବିଜୟର ଦ୍ୱାରଦେଶରେ ପହଞ୍ଚି ଯାଇଥିଲେ । ଆଲେକ୍‌ଜାଣ୍ଡର ଯୁଦ୍ଧନୀତି ପାଳନ ନକରି ପୁରୁଙ୍କ ସୈନ୍ୟବାହିନୀର ହାତୀଗୁଡ଼ିକୁ ତୀର ଓ ବର୍ଚ୍ଛାଦ୍ୱାରା ଆଘାତ କରିବାକୁ ନିର୍ଦ୍ଦେଶ ଦେଲେ । ହାତୀମାନେ ଏଣେତେଣେ ପଳାୟନ କରିବାରୁ ପୁରୁ ପରାଜିତ ଓ ବନ୍ଦୀ ହେଲେ । ପରାଜିତ ପୁରୁଙ୍କୁ ଆଲେକ୍‌ଜାଣ୍ଡର ତାଙ୍କଠାରୁ କି ବ୍ୟବହାର ଚାହାଁନ୍ତି ବୋଲି ପଚାରିଥିଲେ । ପୁରୁ ରାଜୋଚିତ ବ୍ୟବହାର ଚାହାଁନ୍ତି ବୋଲି କହିଥିଲେ । ପୁରୁଙ୍କର ବୀରତ୍ୱ ଓ ଦୃଢ଼ ମନୋବଳ ଦେଖି ଆଲେକ୍‌ଜାଣ୍ଡର ତାଙ୍କୁ ବନ୍ଧୁ ଭାବେ ଗ୍ରହଣ କରିଥିଲେ ।

**(ଖ) "ଆମର ଲକ୍ଷ୍ୟ, ଯେ କୌଣସି ଉପାୟରେ, ଯେକୌଣସି ପନ୍ଥାରେ ଯୁଦ୍ଧ ଜୟ କରିବା" – ଏକଥା କିଏ, କାହାକୁ, କେଉଁ ପ୍ରସଙ୍ଗରେ କହିଛନ୍ତି ?**

ଉ– ସ୍ୱର୍ଣ୍ଣପ୍ରସୂ ଭାରତବର୍ଷକୁ ଜୟ କରିବା ଲକ୍ଷ୍ୟ ନେଇ ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡର ଆଗେଇ ଆସିଛନ୍ତି । ଏ ଦେଶ ମାଟିରେ ସୁନା ଫଳେ ଓ ଏ ଦେଶ ଘିଅ ମହୁରେ ପରିପୂର୍ଣ୍ଣ ଇତ୍ୟାଦି କଥା ସେ ପିଲାଦିନରୁ ଶୁଣିଛନ୍ତି । ପୁରୁ ତାଙ୍କ ଜୟଯାତ୍ରା ପଥରେ ପ୍ରତିବନ୍ଧକ ହୋଇଛନ୍ତି । ଯୁଦ୍ଧକ୍ଷେତ୍ରରେ ପୁରୁଙ୍କ ସୈନ୍ୟମାନେ ବୀରତ୍ୱର ସହ ଲଢ଼ି ବିଜୟ ପଥରେ ଅଗ୍ରସର ହୋଇଛନ୍ତି । ନିଜର ପରାଜୟ ନିଶ୍ଚିତ ଜାଣି ଆଲେକ୍‌ଜାଣ୍ଡର ପୁରୁଙ୍କ ସୈନ୍ୟବାହିନୀର ହାତୀମାନଙ୍କୁ ତୀର ଓ ବର୍ଚ୍ଛା ମାରି କ୍ଷତବିକ୍ଷତ କରିବାକୁ ସେନାପତିଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଅସ୍ତ୍ରହୀନ ପଶୁମାନଙ୍କୁ ତୀର ମାରିବା ଅନ୍ୟାୟ ବୋଲି ସେନାପତି ସେଲ୍ୟୁକାସ୍ ଆଲେକ୍‌ଜାଣ୍ଡରଙ୍କୁ କହିଛନ୍ତି । କିନ୍ତୁ ତାଙ୍କର ଲକ୍ଷ୍ୟ ଯେ କୌଣସି ଉପାୟରେ ବିଜୟ ହାସଲ କରିବା ବୋଲି ଆଲେକ୍‌ଜାଣ୍ଡର କହିଛନ୍ତି ନ୍ୟାୟ ହେଉ ବା ଅନ୍ୟାୟ ହେଉ ସେ ନିଜର ବିଜୟ ଚାହାଁନ୍ତି । ଏକଥା ସେ ନିଜ ସେନାପତିଙ୍କୁ କହିଥିଲେ

● ● ●

# ସମୂହ ଗୀତ

ତୁହି ମା ! ଜନମଭୂମି　　　　　　ପବିତ୍ର ଭାରତଭୂମି
ତୋହର ସନ୍ତାନ ଆମ୍ଭେ ଅଟୁ ସରବେ,
ତୋର ଶ୍ରୀଚରଣ ସେବା -　　　　　　ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ଗୀତ ଆନନ୍ଦ-ରବେ;
ତୋ ଆନନ୍ଦେ ହୋଇବା ସୁଖୀ
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।
ଧନ୍ୟ ମହିମା ତୋହର　　　　　　ନାହିଁ ତାର ପଟାନ୍ତର
ମସ୍ତକରେ ହିମାଳୟ ପର୍ବତ ବର,
ଦୁଇ ପାରୁଶେ ଜଳଧି　　　　　　ବ୍ରହ୍ମପୁତ୍ର ସିନ୍ଧୁ ନଦୀ
ଚରଣରେ ବିରାଜିତ ମହାସାଗର;
ବିନ୍ଧ୍ୟ ଗିରିବର କଟିରେ,
ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ ।
ଜନମିଲେ ତୋ କୋଳରେ　　　　　　କେତେ ସୁର ବୀର ନରେ
ରାମଚନ୍ଦ୍ର ଭୀଷ୍ମ ଦ୍ରୋଣ କର୍ଣ୍ଣ ଅର୍ଜ୍ଜୁନ,
ମହାକବି ବେଦବ୍ୟାସ　　　　　　ବାଲମୀକ କାଳିଦାସ
ଗାଇଲେ ପବିତ୍ର କଣ୍ଠେ ତୋହର ଗୁଣ;
ଚୈତନ୍ୟାଦି ମହାତ୍ମା ଜନେ
ପ୍ରଚାରିଲେ ବିଭୁ ନାମ ଆନନ୍ଦ-ମନେ ।
କେତେ କେତେ ପୁଣ୍ୟବତୀ　　　　　　କେତେ ପତିବ୍ରତା ସତୀ
କେତେ ବୀରନାରୀ କେତେ ବୀରଜନନୀ,
ସମସ୍ତେ ତୋର ଦୁହିତା　　　　　　ପଦ୍ମିନୀ ସାବିତ୍ରୀ ସୀତା
ଦୁର୍ଗାବତୀ ଆଦି କେତେ ବୀର ରମଣୀ;
ନମଇ ମା ! ଭକତି ଭରେ
ଅଧମ ଅକ୍ଷମ ସୁତ ତୋ ଚରଣରେ ।

**ମଧୁସୂଦନ ରାଓ**





# ଗଠନ ମୂଲ୍ୟାୟନ ପ୍ରଶ୍ନପତ୍ର

## ଗଠନମୂଳକ ମୂଲ୍ୟାୟନ ପ୍ରଶ୍ନପତ୍ର - ୧

**ପାଠ୍ୟ ବିଷୟ**
ପଦ୍ୟ – *ବର୍ଷା*
ଗଦ୍ୟ – *ବନବାଣୀ, ମୋ ଜୀବନର ଅଭୁଲା କଥା*

### ପ୍ରଶ୍ନପତ୍ର – କ

ସମୟ – ୩୦ ମିନିଟ୍　　　　　　ପୂର୍ଣ୍ଣସଂଖ୍ୟା – ୨୫

(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।　[୨ × ୫
(କ) ପ୍ରାଣୀଙ୍କ ଜୀବନ କିଏ ବୋଲି କହିଛନ୍ତି ?
(ଖ) ଖଦ୍ୟୋତ କେତେବେଳେ ଉଡ଼ି ବୁଲେ ?
(ଗ) ବନବାଣୀକୁ 'ଭାରତର ବାଣୀ' ବୋଲି କାହିଁକି କୁହାଯାଇଛି ?
(ଘ) ରାମଚନ୍ଦ୍ରଙ୍କୁ କାହିଁକି ନାନା ଦୁଃଖ ଦୁର୍ବିପାକ ଭୋଗ କରିବାକୁ ପଡ଼ିଥିଲା ?
(ଙ) ଛାତ୍ରମାନେ ଗାନ୍ଧିଜୀଙ୍କୁ କିପରି ସୁରକ୍ଷା ଦେଇଥିଲେ ?

୨ । **ଗୋଟିଏ** ବାକ୍ୟରେ ଉତ୍ତର ଦିଅ ।　[୧ × ୧୦
(କ) ମଣ୍ଡୂକମାନେ କାହିଁକି ଗର୍ଜନ୍ତି ?
(ଖ) ନଦୀମାନେ କିପରି ଉଛୁଳିଲେ ?
(ଗ) ପ୍ରାଚୀନ କାଳରେ ଭାରତର ଛାତ୍ରମାନେ କେଉଁ ସ୍ଥାନରେ ରହି ବିଦ୍ୟାଶିକ୍ଷା କରୁଥିଲେ ?
(ଘ) ଗାନ୍ଧିଜୀ ଲେଖକଙ୍କୁ କ'ଣ କହିଥିଲେ ?
(ଙ) ଗରିବ ପିଲାଟି ଶେଷରେ କେଉଁ ପଦବୀରେ ନିଯୁକ୍ତ ହୋଇ ପାରିଥିଲା ?
(ଚ) 'ବର୍ଷା' କବିତାଟି ଓଡ଼ିଆ ଭାଗବତର କେଉଁ ସ୍କନ୍ଧରୁ ଆସିଛି ?
(ଛ) 'ବର୍ଷା' କବିତାରେ କାହାକୁ ରାଜା ବୋଲି କୁହାଯାଇଛି ?
(ଜ) ଭାରତର କେଉଁ କେଉଁ ପ୍ରାଚୀନ କାବ୍ୟ ନାଟକ ଆଦିରେ ଅରଣ୍ୟର କଥା କୁହାଯାଇଛି ?
(ଝ) ମହାତ୍ମା ଗାନ୍ଧି କେବେ ପାରଳାଖେମୁଣ୍ଡି ଆସିଥିଲେ ?
(ଞ) ମୋ ଜୀବନର ଅଭୁଲା କଥାର ଲେଖକ କିଏ ?

୩ । ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ ।　[୧ ×
(କ) ଗୋଟିଏ ପ୍ରତିଶବ୍ଦ ଲେଖ । ଚନ୍ଦ୍ର – ☐
(ଖ) ଭିନ୍ନ ଜାତୀୟ ଶବ୍ଦଟି ବାଛି କୋଠରି ମଧ୍ୟରେ ଲେଖ ।
ମଣ୍ଡୂକ, ମୟୂର, ଛତୁ, ଖଦ୍ୟୋତ ☐
(ଗ) ବାକ୍ୟ ଗଠନ କର ।
ଆବିର୍ଭାବ – ________________
(ଘ) ଶବ୍ଦଟିର ବିଶେଷଣ ପଦ ଲେଖ : ଉପସ୍ଥାନ – ☐
(ଙ) ଲିଙ୍ଗ ପରିବର୍ତ୍ତନ କର : ଶିକ୍ଷକ – ☐

## ପ୍ରଶ୍ନପତ୍ର – ଖ

ସମୟ – ୩୦ ମିନିଟ୍ ପୂର୍ଣ୍ଣସଂଖ୍ୟା – ୨୫

(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ । [୨ × ୫

(କ) ମେଘମାନେ କିପରି ଭାବରେ ଜଳବର୍ଷା କରେ ?

(ଖ) ଖଦ୍ୟୋତ କେତେବେଳେ ଉଡ଼ିବୁଲେ ?

(ଗ) କେଉଁମାନଙ୍କର ପବିତ୍ର ସ୍ମୃତି ଏବେବି ଭାରତୀୟଙ୍କ ପ୍ରାଣରେ ଗୌରବ ଜନ୍ମାଉଛି ?

(ଘ) ଲେଖକ ଗରିବ ପିଲାଟିକୁ କିପରି ସାହାଯ୍ୟ କରିଥିଲେ ?

(ଙ) ମିଲିଟାରୀ ପୋଷାକ ପିନ୍ଧିଥିବା ଯୁବକଙ୍କର ନାଁ କ'ଣ ?

୨ । ଗୋଟିଏ ବାକ୍ୟରେ ଉତ୍ତର ଦିଅ । [୧ × ୧୦

(କ) ବର୍ଷା କବିତାର କବି କିଏ ?

(ଖ) ବେଙ୍ଗମାନେ କେଉଁଠି ରଡ଼ି କରନ୍ତି ?

(ଗ) ପୁରାତନ ଛାତ୍ରମାନେ କେଉଁଠାରେ ଶିକ୍ଷାଲାଭ କରୁଥିଲେ ?

(ଘ) କେଉଁମାନଙ୍କର ପବିତ୍ର ସ୍ମୃତି ଏବେବି ଭାରତୀୟଙ୍କ ପ୍ରାଣରେ ଗୌରବ ଜନ୍ମାଉଛି ?

(ଙ) ଛାତ୍ରମାନେ ଗାନ୍ଧିଜୀଙ୍କୁ କିପରି ସୁରକ୍ଷା ଦେଇଥିଲେ ?

(ଚ) 'ବର୍ଷା' କବିତାର କବି କିଏ ?

(ଛ) ଛତୁ କେଉଁ ଋତୁରେ ଫୁଟେ ?

(ଜ) ଲେଖକ କାହାକୁ ନିଜର ଜନନୀ ବୋଲି କହିଛନ୍ତି ?

(ଝ) ଗୋପବନ୍ଧୁ କେଉଁଠାରେ ଜନ୍ମଗ୍ରହଣ କରିଥିଲେ ?

(ଞ) ପଞ୍ଚୁପାଣ୍ଡବଙ୍କୁ ରାଜ୍ୟଲାଭ ପୂର୍ବରୁ କେଉଁ ଦଶା ଭୋଗିବାକୁ ପଡ଼ିଥିଲା ?

୩ । ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧ × ୫

(କ) ଗଦ୍ୟରୂପ ଲେଖ ।

ବରଷା – ☐

(ଖ) ଶବ୍ଦଟିର ଅର୍ଥ ବନ୍ଧନୀ ମଧ୍ୟରୁ ବାଛି କୋଠରି ଭିତରେ ଲେଖ ।

ସୌଦାମିନୀ – (ଲହରୀ, ବିଜୁଳି, ଘଡ଼ଘଡ଼ି) ☐

(ଗ) ଭିନ୍ନଜାତୀୟ ଶବ୍ଦଟିକୁ ବାଛି କୋଠରି ମଧ୍ୟରେ ଲେଖ ।

କାବ୍ୟ, କିମ୍ବଦନ୍ତୀ, ନାଟକ, ପୁରାଣ ☐

(ଘ) ଠିକ୍ ବନାନ ଶବ୍ଦଟିକୁ ବାଛି କୋଠରି ଭିତରେ ଲେଖ ।

ଶନ୍ୟାସୀ, ସନ୍ନ୍ୟାସୀ, ସନ୍ୟାସୀ, ଷନ୍ୟାସୀ – ☐

(ଙ) ଲିଙ୍ଗ ପରିବର୍ତ୍ତନ କର ।

ବେଙ୍ଗ – ☐



## ଗଠନମୂଳକ ମୂଲ୍ୟାୟନ ପ୍ରଶ୍ନପତ୍ର - ୨

| ପାଠ୍ୟ ବିଷୟ | ପଦ୍ୟ – *ପ୍ରଭାତ ଅବକାଶ*<br>ଗଦ୍ୟ – *କ'ଣ ଶିଖିବା, ଦେଶପ୍ରେମୀ କଏଦୀ* |
|---|---|

## ପ୍ରଶ୍ନପତ୍ର – କ

ସମୟ – ୩୦ ମିନିଟ୍ ପୂର୍ଣ୍ଣସଂଖ୍ୟା – ୨୫

(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ । [୨ × ୫

(କ) ତପସ୍ୱୀ କେତେବେଳେ ସୁଖୀ ହୁଅନ୍ତି ?

(ଖ) ଶ୍ରୀକୃଷ୍ଣ କ'ଣ ଖାଇବାକୁ ଭଲ ପାଆନ୍ତି ?

(ଗ) ଆମେରିକାର ଲୋକମାନେ କ'ଣ ପାଇଁ ଅଧିକ ବ୍ୟସ୍ତ ?

(ଘ) ଗାନ୍ଧିଜୀ ଲେଖକଙ୍କୁ କ'ଣ କହିଥିଲେ ?

(ଙ) ଲେଖକଙ୍କ ମତରେ ଆମେରିକାର ସବୁଠୁ ଭଲ କଥାଟି କ'ଣ ?

୨ । ଗୋଟିଏ ବାକ୍ୟରେ ଉତ୍ତର ଦିଅ । [୧ × ୧୦

(କ) ସକାଳ ହେବାରୁ କେଉଁ କେଉଁ ପକ୍ଷୀ ରାବିଲେ ?

(ଖ) କେଉଁମାନେ ସିଂହଦ୍ୱାର ନିକଟରେ ଥାଇ ଶ୍ରୀକୃଷ୍ଣଙ୍କୁ ଡାକୁଛନ୍ତି ?

(ଗ) ଲେଖକ ମଣିଷର ଦୋଷ ଓ ଗୁଣ ସମ୍ପର୍କରେ କ'ଣ କହୁଛନ୍ତି ?

(ଘ) ଆମେରିକୀୟମାନଙ୍କର କେଉଁ ଗୁଣ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ?

(ଙ) ସଭରକର୍ କେଉଁ ଦଳ ଗଠନ କରିଥିଲେ ?

(ଚ) ସକାଳ ହେବାରୁ କେଉଁ ପକ୍ଷୀ ରାବିଲେ ?

(ଛ) 'ପ୍ରଭାତ' ଅବକାଶ କବିତାର କବି କିଏ ?

(ଜ) ଆମେରିକୀୟମାନଙ୍କ କେଉଁ ଗୁଣଟି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ?

(ଝ) ସଭରକରଙ୍କର ପୂରାନାମ କ'ଣ ?

(ଞ) ଗାନ୍ଧିଜୀ କେଉଁଠାକୁ ସଭା କରିବାକୁ ଆସିଲେ ?

୩ । ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧ × ୫

(କ) ଏକପଦରେ ପ୍ରକାଶ କର ।

ବୀଣାପାଣିରେ ଯାହାର – ☐

(ଖ) ଅସଜଡ଼ା ପଦକୁ ସଜାଡ଼ି ଲେଖ ।

ଖଣ୍ଡ ସଙ୍ଗେ ଅଧାମ ଗୋଟିକା ଭୁଜାଇବି ସର ପୁଳି ହେ ।

(ଗ) ବାକ୍ୟ ଗଠନ କର ।

ଲଗାଲଗି – ______________________

(ଘ) ଶେଷରେ ବାନ୍ ଲଗାଇ ଶବ୍ଦଟିଏ ଲେଖ :

ଯେପରି ବଳବାନ, ସେହିପରି ☐

(ଙ) 'ଅସୁବିଧା' ଶବ୍ଦ ପରି ମୂଳରେ 'ଅ' ଥିବା ଶବ୍ଦଟିଏ ଲେଖ : ☐

## ପ୍ରଶ୍ନପତ୍ର – ଖ

ୟ – ୩୦ ମିନିଟ୍ ପୂର୍ଣ୍ଣସଂଖ୍ୟା – ୨୫

(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)

ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ । [୨ × ୫

(କ) ମାତା ଯଶୋଦା ଶ୍ରୀକୃଷ୍ଣ କେଉଁ କେଉଁ ଖାଦ୍ୟ ଖୁଆଇବେ ବୋଲି କହିଛନ୍ତି ?

(ଖ) କେଉଁ କେଉଁ ପକ୍ଷୀ ଶ୍ରୀକୃଷ୍ଣଙ୍କୁ ରାତି ପାହିବାର ସୂଚନା ଦେଇଛନ୍ତି ?

(ଗ) ଲେଖକଙ୍କ ମତରେ ଆମ ଦେଶ ଓ ଜାତିପାଇଁ କ'ଣ କରିବା ଉଚିତ୍ ?

(ଘ) କେଉଁ ଉଦ୍ଦେଶ୍ୟରେ ସଭରକର୍ ଜାହାଜରୁ ସମୁଦ୍ରକୁ ଡେଇଁ ପଡ଼ିଥିଲେ ?

(ଙ) ସଭରକର୍ ବନ୍ଦୀହେବାର କାରଣ କ'ଣ ?

ଗୋଟିଏ ବାକ୍ୟରେ ଉତ୍ତର ଦିଅ । [୧ × ୧୦

(କ) ପ୍ରଭାତ ଅବକାଶ କବିତାର କବି କିଏ ?

(ଖ) ଶ୍ରୀକୃଷ୍ଣଙ୍କର ଅନ୍ୟ ନାମ କ'ଣ ?

(ଗ) ପ୍ରଫେସର ମର୍ଗାନ୍‌ଙ୍କ ସହିତ ଲେଖକ କାହା ଘରକୁ ଯାଇଥିଲେ ?

(ଘ) ଆମେରିକାର ଶିକ୍ଷକ ଜଣକ ଗ୍ରୀଷ୍ମଛୁଟିରେ କ'ଣ କରନ୍ତି ?

(ଙ) ସଭରକର୍ କାହିଁକି ଲଣ୍ଡନ ଯାଇଥିଲେ ?

(ଚ) ଶ୍ରୀକୃଷ୍ଣଙ୍କ ମାତାଙ୍କ ନାମ କ'ଣ ?

(ଛ) ପରଖର ଶବ୍ଦର ଅର୍ଥ କ'ଣ ?

(ଜ) ଲେଖକ କାହା ସହ ଗାଡ଼ିରେ ସଭାକୁ ଯାଉଥିଲେ ?

(ଝ) ସଭରକର୍‌ଙ୍କ ବଡ଼ଭାଇଙ୍କ ନାମ କ'ଣ ?

(ଞ) ସଭରକର୍ କେଉଁଠାରେ ଜନ୍ମଗ୍ରହଣ କରିଥିଲେ ?

ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧ × ୫

(କ) ଶବ୍ଦଟିର ଅର୍ଥ ଲେଖ ।

ଅଧାମ – ☐

(ଖ) ଏକପଦରେ ପ୍ରକାଶ କର ।

ଧନୁ ଧରନ୍ତି ଯେ – ☐

(ଗ) 'ରାସ୍ତାଘାଟ' ଭଳି ଏକ ଯୁଗ୍ମ ଶବ୍ଦ ଲେଖ । ☐

(ଘ) ମୁହୂର୍ତ୍ତ – ବନାନ ଠିକ୍ କରି ଲେଖ । ☐

(ଙ) ବାକ୍ୟ ଗଠନ କର ।

ପ୍ରୟୋଜନ – ________________



## ଗଠନମୂଳକ ମୂଲ୍ୟାୟନ ପ୍ରଶ୍ନପତ୍ର - ୩

**ପାଠ୍ୟ ବିଷୟ**
ପଦ୍ୟ – *ଜନ୍ମଭୂମି*
ଗଦ୍ୟ – *କିଏ ଭାସେ କିଏ ବୁଡ଼େ ?, ବିଶ୍ୱବିଜୟୀ ବିବେକାନନ୍ଦ, ବୃକ୍ଷଲତା ଆମର ବନ୍ଧୁ*
ଗଳ୍ପ – *ନ୍ୟାୟ ବିଚାର*

## ପ୍ରଶ୍ନପତ୍ର – କ

ସମୟ – ୩୦ ମିନିଟ୍ ପୂର୍ଣ୍ଣସଂଖ୍ୟା – ୨୫

(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ । [୨ × ୫

(କ) ଖେଳସାଥୀ ମେଳକୁ ନନ୍ଦନକାନନ ବୋଲି କହିଛନ୍ତି କାହିଁକି ?

(ଖ) ଆର୍କମେଡ଼ିସ୍ କେଉଁ ସକାଶେ ଚିନ୍ତିତ ଥିଲେ ?

(ଗ) ବିଲେ କଦଳୀ ବାଡ଼ିରେ ବସିବାର କାରଣ କ'ଣ ?

(ଘ) ବୃକ୍ଷଲତାକୁ 'ସବୁଜ ସ୍ୱର୍ଣ୍ଣ' କୁହାଯାଏ କାହିଁକି ?

(ଙ) କାଜିର ସାହସ ଦେଖି ଲୋକେ କ'ଣ କହିଲେ ?

୨ । ଗୋଟିଏ ବାକ୍ୟରେ ଉତ୍ତର ଦିଅ । [୧ × ୧୦

(କ) ରାଜା କ'ଣ ପରୀକ୍ଷା କରିବାକୁ ଚାହିଁଥିଲେ ?

(ଖ) ପୋଲିସ କାହାକୁ ଧରି ନେଇଗଲା ?

(ଗ) ବିବେକାନନ୍ଦଙ୍କ ପିଲାଦିନର ନାମ କ'ଣ ଥିଲା ?

(ଘ) ଆଲୋକ ସଂଶ୍ଳେଷଣ ପ୍ରକ୍ରିୟାରେ ବୃକ୍ଷଲତା କ'ଣ କରନ୍ତି ?

(ଙ) ଜାନକୀ ବାଈ କିପରି ପେଟ ପୋଷୁଥିଲା ?

(ଚ) ଜନ୍ମଭୂମି କାହା ସହିତ ତୁଳନୀୟ ?

(ଛ) ଆର୍କମେଡ଼ିସ୍ କ'ଣ କହି କହି ଦାଣ୍ଡରେ ଧାଇଁଲେ ?

(ଜ) ବିବେକାନନ୍ଦଙ୍କ ମାତାଙ୍କ ନାମ କ'ଣ ?

(ଝ) ଚରକ କେଉଁ ଶାସ୍ତ୍ର ଲେଖି ପ୍ରସିଦ୍ଧ ହୋଇଛନ୍ତି ?

(ଞ) ନ୍ୟାୟ ବିଚାରର ଗାଳ୍ପିକ କିଏ ?

୩ । ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧ × ୫

(କ) ଭିନ୍ନଜାତୀୟ ଶବ୍ଦଟିକୁ ବାଛି କୋଠରି ମଧ୍ୟରେ ଲେଖ ।

ରବି, ତପନ, ଭାସ୍କର, ଆନନ୍ଦ – ☐

(ଖ) ଏକପଦରେ ପ୍ରକାଶ କଲେ କ'ଣ ହେବ ଲେଖ ।

ସାହିତ୍ୟ ଯେ ଜାଣନ୍ତି – ☐

(ଗ) ଶବ୍ଦ ଦୁଇଟିର ଅର୍ଥଗତ ପାର୍ଥକ୍ୟ ଦର୍ଶାଅ ।

କୂଳ – ☐, କୁଳ – ☐

(ଘ) ବିପରୀତ ଶବ୍ଦ ଲେଖ : ଆଦର – ☐

(ଙ) ବାକ୍ୟ ଗଠନ କର ।

ନିରପେକ୍ଷ – ________________

## ପ୍ରଶ୍ନପତ୍ର – ଖ

ସମୟ – ୩୦ ମିନିଟ୍ | ପୂର୍ଣ୍ଣସଂଖ୍ୟା – ୨୫

(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ । [୨ × ୫

(କ) ଜନ୍ମଭୂମି ପ୍ରତି ଆମର କି କର୍ତ୍ତବ୍ୟ ରହିଛି ?

(ଖ) ଆର୍କମେଡ଼ିସ୍ କେଉଁ ସକାଶେ ଚିନ୍ତିତ ଥିଲେ ?

(ଗ) 'ରାମକୃଷ୍ଣ ମିଶନ' ଅନୁଷ୍ଠାନଟି କି କି ଲୋକ ହିତକର କାର୍ଯ୍ୟ କରୁଛି ?

(ଘ) କେଉଁ ଉପାୟରେ ଜଙ୍ଗଲର ବୃଦ୍ଧି କରାଯାଇପାରେ ?

(ଙ) ସ୍ତ୍ରୀଲୋକଟି କାଜିକୁ କ'ଣ କହିଲା ?

୨ । ଗୋଟିଏ ବାକ୍ୟରେ ଉତ୍ତର ଦିଅ । [୧ × ୧୦

(କ) ଆମ ଜନ୍ମଭୂମିର ନାମ କ'ଣ ?

(ଖ) ଡାକବାଜି ଯନ୍ତ୍ରରେ ଲୋକ ଦୁଇଜଣ କେଉଁ ନାଟକ କଥା ପ୍ରଚାର କଲେ ?

(ଗ) ରାମକୃଷ୍ଣ ନରେନ୍ଦ୍ରଙ୍କୁ କ'ଣ ବୁଝାଇ ଦେଇଥିଲେ ?

(ଘ) ଚରକ କେଉଁ ଶାସ୍ତ୍ର ଲେଖି ପ୍ରସିଦ୍ଧ ଲାଭ କରିଛନ୍ତି ?

(ଙ) ଅଦାଲତରେ ସୁଲ୍ତାନ୍‌ଙ୍କୁ ଦେଖି ଲୋକମାନେ କ'ଣ କଲେ ?

(ଚ) ପରିବାରରେ ଫୁଟିଲା ଫୁଲ କିଏ ?

(ଛ) ଆର୍କିମେଡ଼ିସ୍ କିଏ ?

(ଜ) ବିବେକାନନ୍ଦଙ୍କ ଗୁରୁଙ୍କ ନାମ କ'ଣ ?

(ଝ) ଓଡ଼ିଶାର କେଉଁ ଜିଲ୍ଲାରେ ସବୁଠୁ କମ୍ ବୃଷ୍ଟିପାତ ହୁଏ ?

(ଞ) କେଉଁମାନଙ୍କୁ 'କାଜି' କୁହାଯାଉଥିଲା ?

୩ । ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧ × ୫

(କ) ଭିନ୍ନ ଜାତୀୟ ଶବ୍ଦଟିକୁ ବାଛି କୋଠରି ମଧ୍ୟରେ ଲେଖ ।

ପାଣି, ଜଳ, ନୀଳ, ଅନଳ – ______

(ଖ) ଶବ୍ଦଟିର ବିଶେଷଣ ରୂପ ଲେଖ ।

ଆୟୋଜନ – ______

(ଗ) ଏକପଦରେ ପ୍ରକାଶ କର ।

ଯାହା ସହଜରେ ମିଳିନଥାଏ – ______

(ଘ) ବିପରୀତ ଶବ୍ଦ ଲେଖ ।

ବିଶ୍ୱାସ – ______

(ଙ) ବାକ୍ୟ ଗଠନ କର ।

ସଫଳ – ______



## ଗଠନମୂଳକ ମୂଲ୍ୟାୟନ ପ୍ରଶ୍ନପତ୍ର - ୪

**ପାଠ୍ୟ ବିଷୟ**

ପଦ୍ୟ – *ଶରତ-ନଈ-କୂଳେ, ଧୂଳି*

ଗଦ୍ୟ – *ଅଲିମ୍ପିକ କ୍ରୀଡ଼ା, ଓଡ଼ିଶାର ସଂସ୍କୃତି*

## ପ୍ରଶ୍ନପତ୍ର – କ

ସମୟ – ୩୦ ମିନିଟ୍ | ପୂର୍ଣ୍ଣସଂଖ୍ୟା – ୨୫

(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ । [୨ × ୫

(କ) କବି ଶେଫାଳୀ ଫୁଲର ବର୍ଣ୍ଣନା କିପରି କରିଛନ୍ତି ?

(ଖ) ନିର୍ବିକାର ଭାବରେ ଧୂଳିକଣା କ'ଣ ସହେ ?

(ଗ) ଅଲିମ୍ପିକ କ୍ରୀଡ଼ାର ଏପରି ନାମକରଣ କାହିଁକି କରାଯାଇଛି ?

(ଘ) ଅଲିମ୍ପିକ କ୍ରୀଡ଼ାର ପ୍ରଧାନ ଉଦ୍ଦେଶ୍ୟ କ'ଣ ?

(ଙ) ବିଭିନ୍ନ ପର୍ବପର୍ବାଣି ପାଳନଦ୍ୱାରା ଆମର କି ଉପକାର ହୁଏ ?

୨ । ଗୋଟିଏ ବାକ୍ୟରେ ଉତ୍ତର ଦିଅ । [୧ × ୧୦

(କ) ବଗଟି ସୁଅର ଧାର ପାଖରେ କିପରି ବସିଛି ?

(ଖ) ଧୂଳିକଣା ନିଜକୁ କ'ଣ ବୋଲି କହିଛି ?

(ଗ) ଗ୍ରୀସ୍ ଦେଶରେ ଅଲିଭ୍ ଡାଳକୁ କାହାର ପ୍ରତୀକ ଭାବରେ ବିବେଚନା କରାଯାଏ ?

(ଘ) ସଂସ୍କୃତି କହିଲେ ଆମେ କାହାକୁ ବୁଝୁ ?

(ଙ) କେଉଁଥିରେ ମଣ୍ଡିତ ହେବାକୁ ଓଡ଼ିଆ ଶ୍ରେୟ ମନେକରେ ?

(ଚ) ଶେଫାଳୀ ଫୁଲ କେଉଁଠାରେ ଶୋଭାପାଏ ?

(ଛ) ଧୂଳିକଣା କେଉଁଠାରେ ପଡ଼ି ରହିଛି ?

(ଜ) କେଉଁ ଦେଶ ଅଲିମ୍ପିକ୍ କ୍ରୀଡ଼ାର ଜନ୍ମସ୍ଥଳୀ ରୂପେ ପରିଚିତ ?

(ଝ) ଓଡ଼ିଶାର ସଂସ୍କୃତି ଓ ଲୋକାଚାରରେ କାହାର ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଛି ?

(ଞ) ଚଣ୍ଡାଶୋକ କେଉଁଠାରେ ଧର୍ମାଶୋକରେ ପରିଣତ ହୋଇଥିଲେ ?

୩ । ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧ × ୫

(କ) ପଦ୍ୟରୂପ ଲେଖ ।

ଜୋଛନା – ______

(ଖ) 'ଚେଷ୍ଟା'ର ବିପରୀତ ଶବ୍ଦ ଲେଖ । ______

(ଗ) 'ଭଲମନ୍ଦ' ପରି ଯୁଗ୍ମ ଶବ୍ଦଟିଏ ଲେଖ : ______

(ଘ) 'ଖେଳ' ସହିତ 'ଆଳି' ଲାଗି ଖେଳାଳି ହୋଇଛି, ସେହିପରି ପହଁର – ______

(ଙ) ବାକ୍ୟ ଗଠନ କର ।

ପ୍ରଦର୍ଶନ – ______

## ପ୍ରଶ୍ନପତ୍ର – ଖ

ସମୟ – ୩୦ ମିନିଟ୍ ପୂର୍ଣ୍ଣସଂଖ୍ୟା – ୨୫

**(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)**

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ । [୨ × ୫

(କ) ଶରତ ଆକାଶରେ ନୀଳମେଘ କଥା କିପରି ବର୍ଣ୍ଣିତ ହୋଇଛି ?

(ଖ) ଧୂଳି କିଭଳି ଭାବେ ପୃଥିବୀ ଉପରେ ପଡ଼ିରହିଛି ?

(ଗ) ଅଲିମ୍ପିକ୍ କ୍ରୀଡ଼ାର ଏପରି ନାମକରଣ କାହିଁକି କରାଯାଇଛି ?

(ଘ) ସଂସ୍କୃତି କହିଲେ ଆମେ କ'ଣ ବୁଝୁ ?

(ଙ) ଓଡ଼ିଶାର ସାମାଜିକ ଓ ପାରିବାରିକ ଜୀବନ ମଧୁର କାହିଁକି ?

୨ । ଗୋଟିଏ ବାକ୍ୟରେ ଉତ୍ତର ଦିଅ । [୧ × ୫

(କ) ବଗ କେଉଁଠି ଶିକାର ପାଇଁ ବସିଛି ?

(ଖ) ବିଶ୍ୱଜୀବଙ୍କ ବିଷୟରେ ଧୂଳି କ'ଣ କରିଛି ?

(ଗ) ୨୦୦୮ ମସିହାରେ ଅଲିମ୍ପିକ୍ କ୍ରୀଡ଼ା କେଉଁଠାରେ ଅନୁଷ୍ଠିତ ହୋଇଥିଲା ?

(ଘ) ୨୦୦୦ ମସିହା ଅଲିମ୍ପିକ୍ କ୍ରୀଡ଼ାରେ ଭାରତର କେଉଁ ମହିଳା କ୍ରୀଡ଼ାବିତ୍ ବ୍ରୋଞ୍ଜ ପଦକ ହାସଲ କରିଥିଲେ ?

(ଙ) ଓଡ଼ିଆ ସଂସ୍କୃତିର ମୂଳ ଆଦର୍ଶ କ'ଣ ?

(ଚ) ଶରତ କାଳରେ ଆକାଶର ରଙ୍ଗ କିପରି ଦେଖାଯାଏ ?

(ଛ) 'ଧୂଳି' କବିତାର କବିଙ୍କ ଜନ୍ମସ୍ଥାନ କେଉଁଠି ?

(ଜ) ପ୍ରଥମ ଆଧୁନିକ ଅଲିମ୍ପିକ୍ କ୍ରୀଡ଼ାରେ ମୋଟ କେତୋଟି ବିଷୟରେ ପ୍ରତିଯୋଗିତା ହୋଇଥିଲା ?

(ଝ) ଭାରତର କେଉଁ ପ୍ରତିଯୋଗୀ ଅଲିମ୍ପିକ୍ କ୍ରୀଡ଼ାରେ ବ୍ୟକ୍ତିଗତ ସ୍ୱର୍ଣ୍ଣପଦକ ଲାଭ କରିଛନ୍ତି ?

(ଞ) କ'ଣ ଦେଇ ବନ୍ଧୁ ହେବା ଓଡ଼ିଶାର ଏକ ପ୍ରାଚୀନ ପରମ୍ପରା ?

୩ । ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧ × ୫

(କ) ସମାନାର୍ଥବୋଧକ ଶବ୍ଦଟିଏ ଲେଖ ।

ନୟନ – ☐

(ଖ) ଶବ୍ଦଟିର ଅର୍ଥ ଲେଖ ।

କୁଟୁମ୍ବ – ☐

(ଗ) ଶୂନ୍ୟସ୍ଥାନରେ ଠିକ୍ ଶବ୍ଦ ଲେଖ ।

ଦେଖ୍ + ଆଳି = ☐

(ଘ) 'ପରିବାର'ରୁ ଯେପରି 'ପାରିବାରିକ' ହୁଏ, ସେହିପରି କ'ଣ ହେବ ?

ବ୍ୟବହାର – ☐

(ଙ) ବାକ୍ୟ ଗଠନ କର ।

ବିଭବ – ______________________

---



## ସମାପ୍ତିସୂଚକ ମୂଲ୍ୟାୟନ-୧ ପାଇଁ ଆଦର୍ଶ ପ୍ରଶ୍ନପତ୍ର

*ସମୟ – ୨ ଘଣ୍ଟା* *(ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।)* *ପୂର୍ଣ୍ଣସଂଖ୍ୟା – ୫୦*

*ପ୍ରତି ପ୍ରଶ୍ନ ପାଇଁ ସର୍ବାଧିକ ନମ୍ବର ପ୍ରଶ୍ନର ଡାହାଣ ପାର୍ଶ୍ୱରେ ଦିଆଯାଇଛି ।*

ଉତ୍ତର ଲେଖ । [୨ × ୧୦

୧ । କବି ବନମାଳୀ କିପରି ଶ୍ରୀକୃଷ୍ଣଙ୍କୁ ଉଠିବାକୁ ନିବେଦନ କରିଛନ୍ତି ?

୨ । ମଣି ଓ ମୁକ୍ତା କେଉଁଠି ସାଇତା ହୋଇ ରହିଛି ?

୩ । ଆମେ କାହାକୁ ଜନ୍ମଭୂମି ବୋଲି କହିବା ?

୪ । କବି କେଉଁମାନଙ୍କୁ ସ୍ନେହର ପିତୁଳା ବୋଲି କହିଛନ୍ତି ?

୫ । ଭାରତବାସୀଙ୍କ ହୃଦୟରୁ କ'ଣ ବିଲୁପ୍ତ ହେବାର ନୁହେଁ ?

୬ । ଲେଖକ କ'ଣ ସ୍ଥିର କରି ଜୀବନର ଲକ୍ଷ୍ୟ ସାଧନ ପଥରେ ଅଗ୍ରସର ହେଲେ ?

୭ । ଆମେରିକାରେ କେଉଁ ଜିନିଷ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ?

୮ । ଜାହାଜରୁ ସମୁଦ୍ରକୁ ଡେଇଁପଡ଼ିବା ପଛରେ ସଭର୍କରଙ୍କର କି ଉଦ୍ଦେଶ୍ୟ ନିହିତ ଥିଲା ?

୯ । କେଉଁମାନେ ସିଂହଦ୍ୱାର ନିକଟରେ ଥାଇ କୃଷ୍ଣଙ୍କୁ ଡାକୁଛନ୍ତି ?

୧୦ । ଆଲୋକ ସଂଶ୍ଳେଷଣ ପ୍ରକ୍ରିୟାରେ ବୃକ୍ଷଲତା କ'ଣ କରନ୍ତି ?

୧୧ । ତଳେ ଦିଆଯାଇଥିବା ପଦଟିକୁ ସରଳ ଭାବରେ ବୁଝାଇ ଲେଖ । [୪

"ମନ୍ଦିରେ ଡାକିଲେ ଶୁକ
ବୃକ୍ଷରେ ରାବିଲେ କାକ
କୁହୁ କୁହୁ ରଟେ ପିକ
କୁକୁଟ ଡାକିଲେ ପରଶର ହେ ।"

କିମ୍ବା, "ଘୋର ଶବଦେ ମେଘମାଳ
ଗର୍ଜ୍ଜଣ ବରଷନ୍ତି ଜଳ ।"

୧୨ । ତଳେ ଦିଆଯାଇଥିବା ବାକ୍ୟଟିକୁ ସରଳ ଭାବରେ ବୁଝାଇ ଲେଖ । [

ସମ୍ପ୍ରତି ବୃକ୍ଷଲତା ଅଭାବରେ ମନୁଷ୍ୟ କିପରି ବିପଦର ସମ୍ମୁଖୀନ ହୋଇଛି, ତାହା ସହଜରେ ଅନୁମେୟ ।

କିମ୍ବା, ସେ ହେଉଛନ୍ତି ମାନବ ଜାତିର ଅଳଙ୍କାର ସଦୃଶ ।

୧୩ । ପ୍ରାୟ ୫୦ଟି ଶବ୍ଦ ମଧ୍ୟରେ ଉତ୍ତର ଲେଖ । [୬

ସଡ଼କ ସୁରକ୍ଷା ସମ୍ପର୍କରେ ସଂକ୍ଷେପରେ ଲେଖ ।

କିମ୍ବା, ତୁମ ବିଦ୍ୟାଳୟରେ ଗଣେଶ ପୂଜା କିପରି ପାଳନ ହୁଏ ବର୍ଣ୍ଣନା କରି ସାଙ୍ଗ ନିକଟକୁ ପତ୍ର ଲେଖ ।

୧୪ । ସ୍ୱାଧୀନତା ସଂଗ୍ରାମୀ ଦାମୋଦର ସଭରକର୍‌ଙ୍କ ସମ୍ବନ୍ଧରେ ସଂକ୍ଷେପରେ ଲେଖ । [୬

କିମ୍ବା, ତୁମ ଗ୍ରାମ ସଡ଼କ ସଫା କରିବାପାଇଁ ସରପଞ୍ଚଙ୍କ ନିକଟକୁ ପତ୍ରଟିଏ ଲେଖ ।

ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧×୧୦

୧୫ । ପ୍ରତିଶବ୍ଦ ଲେଖ ।

ପବନ :

୧୬ । ଅର୍ଥ ଲେଖ ।

ଗୋଟିକା :

୧୭ । ଏକପଦରେ ପ୍ରକାଶ କର ।

ନିଷ୍ଠା ଯାହାର ଅଛି ସେ :

୧୮ । ନାମଧାତୁ କ୍ରିୟା ପଦ ଲେଖ ।

ମୁଣ୍ଡ :

୧୯ । ଶୁଦ୍ଧକରି ଲେଖ ।

ଶୂସୁଶା :

୨୦ । ବାକ୍ୟରେ ବ୍ୟବହାର କର ।

ପାରଦର୍ଶିତା : ______________________

୨୧ । ଯେପରି ମିତ୍ରରୁ ମିତ୍ରତା, ସେହିପରି ବାନ୍ଧବରୁ –______________________

୨୨ । ଲିଙ୍ଗ ପରିବର୍ତ୍ତନ କର ।

କବି :

୨୩ । ବିଶେଷଣ ପଦ ଲେଖ ।

କୁଳ :

୨୪ । ବସି ଖାଇଲେ ______ ସରେ । (ଶୂନ୍ୟସ୍ଥାନ ପୂରଣ କର ।)





# ସମାପ୍ତିସୂଚକ ମୂଲ୍ୟାୟନ-୨ ପାଇଁ ଆଦର୍ଶ ପ୍ରଶ୍ନପତ୍ର

ସମୟ – ୨ ଘଣ୍ଟା (ସମସ୍ତ ପ୍ରଶ୍ନର ଉତ୍ତର ଦିଅ ।) ପୂର୍ଣ୍ଣସଂଖ୍ୟା – ୫୦

ପ୍ରତି ପ୍ରଶ୍ନ ପାଇଁ ସର୍ବାଧିକ ନମ୍ବର ପ୍ରଶ୍ନର ଡାହାଣ ପାର୍ଶ୍ୱରେ ଦିଆଯାଇଛି ।

ଉତ୍ତର ଲେଖ । [୨ × ୧୦

୧ । ସଂସ୍କୃତି କହିଲେ ଆମେ କ'ଣ ବୁଝୁ ?

୨ । କାହାକୁ ଅଲିମ୍ପିକ୍ ଜ୍ୟୋତି କୁହାଯାଏ ?

୩ । ନରେନ୍ କିପରି ଛାତ୍ର ଥିଲେ ?

୪ । ପୁରୁଙ୍କ ସୈନ୍ୟମାନେ ଦଳ ଚକଟାରେ କାହିଁକି ମରିଗଲେ ?

୫ । ଗେଣ୍ଡାଳିଆ କ'ଣ କରୁଥିଲା ?

୬ । କିଏ ବିଶ୍ୱରେ ଅତି ସାନ ବୋଲି ନିଜକୁ କହିଛି ?

୭ । ସୃଷ୍ଟିରେ କିଏ ସୁଷମା ଭରୁଛନ୍ତି ବୋଲି କବି କହୁଥିଲେ ?

୮ । କେଉଁ ଫୁଲର ମହକ ପବନରେ ଭାସି ଆସୁଥିଲା ?

୯ । ଅଦାଲତରେ ସୁଲତାନଙ୍କୁ ଦେଖି ଲୋକମାନେ କ'ଣ କଲେ ?

୧୦ । ସୁନୀଳ ଆକାଶରେ କ'ଣ ଶୋଭାପାଏ ?

୧୧ । ତଳେ ଦିଆଯାଇଥିବା ବାକ୍ୟଟିକୁ ସରଳ ଭାବରେ ବୁଝାଇ ଲେଖ । [୪

"ସମଗ୍ର ଭାରତବର୍ଷକୁ ଜୟ କରିବା ହେଉଛି ଆମର ଅଭିପ୍ରାୟ ।"

କିମ୍ବା, "କାମ ବ୍ୟତିରେକେ ଆମେରିକାନ୍ ଜୀବନରେ ସୁଖ କଳ୍ପନା ଅସମ୍ଭବ ?"

୧୨ । ତଳେ ଦିଆଯାଇଥିବା ପଦଟିକୁ ସରଳ ଭାବରେ ବୁଝାଇ ଲେଖ । [୪

ବାକ୍ୟହୀନ ନିଃସ୍ୱ ମୁହିଁ, ଭରସା ହୀନଚିର
ସକଳ ଚାପ ନେବାରେ ସହି, ଦକ୍ଷ ଏମୋ ଶିର

କିମ୍ବା, ମୂର୍ଚ୍ଛନାଟି ଉଠୁଛି ମାତି ସତେ କି ତାଳେ ତାଳେ

୧୩ । ପ୍ରାୟ ୫୦ଟି ଶବ୍ଦ ମଧ୍ୟରେ ଉତ୍ତର ଲେଖ । [୬

ଓଡ଼ିଶାର ନୃତ୍ୟ ଓ ସଙ୍ଗୀତ ସମ୍ପର୍କରେ ସଂକ୍ଷେପରେ ଲେଖ ।

କିମ୍ବା, ତୁମର ପ୍ରିୟ ସାଙ୍ଗ ସମ୍ପର୍କରେ ବର୍ଣ୍ଣନା କର ।

୧୪ । ବୃକ୍ଷଲତା କିପରି ମଣିଷର ଉପକାରୀ ବନ୍ଧୁ ତାହା ବର୍ଣ୍ଣନା କରି ସାନଭାଇ ପାଖକୁ ପତ୍ରଟିଏ ଲେଖ । [୬

କିମ୍ବା, ତୁମ ଗ୍ରାମ ପୋଖରୀରୁ ଦଳ ସଫା କରିବାପାଇଁ ସରପଞ୍ଚଙ୍କ ନିକଟକୁ ପତ୍ରଟିଏ ଲେଖ ।

ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଅ । [୧×୧୦

୧୫ । ଲିଙ୍ଗ ପରିବର୍ତ୍ତନ କର ।

ଗୁଣବାନ : ☐

୧୬ । ଶବ୍ଦଟିକୁ ବ୍ୟବହାର କରି ବାକ୍ୟ ଗଠନ କର ।

ସ୍ନେହମୟୀ : ____________________

୧୭ । 'ଖେଳ୍' ଶବ୍ଦ ସହ ଆଳି ଲାଗିଲେ 'ଖେଳାଳି' ହୁଏ । ସେହିପରି 'ଆଳି' ଯୋଗକରି ଆଉ ଏକ ଶବ୍ଦ ଲେଖ ।

ଉ: ☐

୧୮ । ପରସ୍ପର ବିପରୀତ ଶବ୍ଦକୁ ନେଇ ଯୁଗ୍ମ ଶବ୍ଦଟିଏ ଲେଖ । (ଯେପରି ଭଲମନ୍ଦ)

ଉ: ☐

୧୯ । ଇତିହାସ ଯେ ଜାଣନ୍ତି— ଏକପଦରେ ପ୍ରକାଶ କର ।

ଉ: ☐

୨୦ । ଅବଗତ ପ୍ରଭେଦ ଦର୍ଶାଅ ।

ପୁତ ଓ ପୂତ : ☐ ଓ ☐

୨୧ । ଠିକ୍ ଶବ୍ଦଟିକୁ ବାଛି ଲେଖ । (ଶିକ୍ଷୟତ୍ରୀ, ଶିକ୍ଷୟିତ୍ରୀ ଶିକ୍ଷୟିତ୍ରି, ଶିକ୍ଷୟାତ୍ରୀ)

ଉ: ☐

୨୨ । ଏଥିରେ ବିଶେଷ୍ୟ ପଦ କେଉଁଟି ?

ମଳୟ ପବନ : ☐

୨୩ । ସନ୍ଧିବିଚ୍ଛେଦ କର ।

ବିଦ୍ୟାଳୟ : ☐

୨୪ । ପିଲାମାନେ ପଢ଼ିଆରେ ଖେଳୁଛନ୍ତି ।— ବାକ୍ୟରେ ବହୁବଚନ ସ୍ଥାନରେ ଏକବଚନ ବ୍ୟବହାର କରି ଲେଖ ।

ଉ— ____________________